# କୃଷ୍ଣ ଚରିତ୍ର

ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ

ଦ୍ୱିତୀୟ ଭାଗ

ଅନୁବାଦକ:-
ଶ୍ରୀ ଗୋଲୋକ ପ୍ରସାଦ ରାୟ

ପ୍ରକାଶକ—
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର—୧

ମୂଲ୍ୟ-ତିନିଟଙ୍କା

# ନିବେଦନ

ବନ୍ଦେମାତରଂର ପ୍ରସିଦ୍ଧ ସ୍ରଷ୍ଟା ବଙ୍କିମଚନ୍ଦ୍ରଙ୍କୁ କିଏ ନ ଜାଣେ ? ଯେଉଁ ବନ୍ଦେମାତରଂ ଧ୍ୱନିରେ ଭାରତର ଗଗନ ପବନ ପ୍ରକମ୍ପିତ ହୋଇଥିଲା, ଏବଂ ଯାହା ସେ ସମୟର ଇଂରେଜ କର୍ତ୍ତା-ଗଣଙ୍କ ପ୍ରାଣରେ ହୃତ୍‌କମ୍ପ ଏବଂ ଦେଶବାସୀଙ୍କ ପ୍ରାଣରେ ଦେଶମାତୃକାର ପବିତ୍ର ଯଜ୍ଞଭୂମିରେ ଆହୁତି ଦେବା ପାଇଁ ପ୍ରେରଣା ଜନ୍ମାଇଥିଲା, ସେହି ଗୀତର କବି ଆମ ସମସ୍ତଙ୍କର ନମସ୍ୟ ଓ ପୂଜ୍ୟ ।

ବଙ୍କିମଚନ୍ଦ୍ରଙ୍କ କୃଷ୍ଣଚରିତ୍ର ବିଶ୍ୱର ଯୋଗ୍ୟ । କୃଷ୍ଣଙ୍କୁ ସେ ଯେପରି ନିଜନିଷ୍ଠ କରି ଆଲୋଚନା କରି ସମାଲୋଚକଙ୍କର ଅପବାଦକୁ ନିର୍ମୂଳ କରିଛନ୍ତି, ତାହା ପାଠକଲେ ହିନ୍ଦୁଜାତିର ମନରେ ସ୍ୱତଃ ଗର୍ବ ଆସିବାର କଥା ।

ଏହି ପୁସ୍ତକ ପାଠ କରି ତାଙ୍କର ପାଣ୍ଡିତ୍ୟ, ବିଚାର ଶକ୍ତି, ସରଳତା ଆଉ ହିନ୍ଦୁଶାସ୍ତ୍ରର ମହତ୍ତ୍ୱ ପାଠକମାନେ ଉପଲବ୍‌ଧି କରିବା ସଙ୍ଗେ ସଙ୍ଗେ ସମାଲୋଚନାର ପୂର୍ଣ୍ଣ ମୂଳଧାରକୁ ବୁଝି ପାରିବେ ।

ବଙ୍କିମଚନ୍ଦ୍ରଙ୍କ ଏହି ପୁସ୍ତକ ଅନୁବାଦ କରିବାରେ ମୁଁ ଉଦ୍‌ବୁଦ୍ଧ ହୋଇଥିଲି ଏହି କେତୋଟି କାରଣରୁ ।

ଏହି ପୁସ୍ତକ ପ୍ରକାଶନରେ ଯାହାକିଛି ତ୍ରୁଟି, ତାହା ମୋର, ଗ୍ରନ୍ଥକର୍ତ୍ତାଙ୍କର ନୁହେଁ ।

**ଶ୍ରୀଗୋଲୋକ ପ୍ରସାଦ ରାୟ ।**

# ସୂଚୀ

## ଚତୁର୍ଥଖଣ୍ଡ



## ପଞ୍ଚମଖଣ୍ଡ

## ଷଷ୍ଠଖଣ୍ଡ

## କୁରୁକ୍ଷେତ୍ର



## ସପ୍ତମଖଣ୍ଡ

## ପ୍ରଭାସ



—o—

# କୃଷ୍ଣ-ଚରିତ୍ର

## ଚତୁର୍ଥ ଖଣ୍ଡ

### ପ୍ରଥମ ପରିଚ୍ଛେଦ

### ଦ୍ରୌପଦୀ ସ୍ୱୟମ୍ବର

ମହାଭାରତରେ କୃଷ୍ଣବିଷୟ଼ ଯାହା ଅଛି, ତାହାର କେଉଁ ଅଂଶ ମୌଳିକ ଏବଂ ବିଶ୍ୱାସ ଯୋଗ୍ୟ, ତାହାର ନିର୍ବାଚନ ନିମିତ୍ତ ପ୍ରଥମ ଖଣ୍ଡରେ ଯେଉଁ ସବୁ ନିୟମ ସଂସ୍ଥାପନ କରିଅଛି, ବର୍ତ୍ତମାନ ତାହା ସ୍ମରଣ କରିବାକୁ ପାଠକପାଠିକା ମାନଙ୍କୁ ଅନୁରୋଧ କରୁଅଛି ।

ମହାଭାରତରେ ପ୍ରଥମେ କୃଷ୍ଣଙ୍କୁ ଦ୍ରୌପଦୀସ୍ୱୟମ୍ବରରେ ଦେଖି-ବାକୁ ପାଉଁ । ମୋର ବିବେଚନାରେ ଏହି ଅଂଶର ମୌଳିକତାରେ ସନ୍ଦିହାନ ହେବାର କାରଣ ନାହିଁ । ଲସେନ୍ ସାହେବ, ଦ୍ରୌପଦୀଙ୍କୁ ପାଞ୍ଚାଳର ପଞ୍ଚ ଜାତିର ଏକୀକରଣସ୍ୱରୂପ ପାଞ୍ଚାଳୀ ବୋଲି, ଦ୍ରୌପଦୀଙ୍କ ମାନବତ୍ୱ ଉଡ଼ାଇ ଦେଇଛନ୍ତି, ଏହା ପୂର୍ବେ କହିଅଛି । ମୁଁ ମଧ୍ୟ ବିଶ୍ୱାସ କରେନାହିଁ ଯେ, ଯଜ୍ଞର ଅଗ୍ନିରୁ ଦ୍ରୁପଦ, କନ୍ୟା ପାଇଥିଲେ, ଅଥବା ସେହି କନ୍ୟାର ପାଞ୍ଚୋଟି ସ୍ୱାମୀ ଥିଲେ । ତେବେ ଦ୍ରୁପଦଙ୍କ ଔରସ କନ୍ୟା ଥିବା ଅସମ୍ଭବ ନୁହେଁ, ଏବଂ ତାହାର ସ୍ୱୟମ୍ବର ବିବାହ ହୋଇଥିଲ, ଏବଂ ସେହି ସ୍ୱୟମ୍ବରରେ ଅର୍ଜ୍ଜୁନ ଲକ୍ଷ୍ୟଭେଦ କରିଥିଲେ, ଏହା ଅବିଶ୍ୱାସ କରିବାର କାରଣ ନାହିଁ । ତାର ପରେ, ତାଙ୍କର ପାଞ୍ଚସ୍ୱାମୀ ହୋଇଥିଲେ,

କ ଏକସ୍ଥାମୀ ହୋଇଥିଲା, ସେ ବିଷୟର ମୀମାଂସାରେ ଆମର କୌଣସି ପ୍ରୟୋଜନ ନାହିଁ । *

କୃଷ୍ଣଙ୍କୁ ମହାଭାରତରେ ପ୍ରଥମେ ଦ୍ରୌପଦୀସ୍ୱୟମ୍ବରରେ ଦେଖି ସେଠାରେ ତାଙ୍କର ଦେବତ୍ୱ କିଛିମାତ୍ର ସୂଚିତ ହୋଇନାହିଁ । ଅନ୍ୟାନ୍ୟ କ୍ଷତ୍ରିୟମାନଙ୍କପରି ସେ ଓ ଅନ୍ୟ ଯାଦବମାନେ ନିମନ୍ତ୍ରିତ ହୋଇ ପାଞ୍ଚାଳକୁ ଆସିଥିଲେ । ତେବେ ଅନ୍ୟାନ୍ୟ କ୍ଷତ୍ରିୟମାନେ ଦ୍ରୌପଦୀଙ୍କ ଆକାଂକ୍ଷାରେ ଲକ୍ଷ୍ୟଭେଦର ପ୍ରୟାସ କରିଥିଲେ, କିନ୍ତୁ ଯାଦବମାନେ କେହି ସେ ଚେଷ୍ଟା କରିନାହାନ୍ତି ।

ପାଣ୍ଡବମାନେ ଏହି ସଭାରେ ଉପସ୍ଥିତ ହୋଇଥିଲେ । କିନ୍ତୁ ନିମନ୍ତ୍ରିତ ହୋଇ ନୁହେଁ । ଦୁର୍ଯ୍ୟୋଧନ ସେମାନଙ୍କ ପ୍ରାଣନାଶ କରିବାର ଚେଷ୍ଟା କରିଥିଲେ । ସେମାନେ ଆତ୍ମରକ୍ଷାର୍ଥେ ଛଦ୍ମ-ବେଶରେ ବନରେ ଭ୍ରମଣ କରୁଥିଲେ । ବର୍ତ୍ତମାନ ଦ୍ରୌପଦୀ-ସ୍ୱୟମ୍ବରର କଥା ଶୁଣି ଛଦ୍ମବେଶରେ ଏଠାରେ ଉପସ୍ଥିତ ହେଲେ ।

ଏହି ସମବେତ ବ୍ରାହ୍ମଣ-କ୍ଷତ୍ରିୟ-ମଣ୍ଡଳ ମଧ୍ୟରେ କେବଳ

---

* ପୂର୍ବେ କହିଅଛି ଯେ, ମହାଭାରତର ପର୍ବସଂଗ୍ରହାଧ୍ୟାୟରେ କଥିତଅଛି ଯେ, ଅନୁକ୍ରମଣିକାଧ୍ୟାୟରେ ବ୍ୟାସଦେବ ୧୫୦ ଶ୍ଳୋକରେ ମହାଭାରତର ସଂକ୍ଷିପ୍ତ ବିବରଣ ରଚିତ କରିଛନ୍ତି । ସେହି ଅନୁକ୍ରମଣିକାର ସଂକ୍ଷିପ୍ତ ବିବରଣରେ ଦ୍ରୌପଦୀସ୍ୱୟମ୍ବରର କଥା ଅଛି, କିନ୍ତୁ ପଞ୍ଚପାଣ୍ଡବଙ୍କ ସଙ୍ଗେ ଯେ ତାଙ୍କ ବିବାହ ହୋଇଥିଲା, ଏପରି କଥା ନାହିଁ । ଅର୍ଜ୍ଜୁନହିଁ ତାଙ୍କୁ ଲାଭ କରିଥିଲେ, ଏହି କଥା ଅଛି ।

"ସମବାୟେ ତତୋ ରାଜ୍ଞାଂ କନ୍ୟାଂ ଭର୍ତ୍ତୃସ୍ୱୟମ୍ବରାମ୍
ପ୍ରାପ୍ତବାନର୍ଜ୍ଜୁନଃ କୃଷ୍ଣାଂ କୃତ୍ୱା କର୍ମ ସୁଦୁଷ୍କରମ"

କୃଷ୍ଣହିଁ ଛଦ୍ମବେଶଯୁକ୍ତ ପାଣ୍ଡବମାନଙ୍କୁ ଚିହ୍ନିଥିଲେ । ଏହା ଯେ ସେ ଦୈବୀଶକ୍ତି ପ୍ରଭାବରେ ଜାଣିପାରିଥିଲେ, ଏପରି ଇଙ୍ଗିତ ଆଦୌ ନାହିଁ ମନୁଷ୍ୟବୁଦ୍ଧିରେହିଁ ସେ ତାହା ବୁଝିପାରିଥିଲେ, ତାହାଙ୍କ ଉକ୍ତିରୁହିଁ ଏହା ପ୍ରକାଶ, ସେ ବଳଦେବଙ୍କୁ କହୁଛନ୍ତି, "ମହାଶୟ ! ଯେ ଏହି ବିସ୍ତୀର୍ଣ୍ଣ ଶରାସନ ଆକର୍ଷଣ କରୁଛନ୍ତି, ସେ ଅର୍ଜୁନ, ଏଥିରେ କୌଣସି ସନ୍ଦେହ ନାହିଁ । ଆଉ ଯେ ବାହୁବଳରେ ବୃକ୍ଷ ଉତ୍ପାଟନ ପୂର୍ବକ ନିର୍ଭୟରେ ରଙ୍ଗମଣ୍ଡଳରେ ପ୍ରବିଷ୍ଟ ହେଉଛନ୍ତି ଏହାଙ୍କ ନାମ ବୃକୋଦର'' ଇତ୍ୟାଦି । ଏହାପରେ ସାକ୍ଷାତ୍ ହେଲେ ଯେତେବେଳେ ଯୁଧିଷ୍ଠିର ତାଙ୍କୁ ପଚାରିଥିଲେ, "ତୁମେ କିପରି ଆମ୍ଭମାନଙ୍କୁ ଚିହ୍ନିଲ ?" ତହିଁରେ ସେ ଉତ୍ତର କହିଥିଲେ, "ଭସ୍ମାଚ୍ଛାଦିତ ବହ୍ନି କଣ ଲୁଚିରହେ ?" ପାଣ୍ଡବମାନଙ୍କୁ ସେହି ଛଦ୍ମବେଶରେ ଚିହ୍ନିବା କଣ ଅତି କଠିନ; ଅନ୍ୟ କେହି ସେ ଚିହ୍ନିପାରି ନାହାନ୍ତି, ତାହା ବିସ୍ମୟକର ନୁହେଁ; କୃଷ୍ଣ ଯେ ଚିହ୍ନି ପାରିଥିଲେ—ସ୍ୱାଭାବିକ ମନୁଷ୍ୟବୁଦ୍ଧିରେହିଁ ଚିହ୍ନିଥିଲେ—ଏଥିରୁ କେବଳ ଏହାହିଁ ବୁଝାଯାଏ ଯେ, ଅନ୍ୟାନ୍ୟ ମନୁଷ୍ୟ ଅପେକ୍ଷା ସେ ତୀକ୍ଷ୍ଣବୁଦ୍ଧି ଥିଲେ । ମହାଭାରତକାର ଏ କଥାଟାକୁ କୌଣସି ସ୍ଥାନରେ ପରିଷ୍କାର କରି କହିନାହାନ୍ତି; କିନ୍ତୁ କୃଷ୍ଣଙ୍କ କାର୍ଯ୍ୟରେ ସର୍ବଦା ଦେଖିଥାଉଁ ଯେ, ସେ ମନୁଷ୍ୟବୁଦ୍ଧିରେ କାର୍ଯ୍ୟ କରନ୍ତି ସତ୍ୟ, କିନ୍ତୁ ସେ ସର୍ବାପେକ୍ଷା ତୀକ୍ଷ୍ଣବୁଦ୍ଧି ମନୁଷ୍ୟ । ଏହି ବୁଦ୍ଧିରେ କୌଣସିଠାରେ ବ୍ୟତିକ୍ରମ ଦେଖା ଯାଏ ନାହିଁ । ଅନ୍ୟାନ୍ୟ ବୃତ୍ତିପରି ସେ ବୁଦ୍ଧିରେ ମଧ୍ୟ ଆଦର୍ଶ ମନୁଷ୍ୟ ।

ଅନନ୍ତର ଅର୍ଜୁନ ଲକ୍ଷ୍ୟ ବିନ୍ଧିଲେ, ସମାଗତ ରାଜାମାନଙ୍କ ସହିତ ତାଙ୍କର ବଡ଼ ବିବାଦ ଲାଗିଲା । ଅର୍ଜୁନ ଭିକ୍ଷୁକ ବ୍ରାହ୍ମଣ ବେଶଧାରୀ । ଜଣେ ଭିକ୍ଷୁକ ବ୍ରାହ୍ମଣ ବଡ଼ ବଡ଼ ରାଜାମାନଙ୍କ

ମୁଖର ଗ୍ରାସ ଛଡ଼ାଇ ନେଇ ଯିବ, ଏହା ସେମାନଙ୍କର ସହ୍ୟ ହେଲା ନାହିଁ । ସେମାନେ ଅର୍ଜ୍ଜୁନଙ୍କ ଉପରେ ଆକ୍ରମଣ କଲେ । ଯେଉଁ ଯୁଦ୍ଧ ହୋଇଥିଲା, ସେଥିରେ ଅର୍ଜ୍ଜୁନହିଁ ଜୟୀ ହୋଇଥିଲେ । ଏହି ବିବାଦ କୃଷ୍ଣଙ୍କ କଥାରେ ନିବାରଣ ହୋଇଥିଲା । ମହା-ଭାରତରେ ଏତିକି କୃଷ୍ଣଙ୍କ ପ୍ରଥମ କାର୍ଯ୍ୟ । ସେ କିପ୍ରକାରେ ବିବାଦ ମେଣ୍ଟାଇଥିଲେ, ସେହି କଥାଟା କହିବା ଆମର ଉଦ୍ଦେଶ୍ୟ । ବିବାଦ ମେଣ୍ଟାଇବାର ଅନେକ ଉପାୟ ଥିଲା । ସେ ନିଜେ ବିଖ୍ୟାତ ବୀରପୁରୁଷ, ଏବଂ ବଳଦେବ, ସାତ୍ୟକି ପ୍ରଭୃତି ଅଦ୍ୱିତୀୟ ବୀରମାନେ ତାଙ୍କର ସହାୟକ ଥିଲେ । ଅର୍ଜ୍ଜୁନ ତାଙ୍କ ଆତ୍ମୀୟ—ପିତୃଷ୍ୱସାଙ୍କ ପୁତ୍ର । ସେ ଯାଦବମାନଙ୍କୁ ନେଇ ସମରକ୍ଷେତ୍ରରେ ଅର୍ଜ୍ଜୁନଙ୍କ ସାହାଯ୍ୟ ପାଇଁ ଆସିଥିଲେ, ସଙ୍ଗେ ସଙ୍ଗେ ବିବାଦ ମେଣ୍ଟି ଯାଇ ଥାଆନ୍ତା । ଭୀମ ତାହାହିଁ କରିଥିଲେ । କିନ୍ତୁ କୃଷ୍ଣ ଆଦର୍ଶ ଧାର୍ମ୍ମିକ, ଯାହା ବିନାଯୁଦ୍ଧରେ ସମ୍ପନ୍ନ ହୋଇ ପାରେ, ସେଥି ପାଇଁ ସେ କେବେହେଁ ଯୁଦ୍ଧରେ ପ୍ରବୃତ୍ତ ହୋଇ ନାହାନ୍ତି । ମହାଭାରତର କୌଣସି ସ୍ଥାନରେ ଏପରି କିଛି ନାହିଁ ଯେ, କୃଷ୍ଣ ଧର୍ମ୍ମାର୍ଥ ଭିନ୍ନ ଅନ୍ୟ କାରଣରେ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ । ଆତ୍ମରକ୍ଷାର୍ଥ ଓ ପରର ରକ୍ଷାର୍ଥ ଯୁଦ୍ଧ ଧର୍ମ୍ମ, ଆତ୍ମରକ୍ଷାର୍ଥ ଓ ପରର ରକ୍ଷାର୍ଥ ଯୁଦ୍ଧ ନ କରିବା ପରମ ଅଧର୍ମ୍ମ । ଆମେ ବଙ୍ଗାଳି ଜାତି, ଆଜକୁ ସାତଶତ ବର୍ଷ ସେହି ଅଧର୍ମ୍ମର ଫଳ ଭୋଗ କରୁଅଛୁଁ । କୃଷ୍ଣ କଦାପି ଅନ୍ୟ କାରଣରେ ଯୁଦ୍ଧ କରି ନାହାନ୍ତି । ପୁଣି ଧର୍ମ୍ମରକ୍ଷା ସ୍ଥାପନନିମିତ୍ତ ତାଙ୍କର ଯୁଦ୍ଧରେ ଆପତ୍ତି ନଥିଲା । ଯେଉଁ-ଠାରେ ଯୁଦ୍ଧ ଭିନ୍ନ ଧର୍ମ୍ମର ଉନ୍ନତି ନାହିଁ, ସେଠାରେ ଯୁଦ୍ଧ ନ କରିବା ଅଧର୍ମ୍ମ । କେବଳ କାଶୀରାମଦାସ ବା କଥକଠାକୁର (ପୁରାଣ ପଣ୍ଡା) ମାନଙ୍କ କଥିତ ମହାଭାରତରେ ଯାହାଙ୍କର ଅଧିକାର, ତାଙ୍କର ବିଶ୍ୱାସ କୃଷ୍ଣହିଁ ସବୁ ଯୁଦ୍ଧର ମୂଳ; କିନ୍ତୁ ମୂଳ

ମହାଭାରତକୁ ବୁଦ୍ଧିପୂର୍ବକ ପଢ଼ିଲେ ଏଥିର ବିଶ୍ୱାସ ରହେ ନାହିଁ । ସେତେବେଳେ ବୁଝାଯାଏ ଯେ, ଧର୍ମାର୍ଥ ଭିନ୍ନ କୃଷ୍ଣ କେବେହେଁ କାହାକୁ ଯୁଦ୍ଧରେ ପ୍ରବୃତ୍ତି ଦେଇ ନାହାନ୍ତି । ନିଜେ ମଧ୍ୟ ଧର୍ମାର୍ଥ ଛଡ଼ା ଯୁଦ୍ଧ କରି ନାହାନ୍ତି ।

ଏଠାରେ ମଧ୍ୟ କୃଷ୍ଣ ଯୁଦ୍ଧ କଥା ମନରେ ସୁଦ୍ଧା ଆଣିଲେ ନାହିଁ । ସେ ବିବଦମାନ ଭୂପାଳ ମାନଙ୍କୁ କହିଲେ, "ହେ ଭୂପାଳ-ବୃନ୍ଦ ! ଏହି ମାନେହିଁ ରାଜକୁମାରୀଙ୍କୁ ଧର୍ମତଃ ଲାଭ କରି ଅଛନ୍ତି । ତୁମ୍ଭେମାନେ କ୍ଷାନ୍ତ ହୁଅ, ଆଉ ଯୁଦ୍ଧରେ ପ୍ରୟୋଜନ ନାହିଁ ।" "ଧର୍ମତଃ" ! ଧର୍ମର କଥାଟା ତ ଏ ପର୍ଯ୍ୟନ୍ତ କାହାର ମନରେ ପଡ଼ି ନାହିଁ । ସେ କାଳର ଅନେକ କ୍ଷତ୍ରିୟ ରାଜା ଧର୍ମାତ୍ମା ଥିଲେ, ରୁଚିପୂର୍ବକ କଦାପି ଅଧର୍ମରେ ପ୍ରବୃତ୍ତ ହେଉ ନ ଥିଲେ । କିନ୍ତୁ ଏହି ସମୟରେ ରାଗାନ୍ଧ ହୋଇ ଧର୍ମର କଥାଟା ଭୁଲି ଯାଇ-ଥିଲେ । କିନ୍ତୁ ଯେ ପ୍ରକୃତ ଧର୍ମାତ୍ମା, ଧର୍ମବୁଦ୍ଧିହିଁ ଯାହାଙ୍କର ଜୀବନର ଉଦ୍ଦେଶ୍ୟ, ସେ ଏ ବିଷୟରେ ଧର୍ମ କେଉଁ ପକ୍ଷରେ, ତାହା ଭୁଲି ନାହାନ୍ତି । ଧର୍ମବିସ୍ମୃତ ମାନଙ୍କୁ ଧର୍ମସ୍ମରଣ କରାଇ ଦେବା, ଧର୍ମାନ-ଭିଜ୍ଞମାନଙ୍କୁ ଧର୍ମ ବୁଝାଇ ଦେବାଇ ତାଙ୍କ କାର୍ଯ୍ୟ ।

ଭୂପାଳବୃନ୍ଦଙ୍କୁ କୃଷ୍ଣ କହିଲେ, "ଏଇ ମାନେହିଁ ରାଜକୁମାରୀଙ୍କୁ ଧର୍ମତଃ ଲାଭ କରି ଅଛନ୍ତି, ଅତଏବ ଆଉ ଯୁଦ୍ଧର ପ୍ରୟୋଜନ ନାହିଁ" । ଏହା ଶୁଣି ରାଜାମାନେ ନିରସ୍ତ ହେଲେ । ଯୁଦ୍ଧ ଶେଷ ହେଲା । ପାଣ୍ଡବମାନେ ଆଶ୍ରମକୁ ଗଲେ ।

ଏଠାରେ ଏହା ବୁଝା ଯାଏ ଯେ, ଯଦି ଜଣେ ବାଜେ ଲୋକ ଦୃପ୍ତ ରାଜଗଣଙ୍କୁ ଧର୍ମର କଥାଟା ସ୍ମରଣ କରାଇ ଦେଇ ଥାନ୍ତା, ତେବେ ସେମାନେ କେବେହେଁ ଯୁଦ୍ଧରୁ ବିରତ ହୋଇ ନ ଥାନ୍ତେ । ଯେଉଁ ବ୍ୟକ୍ତି ଧର୍ମର କଥାଟା ସ୍ମରଣ କରାଇ ଦେଲେ, ସେ ମହା-

ବଳଶାଳୀ ଏବଂ ଗୌରବାନ୍ୱିତ । ସେ ଜ୍ଞାନ, ଧର୍ମ୍ମ ଓ ବାହୁ ବଳରେ ସମସ୍ତଙ୍କର ପ୍ରଧାନ ହୋଇଥିଲେ, ସମସ୍ତ ବୃତ୍ତି ଗୁଡ଼ିକ ସମ୍ପୂର୍ଣ୍ଣରୂପେ ଅନୁଶୀଳନ କରିଥିଲେ, ତାହାର ଫଳରେ ଏହି ପ୍ରାଧାନ୍ୟ । ସମସ୍ତ ବୃତ୍ତିଗୁଡ଼ିକ ଅନୁଶୀଳନ ନ ହେଲେ, କେହି ତାଦୃଶ ଫଳଦାୟିନୀ ହୁଏ ନାହିଁ । ଏହିରୂପେ କୃଷ୍ଣଚରିତ ଦ୍ୱାରା ଧର୍ମ୍ମତତ୍ତ୍ୱ ପରିସ୍ଫୁଟ ହେଉଅଛି ।

## ଦ୍ୱିତୀୟ ପରିଚ୍ଛେଦ

## କୃଷ୍ଣ - ଯୁଧିଷ୍ଠିର - ସଂବାଦ

ଅର୍ଜ୍ଜୁନ ଲକ୍ଷ ବିଦ୍ଧ, ରାଜାମାନଙ୍କ ସହିତ ଯୁଦ୍ଧ ସମାପନ କରି ଭ୍ରାତୃଗଣ ସମଭିବ୍ୟାହାରରେ ଆଶ୍ରମକୁ ଗମନ କଲେ । ରାଜାମାନେ ମଧ୍ୟ ସ୍ୱ ସ୍ୱ ସ୍ଥାନକୁ ଗମନ କରିବାକୁ ଲାଗିଲେ । ବର୍ତ୍ତମାନ କୃଷ୍ଣଙ୍କର କଣ କରିବା କର୍ତ୍ତବ୍ୟ ଥିଲା ? ଦ୍ରୌପଦୀଙ୍କ ସ୍ୱୟମ୍ବର ଶେଷ ହେଲା, ଉତ୍ସବ ଯାହା ଥିଲା, ତାହା ଶେଷ ହେଲା, କୃଷ୍ଣଙ୍କର ପାଞ୍ଚାଳରେ ରହିବାର ଆଉ କୌଣସି ପ୍ରୟୋଜନ ନଥିଲା । ବର୍ତ୍ତମାନ ସ୍ୱସ୍ଥାନକୁ ଫେରି ଗଲେ ହୁଅନ୍ତା । ଅନ୍ୟାନ୍ୟ ରାଜାମାନେ ତାହାହିଁ କଲେ, କିନ୍ତୁ କୃଷ୍ଣ ତାହା ନକରି ବଳଦେବଙ୍କୁ ସଙ୍ଗରେ ନେଇ, ଯେଉଁ ଭାର୍ଗବକର୍ମ୍ମଶାଳାରେ ଭିକ୍ଷୁକ ବେଶଧାରୀ ପାଣ୍ଡବମାନେ ବାସ କରୁଥିଲେ, ସେଠାରେ ଯାଇ ଯୁଧିଷ୍ଠିରଙ୍କ ସହିତ ସାକ୍ଷାତ୍ କଲେ ।

ସେଠାରେ ତାଙ୍କର କୌଣସି କାର୍ଯ୍ୟ ନଥିଲା—ଯୁଧିଷ୍ଠିରଙ୍କ ସହିତ ତାଙ୍କର ପୂର୍ବେ ଆଦୌ ସାକ୍ଷାତ୍ ବା ଆଳାପ ନଥିଲା, କାରଣ, ମହାଭାରତକାର ଲେଖିଛନ୍ତି ଯେ, "ବାସୁଦେବ ଯୁଧି-

ଷ୍ଠିରଙ୍କ ନିକଟ ଅଭିଗମନ ଓ ଚରଣ ବନ୍ଦନ ପୂର୍ବକ ନିଜର ପରିଚୟ ପ୍ରଦାନ କଲେ ।" ବଳଦେବ ମଧ୍ୟ ସେହିରୂପ କଲେ । ଯେତେବେଳେ ନିଜର ପରିଚୟ ପ୍ରଦାନ କରିବାକୁ ହେଲା, ସେତେବେଳେ ଅବଶ୍ୟ ଏହା ବୁଝିବାକୁ ହେବ ଯେ ପୂର୍ବେ ପରସ୍ପରଙ୍କ ସହିତ ସେମାନଙ୍କର ସାକ୍ଷାତ ବା ଆଳାପ ନଥିଲା । କୃଷ୍ଣ-ପାଣ୍ଡବଙ୍କର ଏହି ପ୍ରଥମ ସାକ୍ଷାତ । କେବଳ ପିତୃଷ୍ୱସାଙ୍କ ପୁତ୍ର ବୋଲି କୃଷ୍ଣ ସେମାନଙ୍କୁ ଖୋଜି ନେଇ ସେମାନଙ୍କ ସହିତ ଆଳାପ କରିଥିଲେ । କାମଟା ସାଧାରଣ-ଲୌକିକ-ବ୍ୟବହାର-ଅନୁମୋଦିତ ହୋଇ ନାହିଁ । ଲୋକ-ପ୍ରଥା-ମଧ୍ୟ ଅଛି ଯେ, ପିଉସୀ ବା ମାଉସୀପୁତ୍ର ଭାଇ ଯଦି ଗୋଟାଏ ରାଜା ବା ବଡ଼ଲୋକ ହୋଇଥାଏ, ତେବେ ଉପଯାଚକ ହୋଇ ସେମାନଙ୍କ ସହିତ ଆଳାପ କରି ଆସନ୍ତି । କିନ୍ତୁ ପାଣ୍ଡବମାନେ ସେତେବେଳେ ସାମାନ୍ୟ ଭିକ୍ଷୁକ ମାତ୍ର ; ସେମାନଙ୍କ ସହିତ ସାକ୍ଷାତ୍ କରି କୃଷ୍ଣଙ୍କର କୌଣସି ଅଭୀଷ୍ଟହିଁ ସିଦ୍ଧ ହେବାର ସମ୍ଭାବନା ନଥିଲା । ଆଳାପ କରି ମଧ୍ୟ କୃଷ୍ଣ ଯେ କୌଣସି ଲୌକିକ ଅଭୀଷ୍ଟ ସିଦ୍ଧ କରିଥିଲେ, ଏହା ଦେଖା ଯାଏ ନାହିଁ । ସେ କେବଳ ବିନୟପୂର୍ବକ ଯୁଧିଷ୍ଠିରଙ୍କ ସହିତ ସଦାଳାପ କରି ତାଙ୍କର ମଙ୍ଗଳ କାମନା କରି ଫେରି ଆସିଥିଲେ । ଏବଂ ତା ପରେ ପାଣ୍ଡବମାନଙ୍କ ବିବାହ ସମାପ୍ତି ପର୍ଯ୍ୟନ୍ତ ପାଞ୍ଚାଳରେ ନିଜ ଶିବିରରେ ଅବସ୍ଥାନ କରିବାକୁ ଲାଗିଲେ । ବିବାହ ସମାପ୍ତ ହେବା ପରେ, ସେ "କୃତଦାର ପାଣ୍ଡବମାନଙ୍କର ଯୌତୁକ ସ୍ୱରୂପ ବିଚିତ୍ର ବୈଦୁର୍ଯ୍ୟ ମଣି, ସୁବର୍ଣ୍ଣର ଆଭରଣ, ନାନା ଦେଶୀୟ ମହାର୍ଘ ବସନ, ରମଣୀୟ ଶଯ୍ୟା, ବିବିଧ ଗୃହ-ସାମଗ୍ରୀ, ବହୁସଂଖ୍ୟକ ଦାସଦାସୀ, ସୁଶିକ୍ଷିତ ଗଜବୃନ୍ଦ, ଉତ୍କୃଷ୍ଟ ଘୋଟକାବଳୀ, ଅସଂଖ୍ୟ ରଥ ଏବଂ କୋଟି କୋଟି ରଜତ କାଞ୍ଚନ

ଶ୍ରେଣୀବଦ୍ଧ କରି ପ୍ରେରଣ କଲେ । ” ଏହା ସବୁ ପାଣ୍ଡବମାନଙ୍କର ସେତେବେଳେ ନଥିଲା, କାରଣ ସେତେବେଳେ ସେମାନେ ଭିକ୍ଷୁକ ଏବଂ ଦୁରବସ୍ଥାପନ୍ନ । ଅଥଚ ଏ ସବୁ ସେତେବେଳେ ତାଙ୍କର ବିଶେଷ ପ୍ରୟୋଜନ; କାରଣ ସେମାନେ ରାଜକନ୍ୟାଙ୍କ ପାଣିଗ୍ରହଣ କରି ଗୃହୀ ହୋଇ ଅଛନ୍ତି । ସୁତରାଂ ଯୁଧିଷ୍ଠିର "କୃଷ୍ଣପ୍ରେରିତ ଦ୍ରବ୍ୟ-ସାମଗ୍ରୀ ସବୁ ଆହ୍ଲାଦ ପୂର୍ବକ ଗ୍ରହଣ କଲେ । ” କିନ୍ତୁ କୃଷ୍ଣ ସେମାନଙ୍କ ସହିତ ଆଉ ସାକ୍ଷାତ ନ କରି ସ୍ୱ ସ୍ଥାନକୁ ଗମନ କଲେ । ଏହା ପରେ ସେ ପାଣ୍ଡବ ମାନଙ୍କୁ ଆଉ ଖୋଜି ନାହାନ୍ତି । ପାଣ୍ଡବ ମାନେ ରାଜ୍ୟାର୍ଦ୍ଧ ପ୍ରାପ୍ତ ହୋଇ ଇନ୍ଦ୍ରପ୍ରସ୍ଥରେ ନଗର ନିର୍ମାଣ ପୂର୍ବକ ବାସ କରିବାକୁ ଲାଗିଲେ । ଯେଉଁ ପ୍ରକାରେ ପୁନର୍ବାର ପାଣ୍ଡବମାନଙ୍କ ସହିତ ତାଙ୍କର ମିଳନ ହୋଇଥିଲା, ତାହା ପରେ କହିବି ।

ବିସ୍ମୟର ବିଷୟ ଏହି ଯେ, ଯେ ଏ ରୂପ ନିଃସ୍ୱାର୍ଥ ଆଚରଣ କରୁଥିଲେ, ଯେ ଦୁରବସ୍ଥାଗ୍ରସ୍ତ ମାନଙ୍କରହିଁ ହିତାନୁ ସନ୍ଧାନ କରିବା ନିଜ ଜୀବନର ବ୍ରତସ୍ୱରୂପ କରିଥିଲେ, ପାଶ୍ଚାତ୍ୟ ମୂର୍ଖମାନେ ଏବଂ ସେମାନଙ୍କ ଶିଷ୍ୟଗଣ ସେହି କୃଷ୍ଣଙ୍କୁ କୁକର୍ମାନୁରତ, ଦୁରଭିସନ୍ଧି-ଯୁକ୍ତ, କ୍ରୂର ଏବଂ ପାପାତ୍ମା ବୋଲି ସ୍ଥିର କରିଛନ୍ତି । ଐତିହାସିକ ତତ୍ତ୍ୱ ବିଶ୍ଳେଷଣର ଶକ୍ତି ବା ତହିଁରେ ଶ୍ରଦ୍ଧା ଏବଂ ଯତ୍ନ ନ ଥିଲେ ଏହିପରି ଘଟିବା ସମ୍ଭବ ।

ମୂଳକଥା, ଯେ ଆଦର୍ଶ ମନୁଷ୍ୟ, ତାଙ୍କର ଅନ୍ୟାନ୍ୟ ସଦ୍‌ବୃତ୍ତି ପରି ପ୍ରୀତି ବୃତ୍ତିମଧ୍ୟ ପୂର୍ଣ୍ଣବିକଶିତ ଓ ସ୍ଫୂର୍ତ୍ତିପ୍ରାପ୍ତ ହୋଇଥିବାର ସମ୍ଭବ । ଶ୍ରୀକୃଷ୍ଣ, ଯୁଧିଷ୍ଠିରଙ୍କ ପ୍ରତି ଯେଉଁ ବ୍ୟବହାର କଲେ, ତାହା ଅନେକଙ୍କର ପୂର୍ବବର୍ଣ୍ଣିତ ବ୍ୟାଖ୍ୟାସ୍ଥଳରେ ହେବା ସମ୍ଭବ । ଯୁଧିଷ୍ଠିର କୁଟୁମ୍ବ; ଯଦି କୃଷ୍ଣଙ୍କ ସହିତ

ପୂର୍ବରୁ ତାଙ୍କର ଆଳାପ ପ୍ରଣୟ ଏବଂ ଆତ୍ମୀୟତା ଥାଆନ୍ତା, ତାହାହେଲେ ସେ ଯେଉଁ ବ୍ୟବହାର କଲେ, ତାହା କେବଳ ଭଦ୍ରଜନୋଚିତ ବୋଲି କହି କ୍ଷାନ୍ତ ହୋଇ ପାରିଥାନ୍ତ—ବେଶୀ କହିବାର ଅଧିକାର ନଥାନ୍ତା । କିନ୍ତୁ ସେ ଅପରିଚିତ ଏବଂ ଦରିଦ୍ର ଓ ହୀନାବସ୍ଥାପନ୍ନ କୁଟୁମ୍ବଙ୍କୁ ଖୋଜି ତାହାର ନିଜର କାର୍ଯ୍ୟ କ୍ଷତି କରି, ତାହାର ଉପକାର କରନ୍ତି, ତାଙ୍କ ପ୍ରୀତି, ଆଦର୍ଶ ପ୍ରୀତି । କୃଷ୍ଣଙ୍କ ଏହି କାର୍ଯ୍ୟଟି କ୍ଷୁଦ୍ର କାର୍ଯ୍ୟ ସତ୍ୟ, କିନ୍ତୁ କ୍ଷୁଦ୍ର କ୍ଷୁଦ୍ର କାର୍ଯ୍ୟରୁହିଁ ମନୁଷ୍ୟର ଚରିତ୍ରର ଯଥାର୍ଥ ପରିଚୟ ମିଳେ । ଗୋଟାଏ ମହତ୍ କାର୍ଯ୍ୟ ଦୁଷ୍ଟଲୋକ ମାନେ ମଧ୍ୟ ଚେଷ୍ଟା କରି କରି ପାରନ୍ତି ଏବଂ କରିଥାନ୍ତି ମଧ୍ୟ । କିନ୍ତୁ ଯାହାଙ୍କ ଶ୍ରେଷ୍ଠକାର୍ଯ୍ୟ ଗୁଡ଼ିକ ହିଁ ଧର୍ମାତ୍ମତାର ପରିଚୟସୂଚକ, ସେ ଯଥାର୍ଥ ଧର୍ମାତ୍ମା । ସେଥି ନିମନ୍ତେ, ଆମ୍ଭେମାନେ ମହାଭାରତର ଆଲୋଚନାରେ * କୃଷ୍ଣକୃତ ଶ୍ରେଷ୍ଠ ବଡ ସବୁ କାର୍ଯ୍ୟର ସମାଲୋଚନାରେ ପ୍ରବୃତ୍ତ ହୋଇଅଛୁଁ । ଆମର ଦୁର୍ଭାଗ୍ୟ ଏହି ଯେ, ଆମ୍ଭେମାନେ ଏହି ପ୍ରଣାଳୀରେ କେବେହେଁ କୃଷ୍ଣଙ୍କୁ ବୁଝିବାର ଚେଷ୍ଟା କରିନାହୁଁ । ତାହା ନ କରି କୃଷ୍ଣ-ଚରିତ୍ର ମଧ୍ୟରେ କେବଳ "ଅଶ୍ୱତ୍ଥାମା ହତ ଇତି ଗଜଃ" ଏହି ବାକ୍ୟଟି ଶିଖି ରଖିଅଛୁଁ । ଯଥାର୍ଥ ଯାହା ସତ୍ୟ ଏବଂ ଐତିହାସିକ ତାହାର କୌଣସି ଅନୁସନ୍ଧାନ ନ କରି, ଯାହା ମିଥ୍ୟା ଏବଂ କଳ୍ପିତ ତାହାରି ଉପରେ ନିର୍ଭର କରିଅଛୁଁ । "ଅଶ୍ୱତ୍ଥାମା ହତ ଇତି ଗଜଃ" † କଥାର ଘଟଣାଟା ଯେ ମିଥ୍ୟା, ତାହା ଦ୍ରୋଣବଧ—

---

* ହରିବଂଶ ଓ ପୁରାଣ ସବୁରେ ବିଶ୍ୱାସଯୋଗ୍ୟ କଥା ମିଳେ-ନାହିଁ ବୋଲି ପୂର୍ବେ ଏହା କରିପାରି ନାହିଁ ।

† ପରେ ଦେଖିବା, "ଅଶ୍ୱତ୍ଥାମା ହତ ଇତି ଗଜଃ" ଏହି ବୋଲିଟାନ୍ଧି ମହାଭାରତରେ ନାହିଁ, ଏହା ପୁରାଣପଣ୍ଡାଙ୍କ ସଂସ୍କୃତ ।

ପର୍ବାଧ୍ୟାୟର ସମାଲୋଚନା କାଳରେ ଆମ୍ଭେମାନେ ପ୍ରମାଣୀକୃତ କରିବୁ ।

ଏହି ବୈବାହିକ ପର୍ବରେ କୃଷ୍ଣଙ୍କ ସମ୍ବନ୍ଧରେ ଗୋଟାଏ ବଡ଼ କୌତୁକର କଥା ବ୍ୟାସୋକ୍ତ ବୋଲି କଥିତ ହୋଇଅଛି । ତାହା ଆମର ସମାଲୋଚ୍ୟ ବିଷୟର ଅନ୍ତର୍ଗତ ନ ହେଲେ ମଧ୍ୟ, ତାହାର କିଞ୍ଚିତ୍ ଉଲ୍ଲେଖ କରିବା ଆବଶ୍ୟକ । ଦ୍ରୁପଦରାଜ, କନ୍ୟାର ପଞ୍ଚସ୍ୱାମୀ ହେବା ଶୁଣି ତହିଁରେ ଆପତ୍ତି କରୁଛନ୍ତି । ବ୍ୟାସ ତାଙ୍କ ଆପତ୍ତି ଖଣ୍ଡନ କରୁଛନ୍ତି । ଖଣ୍ଡନୋପଲକ୍ଷେ ସେ ଦ୍ରୁପଦଙ୍କୁ ଗୋଟିଏ ଉପାଖ୍ୟାନ ଶ୍ରବଣ କରାଇଲେ । ଉପାଖ୍ୟାନଟି ବଡ଼ ଅଦ୍ଭୁତ ଢଙ୍ଗର । ତାହାର ସ୍ଥୂଳ ତାତ୍ପର୍ଯ୍ୟ ଏହି ଯେ, ଇନ୍ଦ୍ର ଏକଦା ଗଙ୍ଗାଜଳରେ ଗୋଟିଏ ରୋରୁଦ୍ୟମାନା ସୁନ୍ଦରୀ ଦର୍ଶନ କଲେ । ତାଙ୍କୁ ପଚାରିଲେ "ତୁମେ କାହିଁକି କାନ୍ଦୁଛ ?" ସୁନ୍ଦରୀ ଉତ୍ତର କଲେ ଯେ, "ଆସ ଦେଖାଉ ଅଛି ।" ଏହା କହି ସେ ଇନ୍ଦ୍ରଙ୍କୁ ସଙ୍ଗରେ ନେଇ ଦେଖାଇଲେ ଯେ, ଜଣେ ଯୁବା ଜଣେ ଯୁବତୀ ସହିତ ପାଶକ୍ରୀଡ଼ା କରୁଅଛି । ସେମାନେ ଇନ୍ଦ୍ରଙ୍କ ଯଥୋଚିତ ସମ୍ମାନ ନ କରିବାରୁ ଇନ୍ଦ୍ର କ୍ରୁଦ୍ଧ ହେଲେ । କିନ୍ତୁ ଯେଉଁ ଯୁବା ପାଶକ୍ରୀଡ଼ା କରୁଥିଲେ ସେ ସ୍ୱୟଂ ମହାଦେବ । ଇନ୍ଦ୍ରଙ୍କୁ କ୍ରୁଦ୍ଧ ଦେଖି ସେ ମଧ୍ୟ କ୍ରୁଦ୍ଧ ହେଲେ ଏବଂ ଇନ୍ଦ୍ରଙ୍କୁ ଗୋଟାଏ ଗର୍ତ୍ତରେ ପ୍ରବେଶ କରିବାକୁ କହିଲେ । ଇନ୍ଦ୍ର ଗର୍ତ୍ତ ଭିତରେ ପ୍ରବେଶ କରି ଦେଖିଲେ, ସେଠାରେ ତାଙ୍କପରି ଆଉ ଚାରିଗୋଟି ଇନ୍ଦ୍ର ଅଛନ୍ତି । ଶେଷରେ ମହାଦେବ ପାଞ୍ଚଜଣ ଇନ୍ଦ୍ରଙ୍କୁ ଡାକି କହିଲେ "ତୁମ୍ଭେମାନେ ଯାଇ ପୃଥିବୀରେ ମନୁଷ୍ୟ ହୁଅ ।" ସେହି ଇନ୍ଦ୍ର ମାନେ ପୁଣି ମହାଦେବଙ୍କ ନିକଟରେ ପ୍ରାର୍ଥନା କଲେ "ଇନ୍ଦ୍ରାଦି ପଞ୍ଚଦେବ ଯାଇ ଆମ୍ଭମାନଙ୍କୁ କୌଣସି

ମନୁଷ୍ୟ ଗର୍ଭରେ ଉତ୍ପନ୍ନ କରନ୍ତୁ !!!" ସେହି ପାଞ୍ଚଜଣ ଇନ୍ଦ୍ର, ଇନ୍ଦ୍ରାଦିଙ୍କ ଔରସରେ ପଞ୍ଚପାଣ୍ଡବ ହେଲେ । ଝିନାପରାଧରେ ସ୍ତ୍ରୀଲୋକଟାକୁ ମହାଦେବ ହୁକୁମ ଦେଲେ ଯେ "ତୁମେ ଯାଇ ଏମାନଙ୍କ ସ୍ତ୍ରୀ ହୁଅ ।" ସେ ଦ୍ରୌପଦୀ ହେଲା । ସେ ଯେ କାହିଁକି କାନ୍ଦୁଥିଲା, ତାହାର ଆଉ କୌଣସି ଖବର ନାହିଁ । ଅଧିକତର ରହସ୍ୟର ବିଷୟ ଏହି ଯେ, ନାରାୟଣ ଏହିକଥା ଶୁଣିବା ମାତ୍ରେ ନିଜର ମୁଣ୍ଡରୁ ଦୁଇଟି କେଶ ଉପାଡ଼ି ପକାଇଦେଲେ, ଗୋଟିଏ କଳା ଏବଂ ଅନ୍ୟଟି ପାଚିଲା । ପାଚିଲାଟି ବଳରାମ ହେଲେ ଏବଂ କଳାଟି କୃଷ୍ଣ ହେଲେ !!!

ବୁଦ୍ଧିମାନ ପାଠକଙ୍କୁ ବୋଧହୁଏ ବୁଝାଇବାକୁ ହେବ ନାହିଁ ଯେ, ଆମ୍ଭେମାନେ ଯାହାକୁ ମହାଭାରତର ତୃତୀୟ ସ୍ତର କହୁଅଛୁ, ଏହି ଉପାଖ୍ୟାନଟି ତଦନ୍ତର୍ଗତ । ଅର୍ଥାତ୍ ଏହା ମୂଳ ମହାଭାରତର କୌଣସି ଅଂଶ ନୁହେଁ । ପ୍ରଥମତଃ, ଉପାଖ୍ୟାନଟିର ରଚନା ଏବଂ ଗଠନ ବର୍ତ୍ତମାନର ବଙ୍ଗଳାର ସର୍ବନିମ୍ନ ଶ୍ରେଣୀର ଉପନ୍ୟାସ ଲେଖକ ମାନଙ୍କ ପ୍ରଣୀତ ଉପନ୍ୟାସର ରଚନା ଓ ଗଠନ ଅପେକ୍ଷା ମଧ୍ୟ ନିକୃଷ୍ଟ । ମହାଭାରତର ପ୍ରଥମ ଓ ଦ୍ୱିତୀୟ ସ୍ତରର ପ୍ରତିଭାଶାଳୀ କବିମାନେ ଏରୂପ ଉପାଖ୍ୟାନ ସୃଷ୍ଟିର ମହାପାପରେ ପାପୀ ହୋଇ ପାରନ୍ତିନାହିଁ । ଦ୍ୱିତୀୟତଃ, ମହାଭାରତର ଅନ୍ୟାନ୍ୟ ଅଂଶ ସହିତ ଏହାର କୌଣସି ପ୍ରୟୋଜନୀୟ ସମ୍ବନ୍ଧ ନାହିଁ । ଏହି ଉପାଖ୍ୟାନଟିର ସମୁଦାୟ ଅଂଶ ଉଠାଇଦେଲେ, ମହାଭାରତର କୌଣସି ବିଷୟ ଅସ୍ପଷ୍ଟ ଅଥବା କୌଣସି ପ୍ରୟୋଜନ ଅସିଦ୍ଧ ରହିବନାହିଁ । ଦ୍ରୁପଦରାଜାଙ୍କ ଆପତ୍ତି ଖଣ୍ଡନ ନିମିତ୍ତ ଏହାର କୌଣସି ପ୍ରୟୋଜନ ନାହିଁ; କାରଣ, ସେହି ଆପତ୍ତି ବ୍ୟାସୋକ୍ତ ଦ୍ୱିତୀୟ ଗୋଟିଏ ଉପାଖ୍ୟାନ ଦ୍ୱାରା ଖଣ୍ଡିତ ହୋଇଅଛି । ଦ୍ୱିତୀୟ

ଉପାଖ୍ୟାନଟି ସେହି ଅଧ୍ୟାୟରେହିଁ ଅଛି । ତାହା ପ୍ରକ୍ଷିପ୍ତ, ସରଳ ଏବଂ ଆଦିମ ମହାଭାରତର ଅନ୍ତର୍ଗତ ହୋଇଥାଇପାରେ । ପ୍ରଥମୋକ୍ତ ଉପାଖ୍ୟାନଟି ଏହାର ବିରୋଧୀ । ଦୁଇଟିରେ ଦ୍ରୌପଦୀଙ୍କ ପୂର୍ବଜନ୍ମର ଭିନ୍ନ ଭିନ୍ନ ପ୍ରକାର ପରିଚୟ ଅଛି । ସୁତରାଂ ଗୋଟିଏ ଯେ ପ୍ରକ୍ଷିପ୍ତ, ଏଥିରେ କୌଣସି ସନ୍ଦେହ ନାହିଁ । ଏବଂ ଯାହା ଉପରେ କହିଅଛି, ତହିଁରୁ ପ୍ରଥମୋକ୍ତ ଉପାଖ୍ୟାନଟିକୁହିଁ ପ୍ରକ୍ଷିପ୍ତ ବୋଲି ସିଦ୍ଧାନ୍ତ କରିବାକୁ ହେବ । ଦ୍ଵିତୀୟତଃ, ଏହି ପ୍ରଥମୋକ୍ତ ଉପାଖ୍ୟାନ ମହାଭାରତର ଅନ୍ୟାନ୍ୟ ଅଂଶର ବିରୋଧୀ । ମହାଭାରତର ସର୍ବତ୍ରହିଁ କଥିତ ଅଛି ଯେ, ଇନ୍ଦ୍ର ଏକ । ଏଠାରେ ଇନ୍ଦ୍ର ପାଞ୍ଚ । ମହାଭାରତର ସର୍ବତ୍ରହିଁ କଥିତ ଅଛି ଯେ, ପାଣ୍ଡବମାନେ ଧର୍ମ, ବାୟୁ, ଇନ୍ଦ୍ର, ଅଶ୍ୱିନୀକୁମାର ମାନଙ୍କର ଔରସପୁତ୍ର ମାତ୍ର । ଏଠାରେ ସମସ୍ତେ ଜଣେ ଜଣେ ଇନ୍ଦ୍ର । ଏହି ବିରୋଧର ସାମଞ୍ଜସ୍ୟ ନିମିତ୍ତ ଉପାଖ୍ୟାନ ରଚନାକାରୀ ଗର୍ଦ୍ଦଭ ଲେଖିଛନ୍ତି ଯେ, ଇନ୍ଦ୍ରମାନେ ମହାଦେବଙ୍କ ନିକଟରେ ପ୍ରାର୍ଥନା କଲେ, "ଇନ୍ଦ୍ରାଦିହିଁ ଆସି ଆମ୍ଭମାନଙ୍କୁ ମାନୁଷୀ ଗର୍ଭରେ ଉତ୍ପନ୍ନ କରନ୍ତୁ ।" ଜଗଦ୍‌ବିଖ୍ୟାତ ଗ୍ରନ୍ଥ ମହାଭାରତ ଏପରି ଗର୍ଦ୍ଦଭର ଲେଖନୀପ୍ରସୂତ ନୁହେଁ, ଏହା ନିଶ୍ଚିତ ।

ଏଠାରେ ଏହି ଅଶ୍ରଦ୍ଧେୟ ଉପାଖ୍ୟାନଟିର ଉଲ୍ଲେଖ କରିବାର ଆମର ପ୍ରଧାନ ଉଦ୍ଦେଶ୍ୟ ଏହି ଯେ, କି ପ୍ରଣାଳୀ ଅବଲମ୍ବନ କରି ଆମେ ମହାଭାରତର ତିନୋଟି ସ୍ତର ଭାଗ କରୁଅଛୁଁ ଓ କରିବୁ ତାହା ପାଠକଙ୍କୁ ଉଦାହରଣ ଦ୍ୱାରା ବୁଝାଇ ଦେବା । ତାହାଛଡ଼ା ଗୋଟାଏ ଐତିହାସିକ ତତ୍ତ୍ୱ ମଧ୍ୟ ଏହାଦ୍ୱାରା ସ୍ପଷ୍ଟୀକୃତ ହୁଏ । ଯେଉଁ ବିଷ୍ଣୁ, ବେଦରେ ସୂର୍ଯ୍ୟଙ୍କ ମୂର୍ତ୍ତିବିଶେଷ ମାତ୍ର, ପୁରାଣ ଇତିହାସର ଉଚ୍ଚସ୍ତରରେ ଯେ ସର୍ବବ୍ୟାପକ ଈଶ୍ୱର, ସେ କିପରି

ପରବର୍ତ୍ତୀ ହତଭାଗ୍ୟ ଲେଖକମାନଙ୍କ ହସ୍ତରେ ଦାଢ଼ି ନଖ, କଞ୍ଚା କେଶ, ପାଚିଲା କେଶ ପ୍ରଭୃତି ଐଶ୍ୱର୍ଯ୍ୟ ପ୍ରାପ୍ତ ହେଲେ, ଏହି ସବୁ ପ୍ରକ୍ଷିପ୍ତ ଉପାଖ୍ୟାନ ଦ୍ୱାରା ତାହା ବୁଝା ଯାଏ । ଏହାସବୁ ପ୍ରକ୍ଷିପ୍ତ ଉପାଖ୍ୟାନରେ ହିନ୍ଦୁଧର୍ମ୍ମର ଅବନତିର ଇତିହାସ ପଢ଼ିବାକୁ ପାଉଁ । ସେଥି ନିମିତ୍ତ ଏଠାରେ ତାହାର ଉଲ୍ଲେଖ କଲି । କୌଣସି କୃଷ୍ଣଦ୍ୱେଷୀ ଶୈବଦ୍ୱାରା ଏହି ଉପାଖ୍ୟାନ ରଚିତ ହୋଇ ମହାଭାରତରେ ପ୍ରକ୍ଷିପ୍ତ ହୋଇଅଛି, ଏପରି ବିବେଚନା ମଧ୍ୟ କରାଯାଇପାରେ । କାରଣ, ଏଠାରେ ମହାଦେବଙ୍କ ସର୍ବନିୟନ୍ତା ଏବଂ କୃଷ୍ଣ ନାରାୟଣଙ୍କର । ଗୋଟିଏ କେଶ ମାତ୍ର । ମହାଭାରତର ଆଲୋଚନାରେ କୃଷ୍ଣବାଦୀ ଏବଂ ଶୈବ ମାନଙ୍କ ମଧ୍ୟରେ ଏହିପରି ଅନେକ ବିବାଦର ଚିହ୍ନ ଦେଖାଯାଏ । ଏବଂ ଯେଉଁସବୁ ଅଂଶରେ ସେ ଚିହ୍ନପାଉ, ତାହାର ଅଧିକାଂଶହିଁ ପ୍ରକ୍ଷିପ୍ତ ବୋଲି ବୋଧ କରିବାର କାରଣ ପାଉ । ଯଦି ଏହା ଯଥାର୍ଥ ହୁଏ ତେବେ, ଏହାହିଁ ଉପଲବ୍ଧି କରିବାକୁ ହେବ ଯେ, ଏହି ବିବାଦ ଆଦିମ ମହାଭାରତର ପ୍ରଚାରର ଅନେକ ପରେ ଉପସ୍ଥିତ ହୋଇଥିଲା । ଅର୍ଥାତ୍ ଯେତେବେଳେ ଶିବୋପାସନା ଓ କୃଷ୍ଣୋପାସନା ଉଭୟ ପ୍ରବଳ ହୁଏ, ସେତେବେଳେ ବିବାଦ ମଧ୍ୟ ଘୋରତର ହୋଇଥିଲା । ମହାଭାରତ ପ୍ରଚାର ସମୟରେ ବା ତାହାର ପରବର୍ତ୍ତୀ ପ୍ରଥମ କାଳରେ ଏତଦୁଭୟ ମଧ୍ୟରୁ କୌଣସି ଉପାସନାହିଁ ପ୍ରବଳ ନଥିଲା । ସେ ସମୟଟା ବେଦର ଦେବତାଙ୍କର ପ୍ରବଳ ପ୍ରତାପର ସମୟ । ଉଭୟେ ଯେତେ ପ୍ରବଳ ହେଲେ, ସେତେ ବିବାଦ ଲାଗିଲା-ସେତେ ମହାଭାରତର କଳେବର ବୃଦ୍ଧି ପାଇବାକୁ ଲାଗିଲା । ଉଭୟ ପକ୍ଷଙ୍କରହିଁ ଅଭିପ୍ରାୟ, ମହାଭାରତର ଦୋହାଇ ଦେଇ ନିଜର ଦେବତାଙ୍କୁ ବଡ଼ କରିବେ । ଏଥି ନିମିତ୍ତ ଶୈବମାନେ ଶିବମାହାତ୍ମ୍ୟ

ସୂଚକ ରଚନାମାନ ମହାଭାରତରେ ପ୍ରକ୍ଷିପ୍ତ କରିବାକୁ ଲାଗିଲେ ।*
ତଦୁତ୍ତରରେ ବୈଷ୍ଣବମାନେ ବିଷ୍ଣୁ ବା କୃଷ୍ଣମାହାତ୍ମ୍ୟସୂଚକ
ସେହିରୂପ ରଚନା ସବୁ ଗୁଞ୍ଜିଦେବାକୁ ଲାଗିଲେ । ଅନୁଶାସନ-
ପର୍ବରେ ଏହି ବିଷୟର କେତେ ଗୁଡ଼ିଏ ଉତ୍ତମ ଉଦାହରଣ ମିଳେ ।
ଇଚ୍ଛାକଲେ, ପାଠକ ପଢ଼ି ଦେଖିବେ, ପ୍ରାୟ ସବୁଗୁଡ଼ିକରେ ହିଁ
ଟିକିଏ ଟିକିଏ ଗନ୍ଧର୍ବର ଗାବସୌରଭ ଅଛି ।

## ତୃତୀୟ ପରିଚ୍ଛେଦ

## ସୁଭଦ୍ରାହରଣ

ଦ୍ରୌପଦୀ ସ୍ୱୟମ୍ବର ପରେ, ସୁଭଦ୍ରାହରଣରେ କୃଷ୍ଣଙ୍କ ସାକ୍ଷାତ୍
ମିଳେ । ସୁଭଦ୍ରାଙ୍କ ବିବାହରେ କୃଷ୍ଣ ଯାହା କରିଥିଲେ, ଊନବିଂଶ
ଶତାବ୍ଦୀର ନୀତିଜ୍ଞମାନେ ତାହା ହୁଏତ ପସନ୍ଦ କରିବେ ନାହିଁ ।
କିନ୍ତୁ ଊନବିଂଶ ଶତାବ୍ଦୀର ନୀତିଶାସ୍ତ୍ର ଉପରେ, ଜଗଦୀଶ୍ୱରଙ୍କର
ଗୋଟିଏ ନୀତିଶାସ୍ତ୍ର ଅଛି—ତାହା ସବୁ ଶତାବ୍ଦୀରେ, ସବୁ ଦେଶରେ
ଉପଯୋଗୀ ହୁଏ । କୃଷ୍ଣ ଯାହା କରିଥିଲେ, ତାହା ଆମେ ସେହି
ଚିରସ୍ଥାୟୀ ଅଭ୍ରାନ୍ତ ଜାଗତିକ ନୀତି ଦ୍ୱାରାହିଁ ପରୀକ୍ଷା କରିବା ।
ଏ ଦେଶରେ ଅନେକ ଏକବ୍ବିଶ ଗଜର ମାପରେ ଲାଖରାଜ ବା
ଜମି ଜମା ପାଇଥିଲେ । ଜମିଦାରମାନେ ବର୍ତ୍ତମାନର ଗ୍ରେଣ୍ଟ
ସରକାରି ଗଜରେ ମାପି ସେମାନଙ୍କ ଅନେକ ଭୂମି କାଢ଼ି ନେଇ-
ଛନ୍ତି । ସେହିପରି ଊନବିଂଶ ଶତାବ୍ଦୀର ଯେଉଁ ଗ୍ରେଣ୍ଟ ମାପକାଠି
ହୋଇଅଛି, ତାହା ଦାଉରେ ଆମର ଐତିହାସିକ ପୈତୃକ ସମ୍ପତ୍ତି
ସବୁ ହରାଉଅଛୁଁ, ଏହା ଅନେକ ଥର କହିଅଛି । ଆମେ ବର୍ତ୍ତମାନ
ସେହି ଏକବ୍ବିଶ ଗଜ ଚଳାଇବୁ ।

---

* ସେହି ସବୁ ଅବଲମ୍ବନ କରି ମୁର ପ୍ରଭୃତି ପାଶ୍ଚାତ୍ୟ ପଣ୍ଡିତ-
ମାନେ କୃଷ୍ଣଙ୍କୁ ଶୈବବୋଲି ପ୍ରତିପନ୍ନ କରିଛନ୍ତି ।

କୃଷ୍ଣଭକ୍ତମାନେ କହିପାରନ୍ତି, ଏପରି ଗୋଟିଏ ବିସ୍ମୟରେ ପ୍ରବୃତ୍ତ ହେବା ଆଗରୁ, ସ୍ଥିର କର ଯେ, ଏହି ସୁଭଦ୍ରାହରଣବୃତ୍ତାନ୍ତ ମୂଳ ମହାଭାରତର ଅନ୍ତର୍ଗତ, ଅଥବା ପ୍ରକ୍ଷିପ୍ତ । ଯଦି ଏହା ପ୍ରକ୍ଷିପ୍ତ ଏବଂ ଆଧୁନିକ ବୋଲି ବୋଧ କରିବାର କୌଣସି କାରଣ ଥାଏ, ତେବେ ସେ କଥା କହିଲେତ ସବୁ ଗୋଳମାଳ ତୁଟିଗଲା—ଏତେ ବାଗାଡମ୍ବରର ପ୍ରୟୋଜନ ନାହିଁ । ଅତଏବ ଆମେ କହିବାକୁ ବାଧ୍ୟ ଯେ, ସୁଭଦ୍ରାହରଣ ଯେ ମୂଳ ମହାଭାରତର ଅଂଶ, ଏହା ଯେ ପ୍ରଥମ ସ୍ତରର ଅନ୍ତର୍ଗତ, ସେ ବିଷୟରେ ଆମର କୌଣସି ସନ୍ଦେହ ନାହିଁ । ଏହାର ପ୍ରସଙ୍ଗ ଅନୁକ୍ରମଣିକାଧ୍ୟାୟରେ ଏବଂ ପର୍ବସଂଗ୍ରହାଧ୍ୟାୟରେ ଅଛି । ଏହାର ରଚନା ଅତି ଉଚ୍ଚଶ୍ରେଣୀର କବିଙ୍କ ରଚନା । ଦ୍ୱିତୀୟସ୍ତରର ରଚନା ମଧ୍ୟ ସଚରାଚର ଅତି ସୁନ୍ଦର । ତେବେ ପ୍ରଥମ ସ୍ତର ଏବଂ ଦ୍ୱିତୀୟ ସ୍ତରରେ ରଚନାଗତ ଗୋଟାଏ ପ୍ରଭେଦ ଏହି ଯେ, ପ୍ରଥମ ସ୍ତରର ରଚନା ସରଳ ଓ ସ୍ୱାଭାବିକ, ଦ୍ୱିତୀୟ ସ୍ତରର ରଚନାରେ ଅଳଙ୍କାର ଓ ଅତ୍ୟୁକ୍ତିର ବଡ଼ ବାହୁଲ୍ୟ । ସୁଭଦ୍ରାହରଣର ରଚନା ମଧ୍ୟ ସରଳ ଓ ସ୍ୱାଭାବିକ, ଅଳଙ୍କାର ଓ ଅତ୍ୟୁକ୍ତିର ସେପରି ବାହୁଲ୍ୟ ନାହିଁ । ସୁତରାଂ ଏହି ପ୍ରଥମ ସ୍ତରଗତ—ଦ୍ୱିତୀୟ ସ୍ତରର ନୁହେଁ । ଆଉ ଅସଲ କଥା ଏହି ଯେ, ସୁଭଦ୍ରାହରଣ ମହାଭାରତରୁ ଉଠାଇ ନେଲେ ମହାଭାରତ ଅସମ୍ପୂର୍ଣ୍ଣ ହୁଏ । ସୁଭଦ୍ରାଙ୍କ ଠାରୁ ଅଭିମନ୍ୟୁ, ଅଭିମନ୍ୟୁଙ୍କ ଠାରୁ ପରୀକ୍ଷିତ, ପରୀକ୍ଷିତଙ୍କଠାରୁ ଜନ୍ମେଜୟ । ଭଦ୍ରାର୍ଜୁନଙ୍କ ବଂଶହିଁ ବହୁ ଶତାବ୍ଦୀ ଧରି ଭାରତରେ ସାମ୍ରାଜ୍ୟ ଶାସିତ କରିଥିଲେ—ଦ୍ରୌପଦୀଙ୍କ ବଂଶ ନୁହେଁ । ବରଂ ଦ୍ରୌପଦୀ ସ୍ୱୟଂବର ବାଦ ଦେଲେ ଚଳେ, ତଥାପି ସୁଭଦ୍ରା ନୁହେଁ ।

ଦ୍ରୌପଦୀଙ୍କ ପରି ସୁଭଦ୍ରାଙ୍କୁ ମଧ୍ୟ ସାହେବମାନେ ଉଡାଇ

ହେଉଛନ୍ତି । ଯେଉଁ ମଙ୍ଗଳ, ତାହାହିଁ ସୁଭଦ୍ରା । ୱେବର ସାହେବଙ୍କ ଆପତ୍ତି ଏହା ଅପେକ୍ଷା ଗୁରୁତର । ସେ କାହିଁକି କୃଷ୍ଣଭଗିନୀ ସୁଭଦ୍ରାଙ୍କ ମାନବତ୍ୱ ଅସ୍ୱୀକାର କରନ୍ତି, ସେଥିପାଇଁ ଯଜୁର୍ବେଦର ମାଧ୍ୟନ୍ଦିନଶାଖାର ୨୩ ଅଧ୍ୟାୟର ୧୮ କଣ୍ଡିକାର ୪ର୍ଥ ମନ୍ତ୍ରଟି ଉଦ୍ଧୃତ କରିବାକୁ ହେଉଅଛି ।

"ହେ ଅମ୍ବେ ! ହେ ଅମ୍ବିକେ ! ହେ ଅମ୍ବାଳିକେ! ଦେଖ, ଏହି ଅଶ୍ୱ ବର୍ତ୍ତମାନ ଚିରକାଳ ପାଇଁ ନିଦ୍ରିତ ହୋଇଅଛି, ମୁଁ କାମ୍ପିଲ-ବାସିନୀ ସୁଭଦ୍ରା ହୋଇମଧ୍ୟ ସ୍ୱୟଂ ଏହା ନିକଟରେ (ପତିରୂପରେ ବରଣ କରଣାର୍ଥେ ) ସମାଗତ ହୋଇଅଛି, ଏ ବିଷୟରେ କେହିଁ ମତେ ନିୟୋଗ କରିନାହିଁ । *

ଏଥିରୁ ୱେବର ସାହେବ ସିଦ୍ଧାନ୍ତ କରୁଛନ୍ତି,—

"Kampila is a town in the country of the Panchalas. Subhadra, therefore, would seem to be the wife of the king of that district" (କାମ୍ପିଲ ପାଞ୍ଚାଳ ଦେଶର ଗୋଟିଏ ନଗରୀ । ଅତଏବ ସୁଭଦ୍ରା ସେଠାର ରାଜାଙ୍କର ରାଣୀ ବୋଲି ବୋଧହୁଏ)

ସାୟନାଚାର୍ଯ୍ୟ କାମ୍ପିଲବାସିନୀର ଅର୍ଥ ଏହିପରି କରନ୍ତି— "କାମ୍ପିଲ ଶବ୍ଦେନ ଶ୍ଳାଘ୍ୟା ବସ୍ତ୍ର ବିଶେଷ ଉଚ୍ୟତେ ।" କିନ୍ତୁ ୱେବର ସାହେବଙ୍କ ବିଶ୍ୱାସ ଯେ, ସେ ସାୟନାଚାର୍ଯ୍ୟଙ୍କ ଅପେକ୍ଷା ସଂସ୍କୃତ ଭଲ ବୁଝନ୍ତି, ଅତଏବ ସେ ଏହି ବ୍ୟାଖ୍ୟା ଗ୍ରହଣ କରି ନାହାନ୍ତି । ତାହା ନ କରନ୍ତୁ, କିନ୍ତୁ କାମ୍ପିଲବାସିନୀ କୌଣସି

* ଶ୍ରୀଯୁକ୍ତ ସତ୍ୟବ୍ରତ ସାମଶ୍ରମୀକୃତ ଅନୁବାଦ ।

ସ୍ତ୍ରୀର ନାମ ସୁଭଦ୍ରା ଥିଲା ବୋଲି କୃଷ୍ଣଭଗିନୀଙ୍କ ନାମ କାହିଁକି ସୁଭଦ୍ରା ହୋଇ ପାରିବ ନାହିଁ, ତାହା ବୁଝି ପାରିଲି ନାହିଁ । ଯେ କୌଣସି ରାଜା ଅଶ୍ୱମେଧ ଯଜ୍ଞ କରନ୍ତୁ, ତାଙ୍କ ମହିଷୀଙ୍କୁ ଏହି ମନ୍ତ୍ର ପାଠ କରିବାକୁ ହେବ, ତାଙ୍କୁ କହିବାକୁ ହେବ, "ମୁଁ କାମ୍ପିଲବାସିନୀ ସୁଭଦ୍ରା ।" ସୁଭଦ୍ରା ଶବ୍ଦର ସାମଶ୍ରମୀ ମହାଶୟ ଏହି ଅର୍ଥ କରନ୍ତି,— କଲ୍ୟାଣୀ ଅର୍ଥାତ୍ ସୌଭାଗ୍ୟବତୀ । ମହୀଧର କହନ୍ତି,—କାମ୍ପିଲନଗରର ମହିଳାମାନେ ଅତିଶୟ ରୂପଲାବଣ୍ୟବତୀ । ଅତଏବ ଏହି ମନ୍ତ୍ରର ଅର୍ଥ ଏହାହିଁ ଯେ, "ମୁଁ ସୌଭାଗ୍ୟବତୀ ଓ ରୂପଲାବଣ୍ୟବତୀ ହୋଇ ସୁଦ୍ଧା ଏହି ଅଶ୍ୱ ନିକଟକୁ ସମାଗତ ହୋଇଅଛି ।' ଏଣୁ ବୁଝିପାରୁନାହିଁ ଯେ, ଏହି ମନ୍ତ୍ରବଳରେ କୃଷ୍ଣଭଗିନୀ ଅର୍ଜ୍ଜୁନପତ୍ନୀ ସୁଭଦ୍ରାଙ୍କ ପରିବର୍ତ୍ତେ କାହିଁକି ଜଣେ ପାଞ୍ଚାଳୀ ସୁଭଦ୍ରାଙ୍କୁ କଳ୍ପନା କରିବାକୁ ହେବ । ଯୁଧିଷ୍ଠିର ଅଶ୍ୱମେଧ ଯଜ୍ଞ କରିଥିଲେ, ଏବଂ ତାଙ୍କ ବହୁପୂର୍ବବର୍ତ୍ତୀ ରାଜାମାନେ ମଧ୍ୟ ଅଶ୍ୱମେଧଯଜ୍ଞ କରିଥିଲେ, ଏହା ମହାଭାରତ ଏବଂ ଅନ୍ୟାନ୍ୟ ପ୍ରାଚୀନ ଗ୍ରନ୍ଥରେ ଦେଖାଯାଏ । ଅତଏବ ଏହାହିଁ ସମ୍ଭବ ଯେ, ଅଶ୍ୱମେଧ ଯଜ୍ଞର ଏହି ଯଜୁର୍ମନ୍ତ୍ର କୃଷ୍ଣ-ପାଣ୍ଡବଙ୍କ ଅପେକ୍ଷା ପ୍ରାଚୀନ । ବର୍ତ୍ତମାନ ଯେପରି ଲୋକମାନେ ଆଧୁନିକ ଲେଖକମାନଙ୍କ କାବ୍ୟଗ୍ରନ୍ଥରୁ ପୁତ୍ରକନ୍ୟାର ନାମକରଣ କରୁଛନ୍ତି* ସେହିପରି ସେ କାଳରେ ମଧ୍ୟ ବେଦରୁ ଲୋକମାନଙ୍କର ପୁତ୍ର କନ୍ୟାର ନାମ ରଖିବା ଅସମ୍ଭବ ନୁହେଁ । ଏହି ମନ୍ତ୍ରରୁ କାଶୀରାଜ ନିଜର ତିନୋଟି କନ୍ୟାର ନାମ ଅମ୍ବା, ଅମ୍ବିକା, ଅମ୍ବାଳିକା ରଖିଥିବେ, ଏବଂ ଏହିପରି କୃଷ୍ଣଭଗିନୀ ସୁଭଦ୍ରାଙ୍କର ମଧ୍ୟ ନାମକରଣ ହୋଇଥିବ । ଏହି ମନ୍ତ୍ରରେ

---

* ଯଥା—ପ୍ରମୀଳା, ମୃଣାଳିନୀ ଇତ୍ୟାଦି

ଏପରି କିଛି ଦେଖା ଯାଏ ନାହିଁ, ଯହିଁରୁ କୃଷ୍ଣଭଗିନୀ ସୁଭଦ୍ରା କେହି ଥିଲେନାହିଁ, ଏପରି ଅନୁମାନ କରାଯାଏ । ଅତଏବ ଆମ୍ଭେମାନେ ସୁଭଦ୍ରାହରଣର ବିଷୟରେ ପ୍ରବୃତ୍ତ ହେବୁ ।

ବର୍ତ୍ତମାନ ସୁଭଦ୍ରାହରଣର ନୈତିକ ବିଷୟରେ ପ୍ରବୃତ୍ତ ହେବା ଆଗରୁ ପାଠକଙ୍କ ନିକଟରେ ଗୋଟାଏ ଅନୁରୋଧ ଅଛି । ସେ କାଶୀଦାସଙ୍କ ଗ୍ରନ୍ଥରେ ଅଥବା କଥକଙ୍କ ନିକଟରେ, ଅଥବା ପିତାମହୀଙ୍କ ମୁଖରେ, ଅଥବା ବଙ୍ଗଳା ନାଟକାଦିରେ ଯେଉଁ ସୁଭଦ୍ରାହରଣ ପଢ଼ିଛନ୍ତି ବା ଶୁଣିଛନ୍ତି, ତାହା ଅନୁଗ୍ରହପୂର୍ବକ ଭୁଲି ଯାଆନ୍ତୁ । ଅର୍ଜ୍ଜୁନଙ୍କୁ ଦେଖି ସୁଭଦ୍ରା ଅନଙ୍ଗଶରରେ ବ୍ୟଥିତ ହୋଇ ଉନ୍ମତ୍ତ ହେଲେ, ସତ୍ୟଭାମା ମଧ୍ୟବର୍ତ୍ତିନୀ ଦୂତୀ ହେଲେ, ଅର୍ଜ୍ଜୁନ ସୁଭଦ୍ରାଙ୍କୁ ହରଣକରି ନେଇ ଯିବାରୁ ଯାଦବ ସେନାମାନଙ୍କ ସହିତ ତାଙ୍କର ଘୋରତର ଯୁଦ୍ଧ ହେଲା, ସୁଭଦ୍ରା ତାଙ୍କର ସାରଥି ହୋଇ ଗଗନମାର୍ଗରେ ତାଙ୍କ ରଥ ଚଳାଇବାକୁ ଲାଗିଲେ-ସେ ସବୁକଥା ଭୁଲି ଯାଆନ୍ତୁ । ଏହା ସବୁ ଅତି ମନୋହର କାହାଣୀ ସତ୍ୟ, କିନ୍ତୁ ମୂଳ ମହାଭାରତରେ ଏହାର କିଛିହିଁ ନାହିଁ । ଏହା କାଶୀରାମ ଦାସଙ୍କ ଗ୍ରନ୍ଥରେଇ ପ୍ରଥମ ଦେଖାଯାଏ, କିନ୍ତୁ ଏ ସବୁ ତାଙ୍କ ସୃଷ୍ଟି, କି ତାଙ୍କ ପୂର୍ବବର୍ତ୍ତୀ କଥକମାନଙ୍କ ସୃଷ୍ଟି, ତାହା କହି ହେଉନାହିଁ । ସଂସ୍କୃତ ମହାଭାରତରେ ସୁଭଦ୍ରାହରଣ ଯେ ପ୍ରକାର କଥିତ ହୋଇଅଛି, ତାହାର ସ୍ଥୂଳ ମର୍ମ କହୁଅଛୁ ।

ଦ୍ରୌପଦୀଙ୍କ ବିବାହ ପରେ ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥରେ ସୁଖରେ ରାଜତ୍ୱ କରୁଥିଲେ । କୌଣସି କାରଣରୁ ଅର୍ଜ୍ଜୁନ ଦ୍ୱାଦଶ ବର୍ଷ ନିମିତ୍ତ ଇନ୍ଦ୍ରପ୍ରସ୍ଥ ପରିତ୍ୟାଗ ପୂର୍ବକ ବିଦେଶରେ ଭ୍ରମଣ କରୁଥିଲେ । ଅନ୍ୟାନ୍ୟ ଦେଶପର୍ଯ୍ୟଟନାନନ୍ତର ଶେଷରେ

ସେ ଦ୍ୱାରକାରେ ଉପସ୍ଥିତ ହେଲେ । ସେଠାରେ ଯାଦବମାନେ ତାଙ୍କର ବିଶେଷ ସମାଦାର ଓ ସତ୍କାର କରିଥିଲେ । ଅର୍ଜ୍ଜୁନ କିଛିଦିନ ସେଠାରେ ଅବସ୍ଥିତ କଲେ । ଏକଦା ଯାଦବମାନେ ରୈବତକ ପର୍ବତରେ ଗୋଟାଏ ମହାନ ଉତ୍ସବ ଆରମ୍ଭକଲେ । ସେଠାରେ ଯଦୁବୀରମାନେ ଓ ଯଦୁକୁଳାଙ୍ଗନାମାନେ ସମସ୍ତେ ଉପସ୍ଥିତ ହୋଇ ଆମୋଦ ଆହ୍ଲାଦ କଲେ । ଅନ୍ୟାନ୍ୟ ସ୍ତ୍ରୀଲୋକ-ମାନଙ୍କ ମଧ୍ୟରେ ସୁଭଦ୍ରା ମଧ୍ୟ ଉପସ୍ଥିତ ଥିଲେ । ସେ କୁମାରୀ ଓ ବାଳିକା । ଅର୍ଜ୍ଜୁନ ତାଙ୍କୁ ଦେଖି ମୁଗ୍ଧ ହେଲେ । କୃଷ୍ଣ ତାହା ଜାଣିପାରି ଅର୍ଜ୍ଜୁନଙ୍କୁ କହିଲେ "ସଖେ! ବନଚର ହୋଇ ମଧ୍ୟ ଅନଙ୍ଗଶରରେ ଚଞ୍ଚଳ ହେଲ ?" ଅର୍ଜ୍ଜୁନ ଅପରାଧ ସ୍ୱୀକାର କରି, ସୁଭଦ୍ରା ଯେପରି ତାଙ୍କର ମହିଷୀ ହୁଅନ୍ତି, ସେ ବିଷୟରେ କୃଷ୍ଣଙ୍କ ପରାମର୍ଶ ପଚାରିଲେ । କୃଷ୍ଣ ଯେଉଁ ପରାମର୍ଶ ଦେଲେ, ତାହା ଏହି:—

"ହେ ଅର୍ଜ୍ଜୁନ! ସ୍ୱୟମ୍ବରହିଁ କ୍ଷତ୍ରିୟମାନଙ୍କର ବିଧେୟ, କିନ୍ତୁ ସ୍ତ୍ରୀଲୋକର ପ୍ରବୃତ୍ତିର ବିଷୟ କିଛି କୁହାଯାଏ ନାହିଁ, ସୁତରାଂ ସେ ବିଷୟରେ ମୋର ସଂଶୟ ଜନ୍ମୁଛି । ପୁଣି ଧର୍ମଶାସ୍ତ୍ରକାର ମାନେ କହନ୍ତି, ବିବାହୋଦ୍ଦେଶ୍ୟରେ ବଳପୂର୍ବକ ହରଣ କରିବା ମଧ୍ୟ ମହାବୀର କ୍ଷତ୍ରିୟମାନଙ୍କ ପ୍ରଶଂସନୀୟ । ଅତଏବ ସ୍ୱୟଂମ୍ବର କାଳ ଉପସ୍ଥିତ ହେଲେ ତୁମେ ମୋର ଭଗିନୀକୁ ବଳପୂର୍ବକ ହରଣ କରି ନେଇଯିବ; କାରଣ ସ୍ୱୟମ୍ବର ସମୟରେ ସେ କାହାପ୍ରତି ଅନୁରକ୍ତ ହେବ, କିଏ କହିପାରେ ?"

ଏହି ପରାମର୍ଶର ଅନୁବର୍ତ୍ତୀ ହୋଇ ଅର୍ଜ୍ଜୁନ ପ୍ରଥମତଃ ଯୁଧିଷ୍ଠିର ଓ କୁନ୍ତୀଙ୍କ ଅନୁମତି ଆଣିବାକୁ ଦୂତ ପ୍ରେରଣ କଲେ । ସେମାନଙ୍କ ଅନୁମତି ପାଇଲେ, ଏକଦା, ସୁଭଦ୍ରା ଯେତେବେଳେ

ରୈବତକ ପର୍ବତ ପ୍ରଦକ୍ଷିଣ କରି ଦ୍ୱାରକାଭିମୁଖେ ଯାତ୍ରା କରୁଥିଲେ, ସେତେବେଳେ ଅର୍ଜ୍ଜୁନ ତାଙ୍କୁ ବଳପୂର୍ବକ ଗ୍ରହଣକରି ରଥରେ ଉଠାଇ ନେଇ ପ୍ରସ୍ଥାନ କଲେ । ଏବେ, ଆଜିକାଲିକାର ଦିନରେ ଯଦି କେହି ବିବାହୋଦ୍ଦେଶ୍ୟରେ କାହାରି କନ୍ୟାକୁ ବଳପୂର୍ବକ କାଢ଼ିନେଇ ଚାଲିଯାଏ, ତେବେ ସେ ସମାଜରେ ନିନ୍ଦିତ ଏବଂ ରାଜଦଣ୍ଡରେ ଦଣ୍ଡିତ ହେବାର ଯୋଗ୍ୟ, ଏଥିରେ ସନ୍ଦେହ ନାହିଁ । ଏବଂ ବର୍ତ୍ତମାନ ସମୟରେ ଯଦି କେହି ଅନ୍ୟକୁ କହନ୍ତି, "ମହାଶୟ ! ଯେତେବେଳେ ମୋର ଭଗିନୀକୁ ବିବାହ କରିବାକୁ ଆପଣଙ୍କର ଇଚ୍ଛା ହୋଇଅଛି, ସେତେବେଳେ ଆପଣ ତାକୁ କାଢ଼ିନେଇ ପଳାୟନ କରନ୍ତୁ, ଏହାହିଁ ମୋର ପରାମର୍ଶ," ତେବେ ସେ ବ୍ୟକ୍ତି ମଧ୍ୟ ଜନସମାଜରେ ନିନ୍ଦନୀୟ ହେବ, ଏଥିରେ ସନ୍ଦେହ ନାହିଁ । ଅତଏବ ପ୍ରଚଳିତ ନୀତିଶାସ୍ତ୍ରାନୁସାରେ ( ସେ ନୀତିଶାସ୍ତ୍ରର କିଛିମାତ୍ର ଦୋଷ ଦେଉ ନାହିଁ ) କୃଷ୍ଣାର୍ଜ୍ଜୁନ ଉଭୟେହିଁ ଅତିଶୟ ନିନ୍ଦନୀୟ କାର୍ଯ୍ୟ କରିଥିଲେ, ସନ୍ଦେହ ନାହିଁ ଲୋକ ଚକ୍ଷୁରେ ଧୂଳି ପକାଇ କୃଷ୍ଣଙ୍କୁ ଟେକିବା ଯଦି ମୋର ଉଦ୍ଦେଶ୍ୟ ହୁଅନ୍ତା, ତେବେ ସୁଭଦ୍ରାହରଣ ପର୍ବାଧ୍ୟାୟ ପ୍ରକ୍ଷିପ୍ତ ବୋଲି, କିମ୍ବା ଏହିପରି ଗୋଟାଏ କିଛି କୁପ୍ରଚେଷ୍ଟା କରି, ଏ ଉପଦ୍ରୁଟାକୁ ବାଦ୍‌ଦେଇ ଯାନ୍ତି । କିନ୍ତୁ ସେ ସବୁ ପଥମୋର ଅବଲମ୍ବନୀୟ ନୁହେଁ । ସତ୍ୟ ଭିନ୍ନ ମିଥ୍ୟା ପ୍ରଶଂସାରେ, କାହାରି ମହିମା ବଢି ପାରେନାହିଁ ଏବଂ ଧର୍ମର ଅବନତି ଭିନ୍ନ ଉନ୍ନତି ହୁଏ ନାହିଁ ।

କିନ୍ତୁ କଥାଟା ଟିକିଏ ଗମ୍ଭୀରରେ ବୁଝିବାକୁ ହେବ । କେହି କାହାରି କନ୍ୟା ଧରି ନେଇ ବିବାହ କଲେ, ସେଟା ଦୋଷ ବୋଲି ଗଣ୍ୟ ହୁଏ କାହିଁକି ? ତିନି କାରଣରୁ । ପ୍ରଥମତଃ ଅପହୃତା କନ୍ୟା

ଉପରେ ଅତ୍ୟାଚାର କରା ହୁଏ । ଦ୍ୱିତୀୟତଃ, କନ୍ୟାର ପିତା ମାତା ଓ ବନ୍ଧୁବର୍ଗଙ୍କ ଉପରେ ଅତ୍ୟାଚାର । ତୃତୀୟତଃ, ସମାଜ ଉପରେ ଅତ୍ୟାଚାର । ସମାଜ ରକ୍ଷାର ମୂଳସୂତ୍ର ଏହି ଯେ, କେହି କାହାର ଉପରେ ଅବୈଧ ବଳ ପ୍ରୟୋଗ କରି ପାରିବ ନାହିଁ । କେହି କାହାରି ଉପରେ ଅବୈଧ ବଳପ୍ରୟୋଗ କରିଲେ ମାତ୍ରେ ସମାଜର ସ୍ଥିତି ଉପରେ ଆଘାତ କରା ହେଲା । ବିବାହାର୍ଥ କନ୍ୟା ହରଣକୁ ନିନ୍ଦନୀୟ କାର୍ଯ୍ୟ ବିବେଚନା କରିବାର ଏହି ତିନୋଟି ଗୁରୁତର କାରଣ ଅଟେ, କିନ୍ତୁ ତାହା ଛଡ଼ା ଆଉ ଚତୁର୍ଥ କାରଣ କିଛି ନାହିଁ ।

ବର୍ତ୍ତମାନ ଦେଖାଯାଉ; କୃଷ୍ଣଙ୍କର ଏହି କାର୍ଯ୍ୟରେ ଏଇ ତିନି-ଜଣ ମଧ୍ୟରେ କିଏ କେତେ ଦୂର ଅତ୍ୟାଚାର ପ୍ରାପ୍ତ ହୋଇଥିଲେ । ପ୍ରଥମତଃ ଅପହୃତାକନ୍ୟା ଉପରେ କେତେଦୂର ଅତ୍ୟାଚାର ହୋଇ ଥିଲା ଦେଖାଯାଉ । କୃଷ୍ଣ ତାଙ୍କର ଜ୍ୟେଷ୍ଠ ଭ୍ରାତା ଏବଂ ବଂଶର ଶ୍ରେଷ୍ଠ । ସୁଭଦ୍ରାର ଯହିଁରେ ସର୍ବୋତୋଭାବେ ମଙ୍ଗଳ ହୁଏ, ତାହାହିଁ ତାଙ୍କର କର୍ତ୍ତବ୍ୟ-ତାହାହିଁ ତାଙ୍କର ଧର୍ମ-ଊନବିଂଶ ଶତାବ୍ଦିର ଭାଷାରେ ତାହାହିଁ ତାଙ୍କର Duty । ପୁଣି ସ୍ତ୍ରୀଲୋକ ପକ୍ଷରେ ପ୍ରଧାନମଙ୍ଗଳ-ସର୍ବାଙ୍ଗୀଣ ମଙ୍ଗଳ କହିଲେ ମଧ୍ୟ ହୁଏ—ସତ୍‌ପାତ୍ରସ୍ଥା ହେବା । ଅତଏବ ସୁଭଦ୍ରାଙ୍କ ପ୍ରତି କୃଷ୍ଣଙ୍କର ପ୍ରଧାନ Duty (କର୍ତ୍ତବ୍ୟ) — ସେ ଯେପରି ସତ୍‌ପାତ୍ରସ୍ଥା ହୁଅନ୍ତି, ତାହାହିଁ କରିବା । ପୁଣି ଅର୍ଜ୍ଜୁନତୁଲ୍ୟ ସତ୍‌ପାତ୍ର କୃଷ୍ଣଙ୍କ ପରିଚିତ ବ୍ୟକ୍ତିମାନଙ୍କ ମଧ୍ୟରେ ନଥିଲା । ଏହା ବୋଧ ହୁଏ ମହାଭାରତର ପାଠକ ମାନଙ୍କ ନିକଟରେ କଷ୍ଟ କରି ପ୍ରମାଣ କରିବାକୁ ହେବ ନାହିଁ । ଅତଏବ ସେ ଯେପରି ଅର୍ଜ୍ଜୁନଙ୍କ ପତ୍ନୀ ହୁଅନ୍ତି, ଏହାହିଁ ସୁଭଦ୍ରାଙ୍କ ମଙ୍ଗଳାର୍ଥେ କୃଷ୍ଣଙ୍କ କର୍ତ୍ତବ୍ୟ । ତାଙ୍କର ଯେଉଁ ଉକ୍ତି ଉଦ୍ଧୃତ କରିଅଛୁ; ସେଥିରେ ସେ ଦେଖାଇ-

ଛନ୍ତି, ବଳପୂର୍ବକ ହରଣ ଭିନ୍ନ ଅନ୍ୟ କୌଣସି ପ୍ରକାରରେ ଏହି କର୍ତ୍ତବ୍ୟ ସାଧନ ହୋଇ ପାରନ୍ତା କି ନାହିଁ, ତାହା ସନ୍ଦେହ ଜନକ ଯେଉଁଠାରେ ସ୍ୱଚ୍ଛ ପଳ ଚିର ଜୀବନର ମଙ୍ଗଳ, ସେଠାରେ ଯେଉଁ ପଥରେ ସନ୍ଦେହ, ସେ ପଥରେ ଯିବା ଉଚିତ ନୁହେ । ଯେଉଁ ପଥରେ ମଙ୍ଗଳ ସିଦ୍ଧି ନିଶ୍ଚିତ, ସେହି ପଥରେହିଁ ଯିବାକୁ ହୁଏ । ଅତଏବ କୃଷ୍ଣ, ସୁଭଦ୍ରାଙ୍କ ଚିରଜୀବନର ପରମ ଶୁଭ ସୁନିଶ୍ଚିତ କରି ଦେଇ, ତାଙ୍କ ପ୍ରତି ପରମ ଧର୍ମାନୁମତ କାର୍ଯ୍ୟହିଁ କରିଥିଲେ - ତାଙ୍କ ପ୍ରତି କୌଣସି ଅତ୍ୟାଚାର କରି ନାହାନ୍ତି ।

ଏ କଥା ଉପରେ ଦୁଇଟି ଆପତ୍ତି ଉତ୍ଥାପିତ ହୋଇ ପାରେ । ପ୍ରଥମ ଆପତ୍ତି ଏହି ଯେ, ମୋର ଯେଉଁ କାର୍ଯ୍ୟରେ ଇଚ୍ଛା ନାହିଁ ସେ କାର୍ଯ୍ୟ ମୋ ପକ୍ଷରେ ମଙ୍ଗଳକର ହେଲେ ମଧ୍ୟ, ମୋ ଉପରେ ବଳ ପ୍ରୟୋଗ କରି ସେ କାର୍ଯ୍ୟରେ ପ୍ରବୃତ୍ତ କରିବାର କାହାରି ଅଧିକାର ନାହିଁ । ପୁରୋହିତ ମହାଶୟ ମନେ କରନ୍ତି ଯେ ମୁଁ ଯଦି ମୋର ସର୍ବସ୍ୱ ବ୍ରାହ୍ମଣକୁ ଦାନ କରେ, ତେବେ ମୋର ପରମ ମଙ୍ଗଳ ହେବ । କିନ୍ତୁ ତାଙ୍କର ଏପରି କିଛି ଅଧିକାର ନାହିଁ ଯେ, ମତେ ମାରପିଟ କରି ସର୍ବସ୍ୱ ବ୍ରାହ୍ମଣକୁ ଦାନ କରାଇବେ । ଶୁଭ ଉଦ୍ଦେଶ୍ୟରେ ସାଧନ ନିମିତ୍ତ ନିନ୍ଦନୀୟ ଉପାୟ ଅବଲମ୍ବନ କରିବା ମଧ୍ୟ ନିନ୍ଦନୀୟ । ଊନବିଂଶ ଶତାବ୍ଦୀର ଭାଷାରେ ଏହାର ଅନୁବାଦ ଏହିଯେ, ' The end does not sanctify the means. " (ଅସତ୍ ପନ୍ଥା ସର୍ବଥା ବର୍ଜ୍ଜନୀୟ) ଏ କଥାର ଦୁଇଟି ଉତ୍ତର ଅଛି । ପ୍ରଥମ ଉତ୍ତର ଏହି ଯେ, ସୁଭଦ୍ରାଙ୍କର ଯେ ଅର୍ଜ୍ଜୁନଙ୍କ ପ୍ରତି ଅନିଚ୍ଛା ବା ବିରକ୍ତି ଥିଲା, ଏପରି କିଛି ପ୍ରକାଶ ନାହିଁ । ଇଚ୍ଛା ଅନିଚ୍ଛା କିଛିହିଁ ପ୍ରକାଶ ନାହିଁ । ପ୍ରକାଶ ଥିବାର ସମ୍ଭାବନା ବଡ଼ ଅଳ୍ପ । ହିନ୍ଦୁ ଘରର କନ୍ୟା-କୁମାରୀ ଏବଂ

ବାଳିକା-ପାଣ୍ଡବଶ୍ରେଷ୍ଠଙ୍କ ପ୍ରତି ଇଚ୍ଛା ବା ଅନିଚ୍ଛା ପ୍ରାୟ ପ୍ରକାଶ କରେ ନାହିଁ । ବାସ୍ତବିକ, ତାଙ୍କ ମନରେ ବି ବୋଧହୁଏ, ପାଣ୍ଡବଶ୍ରେଷ୍ଠଙ୍କ ପ୍ରତି ଇଚ୍ଛା ଅନିଚ୍ଛା ପ୍ରାୟ ଜନ୍ମେ ନାହିଁ, ତେବେ ବଡ଼ ଝିଅ ଘରେ ପୋଷି ରଖିଲେ ଜନ୍ମି ପାରେ । ପରନ୍ତୁ ଯଦି କୌଣସି କାର୍ଯ୍ୟରେ ମୋର ଇଚ୍ଛା ବା ଅନିଚ୍ଛା କିଛିହିଁ ନଥାଏ, ଯଦି ସେହି କାର୍ଯ୍ୟ ମୋ ପକ୍ଷରେ ପରମ ମଙ୍ଗଳକର ହୁଏ, ପୁଣି କେବଳ ବିଶେଷ ପ୍ରକୃତିର ଅଭାବରୁ ବା ଲଜ୍ଜାବଶତଃ ବା ଉପାୟାଭାବ ବଶତଃ ମୁଁ ସେ କାର୍ଯ୍ୟ ସ୍ୱୟଂ କରୁ ନାହିଁ, ଏପରି ହୁଏ, ଆଉ ଯଦି ମୋ ଉପରେ ଅଳ୍ପ ଟିକିଏ ବଳ ପ୍ରୟୋଗର ଛଳନା କଲେ ସେହି ପରମ ମଙ୍ଗଳକର କାର୍ଯ୍ୟ ସୁସିଦ୍ଧ ହୁଏ । ତେବେ ସେ ବଳ-ପ୍ରୟୋଗ କରେ ଅଧର୍ମ ? ମନେ କର କୌଣସି ଗୋଟିଏ ବଡ଼ ଘରର ପିଲା ଦୁରବସ୍ଥାରେ ପଡ଼ିଅଛି । ତୁମ ପାଖରେ ଖଣ୍ଡେ ଗୃକର ପାଇଲେ ଖାଇ ବଞ୍ଚି ଯାଏ । କିନ୍ତୁ ବଡ଼ ଘର ବୋଲି ସେଥିରେ ସେପରି ଇଚ୍ଛା ନାହିଁ, କିନ୍ତୁ ତୁମେ ତାକୁ ଧରି ନେଇ ତାକୁ ଧରି ନେଇ ଯାଇ ଗୃକରରେ ବସାଇ ଦେଲେ ଆପତ୍ତି କରିବ ନାହିଁ, ବରଂ ସପରିବାରରେ ଖାଇ ବଞ୍ଚିବ । ସେ ସ୍ଥଳରେ ତାହାର ହାତ ଧରି ଟାଣି ନେଇ ଦିଟା ଧମକ ଦେଇ ତାକୁ ଉପର ଖାନାରେ ବସାଇ ଦେଲେ କଣ ତୁମର ଅଧର୍ମାଚରଣ ବା ପୀଡ଼ନ କରାହେବ ? ସୁଭଦ୍ରାର ଅବସ୍ଥା ମଧ୍ୟ ଠିକ୍ ସେହିପରି । ହିନ୍ଦୁ ଘରର କୁମାରୀ କନ୍ୟା, ବୁଝାଇ କହିଲେ, ବା ଆସଗୋ” ବୋଲି ଡାକିଲେ ବର ସଙ୍ଗରେ ଯିବ ନାହିଁ । ଏଣୁ ଧରି ନେଇ ଯିବାର ଛଳନା ଛଡ଼ା ତାହାର ମଙ୍ଗଳସାଧନର ଉପାୟାନ୍ତର ଥିଲା ନାହିଁ ।

"ମୋର ଯେଉଁ କାର୍ଯ୍ୟରେ ଇଚ୍ଛା ନାହିଁ, ସେ କାର୍ଯ୍ୟ ମୋ ପକ୍ଷରେ ପରମ ମଙ୍ଗଳକର ହେଲେ ମଧ୍ୟ ମୋ ଉପରେ ବଳ

ପ୍ରୟୋଗ କରି, ସେ କାର୍ଯ୍ୟରେ ପ୍ରବୃତ୍ତ କରିବାର କାହାରି ଅଧିକାର ନାହିଁ ।” ଆମେ କହିଅଛୁଁ ଏ ଆପତ୍ତିର ଦୁଇଟି ଉତ୍ତର ଅଛି । ପ୍ରଥମ ଉତ୍ତର ଉପରେ ବୁଝାଇଲି । ପ୍ରଥମ ଉତ୍ତରରେ ଆମେ ସେହି ଆପତ୍ତିର କଥାଟା ଯଥାର୍ଥ ବୋଲି ସ୍ୱୀକାର କରି ନେଇ ଉତ୍ତର ଦେଇ ଅଛୁଁ । ଦ୍ୱିତୀୟ ଉତ୍ତର ଏହି ଯେ, କଥାଟା ସବୁ ସମୟରେ ଯଥାର୍ଥ ନୁହେଁ । ଯେଉଁ କାର୍ଯ୍ୟରେ ମୋର ପରମ ମଙ୍ଗଳ ସେ କାର୍ଯ୍ୟରେ ମୋର ଅନିଚ୍ଛାଥିଲେ ମଧ୍ୟ ବଳ ପ୍ରୟୋଗ କରି ମତେ ତହିଁରେ ପ୍ରବୃତ୍ତ କରିବାର ଯେ କାହାରି ଅଧିକାର ନାହିଁ ଏ କଥା ସବୁ ସମୟରେ ଖଟେ ନାହିଁ । ଯେଉଁ ରୋଗୀ ରୋଗପ୍ରଭାବରେ ପ୍ରାଣ ଯିବା ଉପରେ, କିନ୍ତୁ ଔଷଧରେ ରୋଗୀର ସ୍ୱଭାବସୁଲଭ ବିରାଗବଶତଃ ସେ ଔଷଧ ଖାଇବ ନାହିଁ, ତାକୁ ବଳପୂର୍ବକ ଔଷଧ ଖିଆଇବାକୁ ଚିକିତ୍ସକର ଏବଂ ବନ୍ଧୁ-ବର୍ଗର ଅଧିକାର ଅଛି । ଘାଘାତିକ ବିସ୍ଫୋଟକ ସେ ଇଚ୍ଛା-ପୂର୍ବକ କଟାଇବ ନାହିଁ—ଜୋରକରି କାଟିବାର ଡାକ୍ତରର ଅଧିକାର ଅଛି । ପିଲା ଲେଖା ପଢ଼ା ଶିଖିବ ନାହିଁ, ଜୋରକରି ଲେଖାପଢ଼ା ଶିଖାଇବାର ଶିକ୍ଷକ ଓ ପିତା ମାତା ପ୍ରଭୃତିଙ୍କର ଅଧିକାର ଅଛି । ଏହି ବିବାହ କଥାରେ ଦେଖ ଅପ୍ରାପ୍ତବୟସ୍କ କୁମାର ବା କୁମାରୀ ଯଦି ଅନୁଚିତ ବିବାହରେ ଉଦ୍ୟତ ହୁଏ, ବଳପୂର୍ବକ ନିବୃତ୍ତ କରିବାର କଣ ପିତାମାତାର ଅଧିକାର ନାହିଁ ? ଆଜିମଧ୍ୟ ସଭ୍ୟ ଇଉରୋପୀୟ ଜାତିମାନଙ୍କ ମଧ୍ୟରେ କନ୍ୟାବିବାହରେ ଜୋରକରି ସତ୍ପାତ୍ରରେ କନ୍ୟାଦାନ କରିବାର ପ୍ରଥା ଅଛି । ଯଦି ପନ୍ଦର ବର୍ଷର କୌଣସି ହିନ୍ଦୁକନ୍ୟା କୌଣସି ଶୂଦ୍ରପାତ୍ରରେ ଆପତ୍ତି ଉପସ୍ଥିତ କରେ । ତେବେ କେଉଁ ପିତାମାତା ତାକୁ ଜୋରକରି ସତ୍ପାତ୍ରସ୍ଥ କରିବାକୁ ଆପତ୍ତି କରିବେ ? ଜୋର କରି ବାଳିକା

କନ୍ୟାକୁ ସତ୍ପାତ୍ରସ୍ଥ କଲେ କଣ ସେ ନିନ୍ଦନୀୟ ହେବେ ? ଯଦି ନ ହୁଅନ୍ତି, ତେବେ ସୁଭଦ୍ରାହରଣରେ କୃଷ୍ଣଙ୍କ ଅନୁମତି ନିନ୍ଦନୀୟ କାହିଁକି ?

ଏହା ଗଲା ପ୍ରଥମ ଆପତ୍ତିର ଦୁଇଟି ଉତ୍ତର । ଏଥର ଦ୍ୱିତୀୟ ଆପତ୍ତିର ବିଚାରରେ ପ୍ରବୃତ୍ତ ହେବା । ଦ୍ୱିତୀୟ ଆପତ୍ତି ଏହା ହୋଇ ପାରେ ଯେ, ଆଚ୍ଛା, ସ୍ୱୀକାର କରା ଗଲା ଯେ, କୃଷ୍ଣ ସୁଭ-ଦ୍ରାଙ୍କ ମଙ୍ଗଳ କାମନା କରି, ଏହି ପରାମର୍ଶ ଦେଇଥିଲେ-କିନ୍ତୁ ବଳପୂର୍ବକ ହରଣଭିନ୍ନ କଣ ତାଙ୍କୁ ଅର୍ଜ୍ଜୁନ-ମହିଷୀ କରିବାର ଅନ୍ୟ ଉପାୟ ନ ଥିଲା ? ସ୍ୱୟଂମ୍ବରରେ ଯଦିଚ ଭୟଥିଲା ଯେ, ମୂଢ଼ମତି ବାଳିକା କେବଳ ମୁହଁ ଦେଖି ଭୁଲିଯାଇ କୌଣସି ଅପାତ୍ରରେ ବରମାଲ୍ୟ ଦେବାର ସମ୍ଭାବନା ଥିଲା , କିନ୍ତୁ ଉପାୟା-ନ୍ତର କଣ ନଥିଲା ? କୃଷ୍ଣ କି ଅର୍ଜ୍ଜୁନ, ବସୁଦେବ ପ୍ରଭୃତି କର୍ତ୍ତୃପକ୍ଷଙ୍କ ନିକଟରେ କଥା ପକାଇ ରୀତିମତ ସମ୍ବନ୍ଧ ସ୍ଥିର କରି, ସେମାନଙ୍କୁ ବିବାହରେ ସମ୍ମତ କରାଇ କନ୍ୟା ସମ୍ପ୍ରଦାନ କରାଇ ପାରିଥାନ୍ତେ । ଯାଦବମାନେ କୃଷ୍ଣଙ୍କ ବଶୀଭୂତ, କେହି ହେଲେ ତାଙ୍କ କଥାରେ ଅମତ କରନ୍ତେ ନାହିଁ । ଏବଂ ଅର୍ଜ୍ଜୁନ ମଧ୍ୟ ସୁପାତ୍ର, କେହି ଆପତ୍ତି କରନ୍ତେ ନାହିଁ । ତେବେ ନହେଲା କାହିଁକି ?

ବର୍ତ୍ତମାନ ସମୟରେ ଏ କାର୍ଯ୍ୟ ସହଜରେ ହୋଇ ଥାନ୍ତା । କିନ୍ତୁ ଭଦ୍ରାର୍ଜ୍ଜୁନଙ୍କ ବିବାହ ଚାରି ହଜାର ବର୍ଷ ପୂର୍ବେ ଘଟିଥିଲା, ସେ ସମୟର ବିବାହ ପ୍ରଥା ବର୍ତ୍ତମାନର ବିବାହପ୍ରଥା ପରି ନଥିଲା । ସେଇ ବିବାହ ପ୍ରଥା ନ-ବୁଝିଲେ କୃଷ୍ଣଙ୍କ ଆଦର୍ଶ ବୁଦ୍ଧି ଓ ଆଦର୍ଶ ପ୍ରୀତି ଆମ୍ଭେମାନେ ସମ୍ପୂର୍ଣ୍ଣରୂପେ ବୁଝି ପାରିବା ନାହିଁ ।

ମନୁରେ ଅଛି, ବିବାହ ଅଷ୍ଟବିଧ, (୧) ବ୍ରାହ୍ମ, (୨) ଦୈବ, (୩) ଆର୍ଷ, (୪) ପ୍ରାଜାପତ୍ୟ, (୫) ଆସୁର, (୬) ଗାନ୍ଧର୍ବ, (୭)

ରାକ୍ଷସ ଓ (୮) ପୈଶାଚ । ଏଇ କ୍ରମାନୁସୃଷ୍ଟା ପାଠକ ମନେ ରଖିବେ ।

ଏହି ଅଷ୍ଟ ପ୍ରକାର ବିବାହରେ ସବୁ ବର୍ଣ୍ଣର ଅଧିକାର ନାହିଁ । କ୍ଷତ୍ରିୟର କେଉଁ କେଉଁ ବିବାହରେ ଅଧିକାର' ଦେଖାଯାଉ । ତୃତୀୟ ଅଧ୍ୟାୟରେ ୨୩ ଶ୍ଳୋକରେ କଥିତ ହୋଇଅଛି,

ଷଡ଼ାନୁପୂର୍ବ୍ୟା ବିପ୍ରସ୍ୟ କ୍ଷତ୍ରସ୍ୟ ଚତୁରୋଽବରାନ୍ ।

ଏହାର ଟୀକାରେ କୁଲ୍ଲୂକଭଟ୍ଟ ଲେଖିଛନ୍ତି "କ୍ଷତ୍ରିୟସ୍ୟ ଅବରାନୁ-ପରିଗତନାନାସୁରାଦ୍ୟଶ୍ଚତୁରଃ ।" ତେଣୁ କ୍ଷତ୍ରିୟ ପକ୍ଷରେ କେବଳ ଆସୁର, ଗାନ୍ଧର୍ବ, ରାକ୍ଷସ, ପୈଶାଚ, ଏହି ଚାରି ପ୍ରକାର ବିବାହ ବୈଧ । ଆଉ ସବୁ ଅବୈଧ ।

କିନ୍ତୁ ୨୫ ଶ୍ଳୋକରେ ଅଛି—

ପୈଶାଚଶ୍ଚାସୁରଶ୍ଚୈବ ନ କର୍ତ୍ତବ୍ୟୌ କଦାଚନ ॥

ପୈଶାଚ ଓ ଆସୁର ବିବାହ ସମସ୍ତଙ୍କର ଅକର୍ତ୍ତବ୍ୟ । ଅତଏବ କ୍ଷତ୍ରିୟ ପକ୍ଷରେ କେବଳ ଗାନ୍ଧର୍ବ ଓ ରାକ୍ଷସ, ଏହି ଦ୍ୱିବିଧ ବିବାହହିଁ ବିହିତ ଥିଲା ।

ତନ୍ମଧ୍ୟରେ ବରକନ୍ୟାର ଉଭୟର ପରସ୍ପର ଅନୁରାଗ ସହକାରେ ଯେଉଁ ବିବାହ ହୁଏ, ତାହାହି ଗାନ୍ଧର୍ବ ବିବାହ । ଏଠାରେ ସୁଭଦ୍ରାର ଅନୁରାଗର ଅଭାବରେ ସେ ବିବାହ ଅସମ୍ଭବ; ଏବଂ ସେହି ବିବାହ "କାମସମ୍ଭବ", ସୁତରାଂ ପରମ ମାତଙ୍କ କୃଷ୍ଣାର୍ଜୁନଙ୍କର ତାହା କେବେହେଁ ଅନୁମୋଦିତ ହୋଇ ପାରେ ନାହିଁ । ଅତଏବ ରାକ୍ଷସ ବିବାହ ଛଡ଼ା ଅନ୍ୟ କୌଣସି ପ୍ରକାର ବିବାହ ଶାସ୍ତ୍ରାନୁସାରେ ଧର୍ମ୍ୟନୁହେଁ ଏବଂ କ୍ଷତ୍ରିୟ ପକ୍ଷରେ ପ୍ରଶସ୍ତ ନୁହେଁ; "ଅନ୍ୟପ୍ରକାର ବିବାହର ମଧ୍ୟ ସମ୍ଭାବନା ଏଠାରେ ନଥିଲା

ବଳପୂର୍ବକ କନ୍ୟାକୁ ହରଣ କରି ବିବାହ କରିବାକୁ ରାକ୍ଷସ ବିବାହ କୁହାଯାଏ । ବସ୍ତୁତଃ, ଶାସ୍ତ୍ରାନୁସାରେ ଏହି ରାକ୍ଷସ ଗାନ୍ଧର୍ବାଦିହିଁ କ୍ଷତ୍ରିୟ ପକ୍ଷରେ ଏକ ମାତ୍ର ପ୍ରଶସ୍ତ ବିବାହ । ମନୁର ୩ଅ ; ୨୪ ଶ୍ଳୋକରେ ଅଛି-

ଚତୁରୋ ବ୍ରାହ୍ମଣସ୍ୟାଦ୍ୟାନ୍ ପ୍ରଶସ୍ତାନ୍ କବୟୋ ବିଦୁଃ ।
ରାକ୍ଷସଂ କ୍ଷତ୍ରିୟ ସ୍ୟୈକମାସୁରଂ ବୈଶ୍ୟଶୂଦ୍ରୟୋଃ ॥

ଯେ ବିବାହ ଧର୍ମ୍ମ୍ୟ ଓ ପ୍ରଶସ୍ତ, ନିଜର ଭଗିନୀର ଓ ଭଗିନୀପତିର ଗୌରବାର୍ଥ ଓ ନିଜକୁଳର ଗୌରବାର୍ଥ କୃଷ୍ଣ ସେହି ବିବାହର ପରାମର୍ଶ ଦେବାକୁ ବାଧ୍ୟ ଥିଲେ । ଅତଏବ କୃଷ୍ଣ ଅର୍ଜୁନଙ୍କୁ ଯେଉଁ ପରାମର୍ଶ ଦେଇଥିଲେ, ତହିଁରେ ତାଙ୍କର ପରମ ଶାସ୍ତ୍ରଜ୍ଞତା, ନୀତିଜ୍ଞତା ଅଭ୍ରାନ୍ତବୁଦ୍ଧି ଏବଂ ସର୍ବପକ୍ଷର ମାନସମ୍ଭ୍ରମ ରକ୍ଷାର ଅଭିପ୍ରାୟ ଓ ହିତେଚ୍ଛାହିଁ ଦେଖା ଯାଏ ।

କେହି କେହି କହିପାରନ୍ତି, ଏଠାରେ ମନୁଙ୍କ ଦୋହାଇ ଦେଲେ ଚଳିବ ନାହିଁ । ମହାଭାରତର ଯୁଦ୍ଧ ସମୟରେ ମନୁସଂହିତା ଥିଲା ଏହାର ପ୍ରମାଣ କଣ ? କଥାଟା ନାଯ୍ୟ ଠିକ୍, ସେତେ ପ୍ରାଚୀନ କାଳରେ ମନୁସଂହିତା ସଙ୍କଳିତ ହୋଇଥିଲା କି ନାହିଁ , ସେ ବିଷୟରେ ବାଦ ପ୍ରତିବାଦ ହୋଇ ପାରେ । ତେବେ ମନୁସଂହିତା ପୂର୍ବପ୍ରଚଳିତ ରୀତି ନୀତିର ସଙ୍କଳନ ମାତ୍ର , ଏହା ପଣ୍ଡିତ ମାନଙ୍କ ମତ । ଯଦି ତାହାହୁଏ ତେବେ ଯୁଧିଷ୍ଠିରଙ୍କ ରାଜତ୍ୱକାଳରେ ସେହିରୂପ ବିବାହପଦ୍ଧତି ପ୍ରଚଳିତ ଥିଲା, ଏହା ବିବେଚନା କରାଯାଇ ପାରେ । ନ ପାରୁ-ମହାଭାରତରେଇ ଏ ବିଷୟରେ କଣ ଅଛି ତାହା ଦେଖା ଯାଉ । ଏହି ସୁଭଦ୍ରା ହରଣ-ପର୍ବାଧ୍ୟାୟରେହିଁ ସେ ବିଷୟରେ କି ପ୍ରମାଣ ମିଳେ, ଦେଖା ଯାଉ । ବେଶି ଖୋଜିବାକୁ ହେବ ନାହିଁ । ଆମେ ପାଠକମାନଙ୍କ ନିକଟରେ ଯେଉଁ ଉତ୍ତର

ଦେଇଅଛୁ, କୃଷ୍ଣ ନିଜେମଧ୍ୟ ସେହି ଉତ୍ତର ବଳଦେବଙ୍କୁଦେଇଥିଲେ । ଅର୍ଜୁନ ସୁଭଦ୍ରାଙ୍କୁ ହରଣକରି ନେଇ ଯାଇଛନ୍ତି, ଶୁଣି ଯାଦବମାନେ କ୍ରୁଦ୍ଧ ହୋଇ ରଣସଜ୍ଜା କରୁଥିଲେ । ବଳଦେବ କହିଲେ, ଗଣ୍ଡଗୋଳ କରିବା ଆଗେ,କୃଷ୍ଣ କଣ କହିଛନ୍ତି ଶୁଣାଯାଉ । ସେ ଚୁପ କରି ଅଛନ୍ତି । ସେତେବେଳେ ବଳଦେବ କୃଷ୍ଣଙ୍କୁ ସମ୍ବୋଧନ କରି ଅର୍ଜୁନ ତାଙ୍କ ବଂଶର ଅପମାନ କରିଅଛି ବୋଲି ରାଗ ପ୍ରକାଶ କଲେ, ଏବଂ କୃଷ୍ଣଙ୍କ ଅଭିପ୍ରାୟ କଣ,ପଚାରିଲେ । କୃଷ୍ଣ ଉତ୍ତର କଲେ "ଅର୍ଜୁନ ଆମ କୁଳର ଅବମାନନା କରି ନାହାନ୍ତି, ବରଂ ସମଧିକ ସମ୍ମାନ ରକ୍ଷାହିଁ କରିଛନ୍ତି । ସେ ତୁମ୍ଭମାନଙ୍କୁ ଅର୍ଥଲୁବ୍ଧ ମନେ କରନ୍ତି ନାହିଁ ବୋଲି ଅର୍ଥଦ୍ୱାରା ସୁଭଦ୍ରାଙ୍କୁ ଗ୍ରହଣ କରିବାକୁ ଚେଷ୍ଟା କରି ନାହାନ୍ତି ! ସ୍ୱୟଂମ୍ବରରେ କନ୍ୟା ଲାଭ କରିବା ଅତୀବ ଦୁର୍ଲଭ ବ୍ୟାପାର, ଏଥିପାଇଁ ସେଥିରେ ସମ୍ମତ ହୋଇ ନାହାନ୍ତି, ଏବଂ ପିତାମାତାର ଅନୁମତି ନେଇ ପ୍ରଦତ୍ତକନ୍ୟାର ପାଣିଗ୍ରହଣ କରିବା ତେଜସ୍ୱୀ କ୍ଷତ୍ରିୟ ପକ୍ଷରେ ପ୍ରଶଂସନୀୟ ନୁହେଁ । ଅତଏବ ମୋର ନିଶ୍ଚୟ ବୋଧ ହେଉଅଛି, କୁନ୍ତୀପୁତ୍ର ଧନଞ୍ଜୟ ଉକ୍ତ ଦୋଷ ସମସ୍ତ ପର୍ଯ୍ୟାଲୋଚନା କରି ବଳପୂର୍ବକ ସୁଭଦ୍ରାଙ୍କୁ ହରଣ କରିଛନ୍ତି । ଏହି ସମ୍ବନ୍ଧ ଆମର କୁଳୋଚିତ ହୋଇଅଛି, ଏବଂ କୁଳଶୀଳ ବିଦ୍ୟା ଓ ବୁଦ୍ଧିସମ୍ପନ୍ନ ପାର୍ଥ ବଳପୂର୍ବକ ହରଣ କରିଛନ୍ତି ବୋଲି ସୁଭଦ୍ରା ମଧ୍ୟ ଯଶସ୍ୱିନୀ ହେବେ ସନ୍ଦେହ ନାହିଁ ।

ଏଠାରେ କୃଷ୍ଣ କ୍ଷତ୍ରିୟର ଋରିପ୍ରକାର ବିବାହର କଥା କହିଛନ୍ତି :—

୧ । ଅର୍ଥ (ବାଶୁଳ୍କ) ଦେଇ ଯେଉଁ ବିବାହ କରାଯାଏ (ଆସୁର)
୨ । ସ୍ୱୟମ୍ବର ।

୩ । ପିତା ମାତା କର୍ତ୍ତୃକ ପ୍ରଦତ୍ତ କନ୍ୟାର ସହିତ ବିବାହ (ପ୍ରାଜାପତ୍ୟ) ।

୪ । ବଳପୂର୍ବକ ହରଣ (ରାକ୍ଷସ) ।

ଏଥି ମଧ୍ୟରୁ ପ୍ରଥମଟିରେ କନ୍ୟାକୁଳର ଅକୀର୍ତ୍ତି ଓ ଅଯଶ, ଏହା ସର୍ବବାଦିସମ୍ମତ । ଦ୍ୱିତୀୟର ଫଳ ଅନିଶ୍ଚିତ । ତୃତୀୟରେ ବରର ଅଗୌରବ । ଏଣୁ ଚତୁର୍ଥହିଁ ଏଠାରେ ଏକମାତ୍ର ବିହିତ ବିବାହ । ଏହା କୃଷ୍ଣୋକ୍ତିରେହିଁ ପ୍ରକାଶ ଅଛି । *

ଭରସା କରେ, ଏପରି ନିର୍ବୋଧ କେହି ନାହାନ୍ତି, ଯିଏ ସିଦ୍ଧାନ୍ତ କରନ୍ତି ଯେ, ମୁଁ ରାକ୍ଷସ ବିବାହର ସମର୍ଥନ କରୁଅଛି । ରାକ୍ଷସ ବିବାହ ଅତି ନିନ୍ଦନୀୟ, ସେ କଥା କହି ସ୍ଥାନ ନଷ୍ଟ କରିବା ନିଷ୍ପ୍ରୟୋଜନ । ତେବେ ସେ ସମୟରେ ଯେ କ୍ଷତ୍ରିୟମାନଙ୍କ ମଧ୍ୟରେ ଏହା ପ୍ରଶଂସିତ ଥିଲା, କୃଷ୍ଣ ସେଥିପାଇଁ ଦାୟୀ ନୁହନ୍ତି । ଆମ୍ଭମାନଙ୍କ ମଧ୍ୟରେ ଅନେକଙ୍କ ବିଶ୍ୱାସ ଯେ, "ରିଫର୍ମରହିଁ, (Reformer ସଂସ୍କାରକ) ଆଦର୍ଶ ଅନୁଷ୍ୟ, ଏବଂ କୃଷ୍ଣ ଯଦି ଆଦର୍ଶ

---

* ମହାଭାରତର ଅନୁଶାସନ ପର୍ବରେ ଯେଉଁ ବିବାହତତ୍ତ୍ୱ ଅଛି, ତାହାର କୌଣସି ଉଲ୍ଲେଖ ଆମେ କଲୁ ନାହିଁ, କାରଣ, ତାହା ପ୍ରକ୍ଷିପ୍ତ । ସେଥିରେ ରାକ୍ଷସ ବିବାହ ଭୀଷ୍ମଙ୍କ କର୍ତ୍ତୃକ ନିନ୍ଦିତ ଓ ନିଷିଦ୍ଧ ହୋଇଅଛି । କିନ୍ତୁ ଭୀଷ୍ମ ସ୍ୱୟଂ କର୍ତ୍ତବ୍ୟାକର୍ତ୍ତବ୍ୟ ବିବେଚନା ସ୍ଥିର କରି, କାଶୀରାଜାଙ୍କର ତିନୋଟି କନ୍ୟା ହରଣ କରି ଆଣିଥିଲେ । ସୁତରାଂ ଭୀଷ୍ମଙ୍କର ରାକ୍ଷସ ବିବାହକୁ ନିନ୍ଦିତ ଓ ନିଷିଦ୍ଧ କହିବା ସମ୍ଭବ ନୁହେଁ । ଭୀଷ୍ମଙ୍କ ଚରିତ୍ର ଏହି ଯେ, ଯାହା ନିନ୍ଦିତ ଓ ନିଷିଦ୍ଧ, ତାହା ସେ ପ୍ରାଣାନ୍ତେ ମଧ୍ୟ କରୁ ନ ଥିଲେ । ଯେଉଁ କବି ତାଙ୍କ ଚରିତ୍ର ସୃଷ୍ଟି କରିଛନ୍ତି, ସେ କବି କଦାପି ତାଙ୍କ ମୁହଁ ଦେଇ ଏପରି କଥା ବାହାର କରି ନାହାନ୍ତି ।

ମନୁଷ୍ୟ ତେବେ ବଡ଼ଧରଣର ରିଫର୍ମର (Reformer ସଂସ୍କାରକ) ହେବା ତାଙ୍କର ଉଚିତ ଥିଲା, ଏବଂ ଏହି କୁପ୍ରକାର ମ୍ରଶ୍ରୟ ନ ଦେଇ ଦମନ କରି ଉଚିତ ଥିଲା । କିନ୍ତୁ ଆମ୍ଭେମାନେ ସେପରି ଡିଙ୍ଗକୁ ଆଦର୍ଶ ମନୁଷ୍ୟର ଗୁଣ ମଧ୍ୟରେ ଗଣନା କରୁନାହୁଁ ସୁତରାଂ ଏ କଥାର କୌଣସି ଉତ୍ତର ଦେବା ଆବଶ୍ୟକ ବିବେଚନା କରୁନାହୁଁ ।

ଆମ୍ଭେମାନେ କହି ଅଛୁଁ ଯେ, ବଳପୂର୍ବକ ହରଣ କରି ଯେଉଁ ବିବାହ, ତାହା ତିନି କାରଣରୁ ନିନ୍ଦନୀୟ ; (୧) କନ୍ୟାର ପ୍ରତି ଅତ୍ୟାଚାର, (୨) ତାର ପିତୃକୁଳ ପ୍ରତି ଅତ୍ୟାଚାର, (୩) ସମାଜ ପ୍ରତି ଅତ୍ୟାଚାର । କନ୍ୟା ପ୍ରତି ଯେ କୌଣସି ଅତ୍ୟାଚାର ହୋଇ ନାହିଁ, ବରଂ ତାର ପରମ ମଙ୍ଗଳହିଁ ସାଧିତ ହୋଇଥିଲା, ତାହା ଦେଖାଇ ଅଛୁ । ବର୍ତ୍ତମାନ ତାର ପିତୃକୁଳ ପ୍ରତି କୌଣସି ଅତ୍ୟାଚାର ହୋଇ ଥିଲା କି ନାହିଁ, ଦେଖା ଯାଉ ! କିନ୍ତୁ ଆଉ ସ୍ଥାନ ନାହିଁ, ସଂକ୍ଷେପରେ କଥା ଶେଷ କରିବାକୁ ହେବ । ଯାହା କହି ଅଛୁ, ସେଥିରେ ସବୁକଥା ପ୍ରାୟ ଶେଷ ହୋଇ ଆସିଅଛୁ ।

କନ୍ୟା ହରଣରେ ତତ୍‌ପିତୃକୁଳ ଉପରେ ଦୁଇ କାରଣରୁ ଅତ୍ୟାଚାର ଘଟେ । (୧) ତାଙ୍କ କନ୍ୟା ଅପାତ୍ର ବା ଅନଭିପ୍ରେତ ପାତ୍ରର ହସ୍ତଗତ ହୁଏ । କିନ୍ତୁ ଏଠାରେ ତାହା ଘଟି ନାହିଁ । ଅର୍ଜ୍ଜୁନ ଅପାତ୍ର ନୁହନ୍ତି, ଅନଭିପ୍ରେତ ପାତ୍ର ମଧ୍ୟ ନୁହନ୍ତି । ( ୨ ) ସେମାନଙ୍କର ନିଜର ଅପମାନ । କିନ୍ତୁ ପୂର୍ବେ ଯାହା ଉଦ୍ଧୃତ କରିଅଛୁ, ତାହା ଦ୍ୱାରି ପ୍ରମାଣୀକୃତ ହୋଇଅଛୁ ଯେ, ଏଥିରେ ଯାଦବମାନେ ଅପମାନିତ ହୋଇଛନ୍ତି ବୋଲି ବିବେଚନା କରିବାର କୌଣସି କାରଣ ନଥିଲା । ଏହା ଯାଦବ ଶ୍ରେଷ୍ଠ କୃଷ୍ଣହିଁ ପ୍ରତିପନ୍ନ କରିଛନ୍ତି, ଏବଂ ତାଙ୍କର ସେ କଥା ନ୍ୟାୟସଙ୍ଗତ ବିବେଚନା କରି ଅପର ଯାଦବମାନେ ଅର୍ଜ୍ଜୁନଙ୍କୁ ଫେରାଇ ଆଣି ସମାରୋହ ପୂର୍ବକ

ତାଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ କରିଥିଲେ । ସୁତରାଂ ସେମାନଙ୍କ ପ୍ରତି ଅତ୍ୟାଚାର ହୋଇଥିଲା, ଏହା କହିବାର ଆମର ଆଜ ଆବଶ୍ୟକତା ନାହିଁ ।

(୩) ସମାଜ ପ୍ରତି ଅତ୍ୟାଚାର । ଯେଉଁ ବଳକୁ ସମାଜ ଅବୈଧ ବୋଲି ବିବେଚନା କରେ, ସମାଜ ମଧ୍ୟରେ କାହାରି ପ୍ରତି ସେହି ବଳ ପ୍ରଯୁକ୍ତ ହେଲେହିଁ ସମାଜ ପ୍ରତି ଅତ୍ୟାଚାର ହେଲା । କିନ୍ତୁ ଯେତେବେଳେ ତତ୍‌କାଳିକ ଆର୍ଯ୍ୟସମାଜ ଋଷି ସ୍ମୃକୃତ ଏହି ଭଳି ପ୍ରୟୋଗକୁ ପ୍ରଶସ୍ତ ଓ ବିହିତ କହୁଥିଲେ, ସେତେ-ବେଳେ ସମାଜର ଆଜିକହିବାର ଅଧିକାର ନାହିଁ ଯେ, ଆମ ପ୍ରତି ଅତ୍ୟାଚାର ହେଲା । ଯାହା ସମାଜ ସମ୍ମତ, ତଦ୍ୱାରା ସମାଜ ଉପରେ କୌଣସି ଅତ୍ୟାଚାର ହୋଇ ନାହିଁ ।

ଆମ୍ଭମାନଙ୍କର ଏହି ତତ୍ତ୍ୱ ଏବେ ସବିସ୍ତାରେ ଲେଖିବାର କାରଣ ଅଛି । ସୁଭଦ୍ରାହରଣ ନିମିତ୍ତ କୃଷ୍ଣଦ୍ୱେଷୀ ମାନେ କୃଷ୍ଣଙ୍କୁ କେବେହେଁ ଗାଳି ଦେଇ ନାହାନ୍ତି । ସେଥି ପାଇଁ କୃଷ୍ଣପକ୍ଷ ସମର୍ଥନର କୌଣସି ଆବଶ୍ୟକତା ଥିଲା ନାହିଁ । **ମୋର** ଦେଖାଇବାର ଉଦ୍ଦେଶ୍ୟ ଏହି ଯେ, ବିଳାତରୁ ଯେଉଁ ଗୋଟି **ମାପକାଠିଟି ଆମେ** ଧାର କରି ଆଣିଅଛୁଁ, ସେ ମାପକାଠିରେ ମାପିଲେ, ଆମର ପୂର୍ବ ପୁରୁଷାଗତ ଅତୁଳ ସମ୍ପତ୍ତି ଅଧିକାଂଶ ବାଜେଆପ୍ତ ହୋଇଯିବ । ଆମ୍ଭମାନଙ୍କର ସେହି ଏକବ୍‌ବରି ଗଜ ବାହାର କରିବା ଆବଶ୍ୟକ ।

## ଚତୁର୍ଥ ପରିଚ୍ଛେଦ

### ଖାଣ୍ଡବ ଦାହ

ସୁଭଦ୍ରାହରଣ ପରେ ଖାଣ୍ଡବ ଦାହରେ କୃଷ୍ଣଙ୍କ ଦର୍ଶନ ପାଉଁ । ପାଣ୍ଡବମାନେ ଖାଣ୍ଡବ ପ୍ରସ୍ଥରେ ବାସ କରୁଥିଲେ । ତାଙ୍କ ରାଜ-

ଧାମ ନିକଟରେ ଖାଣ୍ଡବ ନାମରେ ଏକ ବୃହତ୍ ଅରଣ୍ୟ ଥିଲା। କୃଷ୍ଣାର୍ଜୁନ ତାହା ଦଗ୍ଧ କରନ୍ତି। ତାହାର ବୃତ୍ତାନ୍ତଟା ଏହି। ଗଳ୍ପଟା ଅଦ୍ଭୁତ ରକମର। ପୂର୍ବକାଳରେ ଶ୍ୱେତକି ନାମରେ ଜଣେ ରାଜା ଥିଲେ। ସେ ବଡ଼ ଯାଜ୍ଞିକ ଥିଲେ। ଚିରକାଳ କେବଳ ଯଜ୍ଞ କରୁଥିଲେ। ତାଙ୍କ ଯଜ୍ଞ କରୁ କରୁ ଋତ୍ୱିକ୍ ବ୍ରାହ୍ମଣମାନେ ହୀଇରାଣ ହୋଇଗଲେ। ସେମାନେ ଆଉ ପାରିଲେ ନାହିଁ-ସଫା ଜବାବ ଦେଇ ବାହାରିଗଲେ। ରାଜା ସେମାନଙ୍କୁ ପଟା ପଟି କଲେ ସେମାନେ କହିଲେ, "ଏତରି କାମ ଆମ ଦ୍ୱାରା ହୋଇ ପାରିବ ନାହିଁ ତୁମେ ରୁଦ୍ରଙ୍କ ନିକଟକୁ ଯାଅ।" ରାଜା ରୁଦ୍ରଙ୍କ ନିକଟକୁ ଗଲେ ରୁଦ୍ର କହିଲେ "ଆମେ ଯଜ୍ଞ କରୁନାହିଁ—ଏ କାମ ବ୍ରାହ୍ମଣର। ଦୁର୍ବାସା ନାମରେ ଜଣେ ବ୍ରାହ୍ମଣ ଅଛନ୍ତି, ସେ ମୋର ଅଂଶ-ମୁଁ ତାଙ୍କୁ କହି ଦେଉଅଛି।" ରୁଦ୍ରଙ୍କ ଅନୁରୋଧରେ, ଦୁର୍ବାସା ରାଜାଙ୍କ ଯଜ୍ଞ କଲେ। ଘୋରତର ଯଜ୍ଞ,—ବାରବର୍ଷ ଧରି କ୍ରମାଗତ ଅଗ୍ନିରେ ଘୃତଧାରା। ଘିଅ ଖାଇ ଅଗ୍ନିଙ୍କ Dyspepsia (ଅଜୀର୍ଣ୍ଣ ରୋଗ) ଉପସ୍ଥିତ। ସେ ବ୍ରହ୍ମାଙ୍କ ନିକଟକୁ ଯାଇ କହିଲେ "ଠାକୁରେ! ବଡ଼ ବିପଦ ଖାଇ ଖାଇ ଶରୀରରେ ବଡ଼ ଗ୍ଲାନି ଉପସ୍ଥିତ ହୋଇଅଛି, ବର୍ତ୍ତମାନ ଉପାୟ କଣ?" ବ୍ରହ୍ମା ଯେଉଁ ପ୍ରକାର ଡ଼ାକ୍ତରି କଲେ, ତାହା Similia Similibus Curanter (ବିଷେ ବିଷକ୍ଷୟ) ଧରଣର। ସେ କହିଲେ "ଆଚ୍ଛା, ଖାଇ ଯଦି ପୀଡ଼ା ହୋଇ ଥାଏ, ତେବେ ଆହୁରି ଖାଅ। ଖାଣ୍ଡବ ବନଟାକୁ ଖାଇ ପକାଅ—ପୀଡ଼ା ଆରାମ ହେବ।" ଶୁଣି ଅଗ୍ନି ଖାଣ୍ଡବ ବନ ଖାଇବାକୁ ଗଲେ। ହୁରିଆଡ଼େ ହୁହୁ କରି ଜଳି ଉଠିଲେ। କିନ୍ତୁ ବନରେ ଅନେକ ଜୀବ ଜନ୍ତୁ ବାସ କରୁଥିଲେ—ହାତୀମାନେ ଶୁଣ୍ଢରେ ପାଣି ଆଣିଲେ। ସାପମାନେ

ଫଣାରେ କରି ପାଣି ଆଣିଲେ, ଏହି ପ୍ରକାରେ ବନବାସୀ ପଶୁ ପକ୍ଷୀମାନେ ମିଳି ନିଆଁ ନିଭାଇ ଦେଉଥିଲେ । ଅଗ୍ନି ସାତଥର ଜଳାଇଲେ ସାତଥର ସେମାନେ ନିଭାଇଲେ । ଅଗ୍ନି ସେତେବେଳେ ବ୍ରାହ୍ମଣ ରୂପଧରି କୃଷ୍ଣାର୍ଜ୍ଜୁନଙ୍କ ସମ୍ମୁଖରେ ଆସି ଉପସ୍ଥିତ ହେଲେ । କହିଲେ "ମୁଁ ବଡ ପେଟୁ, ବଡ ବେଶୀ ଖାଏଁ, ତୁମେ ମତେ ଖୁଆଇ ପାରିବ ?" ସେମାନେ ସ୍ୱୀକୃତ ହେଲେ । ତତ୍ପରେ ସେ ଆତ୍ମପରିଚୟ ଦେଇ ଛୋଟ ରକମର ପ୍ରାର୍ଥନାଟି ଜଣାଇଲେ "ଖାଣ୍ଡବ ବନଟି ଖାଇବି । ଖାଇବାକୁ ଯାଇଥିଲି, କିନ୍ତୁ ଇନ୍ଦ୍ର, ଆସି ବୃଷ୍ଟି କରି ମତେ ନିଭାଇ ଦେଲେ—ଖାଇବାକୁ ଦେଉ ନାହାନ୍ତି !"

ତେଣୁ କୃଷ୍ଣାର୍ଜ୍ଜୁନ ଅସ୍ତ୍ରଧରି ବନ ପୋଡ଼ାଇବାକୁ ଗଲେ । ଇନ୍ଦ୍ର ଆସି ବୃଷ୍ଟି କରିବାକୁ ଲାଗିଲେ, ଅର୍ଜ୍ଜୁନଙ୍କ ବାଣ ମାଡରେ ବୃଷ୍ଟି ବନ୍ଦ ହୋଇଗଲା । ସେଇଟା କି ପ୍ରକାରେ ହୁଏ, ଆମେ କଳିକାଳର ଲୋକ ତାହା ବୁଝି ପାରିବା ନାହିଁ । ପାରିଲେ, ଅତିବୃଷ୍ଟିରୁ ଫସଲ ରକ୍ଷା କରିବାର ଗୋଟାଏ ଉପାୟ କରି ଯାଇ ପାରନ୍ତା । ଯାହା ହେଉ-ଇନ୍ଦ୍ର ରାଗିଯାଇ ଯୁଦ୍ଧ ଆରମ୍ଭ କଲେ । ସବୁ ଦେବତା ଅସ୍ତ୍ର ନେଇ ତାଙ୍କୁ ସହାୟ ହେଲେ । କିନ୍ତୁ ଅର୍ଜ୍ଜୁନଙ୍କୁ ପାରି ଉଠିବାର ନୁ ନାହିଁ । ଇନ୍ଦ୍ର ପାହାଡ଼ ଫୋପାଡ଼ି ମାରିଲେ-ଅର୍ଜ୍ଜୁନ ବାଣମାଡ଼ରେ ପାହାଡ଼ କାଟି ପକାଇଲେ । (ବିଦ୍ୟାଟା ବର୍ତ୍ତମାନ କାଳରେ ଜଣାଥିଲେ ରେଲ୍‌ୱେ ଟନେଲ୍ କରିବାର ବଡ଼ ସୁବିଧା ହୁଅନ୍ତା ।) ଶେଷରେ ଇନ୍ଦ୍ର ବଜ୍ରପ୍ରହାର କରିବାକୁ ଉଦ୍ୟତ-ସେତେବେଳେ ଦୈବବାଣୀ ହେଲା

ଯେ ଏମାନେ ନରନାରାୟଣ ପ୍ରାଚୀନ ଋଷି । * ଦୈବବାଣୀଟା ବଡ଼ ସୁନ୍ଦର, କିଏ କହିଲା, ତାହାର ଠିକଣା ନାହିଁ—କିନ୍ତୁ କହିବା କଥାଟା ପୁରାଣ କହୁଅଛନ୍ତି । ଦୈବବାଣୀ ଶୁଣି ଦେବତାମାନେ ପ୍ରସ୍ଥାନ କଲେ । କୃଷ୍ଣାର୍ଜ୍ଜୁନ ସ୍ୱଚ୍ଛନ୍ଦରେ ବନ ପୋଡ଼ାଇବାକୁ ଲାଗିଲେ ନିଆଁ ଭୟରେ ପଶୁପକ୍ଷୀ ପଳାଉଥିଲେ, ସମସ୍ତଙ୍କୁ ସେମାନେ ମାରି ପକାଇଲେ । ସେମାନଙ୍କ ମେଦ ମାଂସ ଖାଇ ଅଗ୍ନିଙ୍କର ମନ୍ଦାଗ୍ନି ଭଲ ହେଲା—ଶେଷରେ ସନ୍ତୁଷ୍ଟ ହେଲା—ସେ କୃଷ୍ଣାର୍ଜ୍ଜୁନଙ୍କୁ ବର ଦେଲେ । ପରାଭୂତ ଦେବତା-ମାନେ ଆସି ମଧ୍ୟ ବର ଦେଲେ । ସବୁ ମତ ଖୁସି ହୋଇ ଘରକୁ ଗଲେ ।

ଏପରି ଆଇମା କାହାଣୀ ଉପରେ ବୁନିୟାଦ ସ୍ଥାପନ କରି ଐତିହାସିକ ସମାଲୋଚନାରେ ପ୍ରବୃତ୍ତ ହେଲେ କେବଳ ହାସ୍ୟା-ସ୍ପଦ ହେବାକୁ ହୁଏ—ଅନ୍ୟ ଲାଭ ନାହିଁ । ଆଉ ଆମର ଯାହା ସମାଲୋଚ୍ୟ ଅର୍ଥାତ୍ କୃଷ୍ଣଚରିତ—ତାହାର ଭଲ ମନ୍ଦ କୌଣସି କଥା ଏଥିରେ ନାହିଁ । ଯଦି ଏହାର କୌଣସି ଐତିହାସିକ ତାତ୍ପର୍ଯ୍ୟ ଥାଏ, ତେବେ ସେ ଠିକକ ଏହି ଯେ, ପାଣ୍ଡବମାନଙ୍କ ରାଜଧାନୀ ନିକଟରେ ଗୋଟାଏ ବଡ଼ ବନ ଥିଲା, ସେଠାରେ ଅନେକ ହିଂସ୍ର ପଶୁ ବାସ କରୁଥିଲେ, କୃଷ୍ଣାର୍ଜ୍ଜୁନ ସେଥିରେ ନିଆଁ ଲଗାଇ, ହିଂସ୍ର ପଶୁମାନଙ୍କୁ ବିନଷ୍ଟ କରି ଜଙ୍ଗଲ ଆବାଦ କରିବାର ଯୋଗ୍ୟ କରିଥିଲେ । କୃଷ୍ଣାର୍ଜ୍ଜୁନ ଯଦି ତାହା କରିଥିଲେ,

* ପାଠକ ଦେଖିନ୍ତୁ, ଏକ ସ୍ଥାନରେ କୃଷ୍ଣ ବିଷ୍ଣୁଙ୍କ କେଶ; ଏଠାରେ ପ୍ରାଚୀନ ଋଷି, ପୁଣି ଦେଖିବା, ସେ ବିଷ୍ଣୁଙ୍କ ଅବତାର । ଏ କଥାର ସାମଞ୍ଜସ୍ୟଚେଷ୍ଟାର ବା ଖଣ୍ଡନର ଆମର କୌଣସି ପ୍ରୟୋଜନ ନାହିଁ । କୃଷ୍ଣଚରିତହିଁ ଆମର ସମାଲୋଚ୍ୟ ।

ତେବେ ସେଥିରେ ଐତିହାସିକ କୀର୍ତ୍ତି ବା ଅକୀର୍ତ୍ତି କିଛି ଦେଖା ଯାଏ ନାହିଁ । ସୁନ୍ଦରବନର ଆବାଦକାରୀମାନେ ନିତ୍ୟ ତାହା କରି ଥାଆନ୍ତି ।

ଆମ୍ଭେମାନେ ସ୍ୱୀକାର କରୁ ଯେ, ଏହି ବ୍ୟାଖ୍ୟାଟା ନିତାନ୍ତ ବାଜେ ଧରଣର ହେଲା । କିନ୍ତୁ ଆମେ ଯେ ଏପରି ଗୋଟାଏ ତାତ୍ପର୍ଯ୍ୟ ସୃଷ୍ଟି କରିବାକୁ ବାଧ୍ୟ ହେଲୁ, ତାହାର କାରଣ ଅଛି । ଖାଣ୍ଡବଦାହନ ଅଧିକାଂଶ ତଥ୍ୟହିଁ ଅବାନ୍ତରଗତ ହୋଇ ପାରେ, କିନ୍ତୁ ସ୍ଥୂଳ ଘଟଣାର କୌଣସି ସୂଚନା ଯେ ଆଦିମ ମହାଭାରତରେ ନାହିଁ, ଏ କଥା ଆମ୍ଭେ କହିବାକୁ ପ୍ରସ୍ତୁତ ନୋହୁଁ । ପର୍ବସଂଗ୍ରହାଧ୍ୟାୟ ଏବଂ ଅନୁକ୍ରମଣିକାଧ୍ୟାୟରେ ଏହାର ପ୍ରସଙ୍ଗ ଅଛି । ଏହି ଖାଣ୍ଡବଦାହରୁ ସଭାପର୍ବର ଉତ୍ପତ୍ତି । ଏହି ବନମଧ୍ୟରେ ମୟଦାନବ ବାସ କରୁଥିଲା । ସେ ମଧ୍ୟ ପୋଡ଼ି ମରିବାର ଉପକ୍ରମ ହୋଇଥିଲା । ସେ ଅର୍ଜ୍ଜୁନଙ୍କ ନିକଟରେ ପ୍ରାଣଭିକ୍ଷା ମାଗିଥିଲା; ଅର୍ଜ୍ଜୁନ ମଧ୍ୟ ଶରଣାଗତକୁ ରକ୍ଷା କରିଥିଲେ । ଏହି ଉପକାରର ପ୍ରତ୍ୟୁପକାର ନିମିତ୍ତ ମୟ ଦାନବ ପାଣ୍ଡବମାନଙ୍କର ଅତ୍ୟୁତ୍କୃଷ୍ଟ ସଭା ନିର୍ମାଣ କରି ଦେଇଥିଲେ । ସେହି ସଭା ନେଇ ସଭାପର୍ବର କଥା ।

ପୁଣି ସଭାପର୍ବ ଅଷ୍ଟାଦଶ ପର୍ବର ଏକପର୍ବ । ମହାଭାରତର ଯୁଦ୍ଧର ବୀଜ ଏହିଠାରେ । ଏହା ଏକବାରେ ବାଦ ଦେଇ ହେବ ନାହିଁ । ଯଦି ତାହା ନ ହୁଏ, ତେବେ ଏହା ମଧ୍ୟରେ କେତେ ପରିମାଣରେ ଐତିହାସିକ ତଥ୍ୟ ନିହିତ ଥାଇପାରେ, ତାହା ବିଚାର କରି ଦେଖିବା ଉଚିତ । ସଭା ଏବଂ ତଦୁପଲକ୍ଷେ ରାଜସୂୟ ଯଜ୍ଞକୁ ମୌଳିକ ଓ ଐତିହାସିକ ବୋଲି ଗ୍ରହଣ କରିବାରେ କୌଣସି ଆପତ୍ତି ଦେଖା ଯାଏ ନାହିଁ । ଯଦି ସଭା ଐତିହାସିକ

ହେଲ, ତେବେ ତାହାର କର୍ମ୍ମକର୍ତ୍ତା ଜଣେ ଅବଶ୍ୟ ଥିବେ । ମନେ କର, ସେହି କାରିଗର ବା ଇଞ୍ଜିନିୟରର ନାମ ମୟ । ସେ ହୁଏତ ଅନାର୍ଯ୍ୟବଂଶୀୟ ହେତୁ ତାକୁ ମୟ ଦାନବ କହୁଥିଲେ ଏପରି ହୋଇପାରେ ଯେ, ସେ ବିପନ୍ନ ହୋଇ ଅର୍ଜ୍ଜୁନଙ୍କ ସାହାଯ୍ୟରେ ଜୀବନ ଲାଭ କରିଥିଲା, ଏବଂ କୃତଜ୍ଞତାବଶତଃ ଏହି ଇଞ୍ଜିନିୟରିଂ କାମଟି କରି ଦେଇଥିଲା । ଯଦି ଏହା ପ୍ରକୃତ ହୁଏ, ତେବେ ସେ ଯେ କିରୂପ ବିପନ୍ନ ହୋଇ ଅର୍ଜ୍ଜୁନଙ୍କଠାରୁ ଉପକାର ପ୍ରାପ୍ତ ହୋଇଥିଲା, ସେ କଥା କେବଳ ଖାଣ୍ଡବଦାହରେହିଁ ପାଇଥାଉଁ । ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ଏ ସବୁ କେବଳ ଅନ୍ଧାରରେ ଟେକା ମାରିବା । ତେବେ ଅନେକ ପ୍ରାଚୀନ ଐତିହାସିକ ତତ୍ତ୍ୱ ମଧ୍ୟ ଏହିପରି ଅନ୍ଧକାରରେ ବାଡ଼ି ବୁଲାଇବା ବ୍ୟତୀତ ଅନ୍ୟକିଛି ନୁହେଁ ।

ହୁଏତ, ସମୁଦାୟ ମୟଦାନବର କଥା କବିଙ୍କ ସୃଷ୍ଟି । ଯେ ଯାହା ହେଉ, ଏହି ଉପଲକ୍ଷରେ କବି ଯେଉଁ ଭାବରେ କୃଷ୍ଣାର୍ଜ୍ଜୁନଙ୍କ ଚରିତ୍ର ସଂସ୍ଥାପିତ କରିଛନ୍ତି, ତାହା ବଡ଼ ମନୋହର । ତାହା ନ ଲେଖି ରହି ହେଉ ନାହିଁ । ମୟ ଦାନବ ପ୍ରାଣ ପାଇ ଅର୍ଜ୍ଜୁନଙ୍କୁ କହିଲେ "ଆପଣ ମତେ ପରିତ୍ରାଣ କରିଛନ୍ତି, ଅତଏବ ଆଜ୍ଞା କରନ୍ତୁ, ଆପଣଙ୍କର କି ପ୍ରତ୍ୟୁପକାର କରିବି ?" ଅର୍ଜ୍ଜୁନ କିଛି ପ୍ରତ୍ୟୁପକାର ଚାହିଁଲେ ନାହିଁ, କେବଳ ପ୍ରୀତି ଭିକ୍ଷା କଲେ । କିନ୍ତୁ ମୟ ଦାନବ ଛାଡ଼ିଲେ ନାହିଁ; କିଛି କାମ ନ କରି ଯିବେନାହିଁ । ତେଣୁ ଅର୍ଜ୍ଜୁନ ତାଙ୍କୁ କହିଲେ,—

"ହେ କୃତଜ୍ଞ ! ତୁମେ ଆସନ୍ନମୃତ୍ୟୁରୁ ରକ୍ଷା ପାଇଅଛ ବୋଲି ମୋର ପ୍ରତ୍ୟୁପକାର କରିବାକୁ ଇଚ୍ଛା କରୁଅଛ, ଏଥି ନିମିତ୍ତ ତୁମ ଦ୍ୱାରା କୌଣସି କର୍ମ୍ମ ସମ୍ପନ୍ନ କରାଇ ନେବାକୁ ଇଚ୍ଛା

ହେଉନାହିଁ ।” ଏହାହିଁ ନିଷ୍କାମ ଧର୍ମ, ଖ୍ରୀଷ୍ଟାନ ଇଉରୋପରେ ଏହା ନାହିଁ । ବାଇବେଲରେ ଯେଉଁ ଧର୍ମ ଅନୁଜ୍ଞାତ ହୋଇଅଛି, ସ୍ୱର୍ଗ ବା ଈଶ୍ୱର—ପ୍ରୀତି ତାହାର କାମ୍ୟ । ଆମ୍ଭେମାନେ ଏ ସବୁ ପରିତ୍ୟାଗ କରି ପାଶ୍ଚାତ୍ୟ ଗ୍ରନ୍ଥରୁ ଯେଉଁ ଧର୍ମ ଓ ମତ ଶିକ୍ଷା କରିବାକୁ ଯାଉଁ ଆମ ବିବେଚନାରେ ସେହା ଆମର ଦୁର୍ଭାଗ୍ୟ । ଅର୍ଜ୍ଜୁନବାକ୍ୟର ଅପରାର୍ଦ୍ଧରେ ଏହି ନିଷ୍କାମ ଧର୍ମ ଆହୁରି ସ୍ପଷ୍ଟ ହେଉଅଛି । ମୟ ଯଦି କିଛି କାର୍ଯ୍ୟ କରିପାରିଲେ ମନରେ ସୁଖୀ ହୁଏ, ତେବେ ସେ ସୁଖରୁ ଅର୍ଜ୍ଜୁନ ତାଙ୍କୁ ବଞ୍ଚିତ କରିବାକୁ ଅନିଚ୍ଛୁକ । ଅତଏବ ସେ କହିବାକୁ ଲାଗିଲେ,—

"ତୁମର ଅଭିଳାଷ ବ୍ୟର୍ଥ ହେଉ, ଏହା ମଧ୍ୟ ମୋର ଅଭିପ୍ରେତ ନୁହେଁ । ଅତଏବ ତୁମେ କୃଷ୍ଣଙ୍କର କୌଣସି କର୍ମ କର, ତାହା ହେଲେଇ ମୋର ପ୍ରତ୍ୟୁପକାର କରାହେବ ।”

ଅର୍ଥାତ୍, ତୁମ ଦ୍ୱାରା ଯଦି କୌଣସି କାର୍ଯ୍ୟ ନେବାକୁ ହୁଏ, ତେବେ ତାହା ମଧ୍ୟ ପରର କାର୍ଯ୍ୟ । ନିଜର କାମ ନେବା ହେବ ନାହିଁ ।

ତେଣୁ ମୟ କୃଷ୍ଣଙ୍କୁ ଅନୁରୋଧ କଲେ-କିଛି କାମ କରିବାକୁ ଆଦେଶ କର, "ମୟ ଦାନବକୁଳର ବିଶ୍ୱକର୍ମା"— ବା ଶିଳ୍ପ ଇଞ୍ଜିନିୟର । କୃଷ୍ଣ ମଧ୍ୟ ତାଙ୍କୁ ନିଜର କାର୍ଯ୍ୟ କରିବାକୁ ଆଦେଶ କଲେନାହିଁ । କହିଲେ, "ଯୁଧିଷ୍ଠିରଙ୍କର ଗୋଟିଏ ସଭା ନିର୍ମାଣ କର । ଏପରି ସଭା ଗଢ଼ିବ, ମନୁଷ୍ୟମାନେ ଯେପରି ତାହାର ଅନୁକରଣ କରି ନ ପାରନ୍ତି ।”

ଏହା କୃଷ୍ଣଙ୍କ ନିଜ କାର୍ଯ୍ୟ ନୁହେଁ-ଅଥଚ ନିଜର କାର୍ଯ୍ୟ ମଧ୍ୟ । ଆମ୍ଭେମାନେ ପୂର୍ବେ କହିଅଛୁଁ । କୃଷ୍ଣ ସ୍ୱଜୀବନରେ ଦୁଇଟି କାର୍ଯ୍ୟ ଉଦ୍ଦିଷ୍ଟ କରିଥିଲେ-ଧର୍ମପ୍ରଚାର ଓ ଧର୍ମରାଜ୍ୟ ସଂସ୍ଥାପନ

ଧର୍ମପ୍ରଚାର କଥାଟା ଏତଦର୍ଥେ ବିଶେଷ ଉଠିନାହିଁ । ଏହି ସଭା
ନିର୍ମାଣ ଧର୍ମରାଜ୍ୟ ସଂସ୍ଥାପନର ପ୍ରଥମ ସୂତ୍ର । ଏହିଠାରେହିଁ ତାଙ୍କର
ଏହି ଅଭିସନ୍ଧିର ପ୍ରଥମ ପରିଚୟ ମିଳେ । ଯୁଧିଷ୍ଠିରଙ୍କ ସଭା
ନିର୍ମାଣଠାରୁ ଯେଉଁସବୁ ଘଟନାବଳୀ ଘଟିଲା, ଶେଷରେ ତାହା
ଧର୍ମରାଜ୍ୟସଂସ୍ଥାପନରେ ପରିଣତ ହେଲା । ଧର୍ମରାଜ୍ୟସଂସ୍ଥାପନ,
ଜଗତର କାର୍ଯ୍ୟ; କିନ୍ତୁ ଯେତେବେଳେ ତାହା କୃଷ୍ଣଙ୍କ ଉଦ୍ଦେଶ୍ୟ,
ସେତେବେଳେ ଏହି ସଭା ସଂସ୍ଥାପନ ତାଙ୍କର ନିଜ କାର୍ଯ୍ୟ ।

ଗତ ଅଧ୍ୟାୟରେ ସମାଜସଂସ୍କରଣର କଥାଟା ଉଠିଥିଲା ।
ଆମେ କହିଅଛୁଁ ଯେ, ସେ ସମାଜସଂସ୍କାରକ ବା Social Reformer
ହେବାକୁ ପ୍ରୟାସ ପାଇ ନାହାନ୍ତି । ଦେଶର ନୈତିକ ଏବଂ ରାଜ-
ନୈତିକ ପୁନର୍ଜୀବନ (Mral and political Regenera-
tion), ଧର୍ମପ୍ରଚାର, ଏବଂ ଧର୍ମରାଜ୍ୟ-ସଂସ୍ଥାପନ, ଏହାହିଁ ତାଙ୍କର
ଉଦ୍ଦେଶ୍ୟ । ଏହା ଘଟିଲେ ସମାଜସଂସ୍କାର ଆପେ ହୋଇଥାଏ---
ଏହା ନ ଘଟିଲେ ସମାଜସଂସ୍କାର କୌଣସି ମତେ ଘଟିବ ନାହିଁ ।
ଆଦର୍ଶ ମନୁଷ୍ୟ ତାହା ଜାଣୁଥିଲେ,—ଗଛର ମୂଳର ଯତ୍ନ ନ
କରି କେବଳ ଗୋଟାଏ ଡାଳରେ ପାଣି ଛିଞ୍ଚିଲେ ଫଳ ଧରେ
ନାହିଁ । ଆମ୍ଭେମାନେ ତାହା ଜାଣୁନା—ତେଣୁ ଆମ୍ଭେମାନେ
ସମାଜସଂସ୍କରଣକୁ ଗୋଟାଏ ପୃଥକ୍ ଜିନିଷ ବୋଲି ଧରିନେଇ
ଗଣ୍ଡଗୋଳ ଉପସ୍ଥିତ କରୁ । ଆମ୍ଭମାନଙ୍କର ଖ୍ୟାତି ପ୍ରିୟତାହିଁ
ଏହାର ଗୋଟିଏ କାରଣ । ସମାଜସଂସ୍କାରକ ହୋଇ ଠିଆ
ହେଲେ ହଠାତ୍ ଖ୍ୟାତିଲାଭ କରିଯାଏ—ବିଶେଷ,ସଂସ୍କରଣ ପଦ୍ଧତିଟା
ଯଦି ଇଂରାଜୀଧରଣର ହୁଏ । ଆଉ ଯାର କାମ ନାହିଁ, ହୁଜୁଗ୍
ତାକୁ ବଡ଼ ଭଲ ଲାଗେ । ସମାଜସଂସ୍କରଣ ଆଉ କିଛି ହେଉ
ବା ନ ହେଉ, ଗୋଟାଏ ହୁଜୁଗ ତ ଠିକ୍ । ହୁଜୁଗ୍ ବଡ଼

ଆମୋଦର ଜନକ । ଏହି ସମ୍ପ୍ରଦାୟର ଲୋକମାନଙ୍କୁ ଆମେ ତକ୍ଷୁରୁ, ଧର୍ମର ଉନ୍ନତି ବ୍ୟତୀତ ସମାଜସଂସ୍କାର କାହିଁ ଜୋରରେ ହେବ । ରାଜନୈତିକ ଉନ୍ନତିର ମଧ୍ୟ ମୂଳ ଧର୍ମର ଉନ୍ନତି । ଅତଏବ ସମସ୍ତେ ମିଳି ଧର୍ମର ଉନ୍ନତିରେ ମନଦିଅ । ତାହାହେଲେ ଆଉ ସମାଜସଂସ୍କରଣର ପୃଥକ ଚେଷ୍ଟା କରିବାକୁ ହେବନାହିଁ ତାହା ନକଲେ କଷ୍ଟରେହିଁ ସମାଜସଂସ୍କାର ହେବ ନାହିଁ । ସେହିହେତୁ ଆଦର୍ଶ ମନୁଷ୍ୟ ବେପରୁଆ ସମାଜସଂସ୍କାରକ ହେବାକୁ ଚେଷ୍ଟା କରି ନାହାନ୍ତି ।

## ପଞ୍ଚମ ପରିଚ୍ଛେଦ
## କୃଷ୍ଣଙ୍କ ମାନବିକତା

କୃଷ୍ଣଚରିତର ଏହି ସମାଲୋଚନାରେ ମୁଁ କୃଷ୍ଣଙ୍କର କେବଳ ମାନୁଷୀ ପ୍ରକୃତିରହିଁ ସମାଲୋଚନା କରୁଅଛି । ସେ ଈଶ୍ୱର କି ନୁହନ୍ତି ତାହା ମୁଁ କହୁନାହିଁ । ସେବିଷୟରେ ସମ୍ଭବତ ପାଠକର କୌଣସି ସମ୍ବନ୍ଧ ନାହିଁ, କାରଣ, ମୋର ଯଦି ସେହି ମତ ହୁଏ, ତେବେ ମୁଁ ପାଠକଙ୍କୁ ସେହି ମତ ଗ୍ରହଣ କରିବାକୁ କହୁନାହିଁ । ଗ୍ରହଣ କରିବା ନ କରିବା ପାଠକଙ୍କ ନିଜ ବୁଦ୍ଧି ଓ ରୁଚି ଉପରେ ନିର୍ଭର କରେ, ଅନୁରୋଧ ଚଳେ ନାହିଁ । ସ୍ୱର୍ଗ ଜେଲଖାନା ନୁହେ-ତାହାର ଯେ ଗୋଟିଏ ଛଡ଼ା ଆଉ ଫାଟକ ନାହିଁ—ଏ କଥା ମୁଁ ମନେ କରେ ନାହିଁ । ଧର୍ମ ଗୋଟିଏ ବସ୍ତୁ ସତ୍ୟ, କିନ୍ତୁ ତାହା ନିକଟରେ ପହଞ୍ଚିବାର ଅନେକ ପଥ ଅଛି—କୃଷ୍ଣଭକ୍ତ ଏବଂ ଖ୍ରୀଷ୍ଟିୟାନ ଉଭୟେ ସେଠାରେ ପହଞ୍ଚି ପାରନ୍ତି । * ଅତଏବ

---

* ଧର୍ମର ଅସଂଖ୍ୟ ଦ୍ୱାର । ଯେ କୌଣସି ପ୍ରକାରେ ହେଉ, ଧର୍ମର ଅନୁଷ୍ଠାନ କଲେ ତାହା କଦାପି ନିଷ୍ଫଳ ହୁଏ ନାହିଁ । ମହାଭାରତ, ଶାନ୍ତି ପର୍ବ, ୧୭୪ ଅ ।

କେହି କୃଷ୍ଣଧର୍ମ୍ମ ଗ୍ରହଣ ନ କଲେ, ମୁଁ ତାକୁ ପତିତ ମନେ କରିବ ନାହିଁ, ଏବଂ ଭରସା କରେ ଯେ, କୃଷ୍ଣଦ୍ୱେଷୀ ବା ପ୍ରାଚୀନ ବୈଷ୍ଣବଙ୍କ ଦଳ ମତେ ନରକଗାମୀ ବୋଲି ଭାବବେ ନାହିଁ । ଆମର ବର୍ତ୍ତମାନ କହିବା କଥା ଏହି ଯେ, ଆମେ ତାଙ୍କ ମାନୁଷୀ ପ୍ରକୃତିର ମାତ୍ର ସମାଲୋଚନା କରୁଅଛୁଁ । ଆମେ ତାଙ୍କୁ ଆଦର୍ଶ ମନୁଷ୍ୟ କହି ଅଛୁଁ । ଏଦ୍ୱାରା ତାଙ୍କର ମନୁଷ୍ୟାତୀତ କୌଣସି ପ୍ରକୃତି ଥିଲେ ମଧ୍ୟ ତାହାର ବିକାଶ ମାତ୍ର ପ୍ରତିଷିଦ୍ଧ ହେଲ । ପୂର୍ବେ କହିଅଛୁ, ଏପରି ମଧ୍ୟ ହୋଇପାରେ ଯେ, ଈଶ୍ୱର ଲୋକଶିକ୍ଷାର୍ଥ ଆଦର୍ଶମନୁଷ୍ୟ ସ୍ୱରୂପ ଲୋକାଳୟରେ ଜନ୍ମଗ୍ରହଣ କରନ୍ତି । ଯଦି ତାହା ହୁଏ, ତେବେ ସେ କେବଳ ମାନୁଷିକ ଶକ୍ତିରେ, ଜଗତରେ କେବଳ ମାନୁଷିକ କାର୍ଯ୍ୟ କରିବେ । ସେ କଦାପି କୌଣସି ଲୋକାତୀତ ଶକ୍ତି ଦ୍ୱାରା କୌଣସି ଲୌକିକ ବା ଅଲୌକିକ କାର୍ଯ୍ୟ ନିର୍ବାହ କରିବେ ନାହିଁ । କାରଣ, ମନୁଷ୍ୟର କୌଣସି ଅଲୌକିକ ଶକ୍ତି ନାହିଁ । ସେ ତାହାର ଆଶ୍ରୟ ନେଇ ସ୍ୱକାର୍ଯ୍ୟ ସାଧନ କଲେ, ସେ ଆଉ ମନୁଷ୍ୟର ଆଦର୍ଶ ହୋଇ ପାରିଲେନାହିଁ । ଯେଉଁ ଶକ୍ତି ମନୁଷ୍ୟର ନାହିଁ, ତାହାର ଅନୁକରଣ ମନୁଷ୍ୟ କି ପ୍ରକାରେ କରିବେ ?†

† " we forget that Christ incarnate was such as we are, and Some of us are putting him where he can be no example to us at all. Let no fear of losing the dear great truth of the divinity of jesus make you lose the dear great truth of the humanity of Jesus. He took upon himself our nature ; as a man of the like. Passions, he

ଅତଏବ, ଶ୍ରୀକୃଷ୍ଣ ଈଶ୍ୱରଙ୍କ ଅବତାର ହେଲେ ମଧ୍ୟ ତାଙ୍କର କୌଣସି ଅଲୌକିକ ଶକ୍ତିର ବିକାଶ ବା ଅମାନୁଷୀ କାର୍ଯ୍ୟସିଦ୍ଧି ସମ୍ଭବ ନାହିଁ । ମହାଭାରତର ଯେଉଁ ସବୁ ଅଂଶରେ କୃଷ୍ଣଙ୍କର ଅଲୌକିକ ଶକ୍ତିର ଆରୋପ ଅଛି, ତାହା ଅମୂଳକ ଏବଂ ପ୍ରକ୍ଷିପ୍ତ କି ନୁହେଁ, ସେ କଥା ବିଚାର ଆମେ ଯଥାସ୍ଥାନରେ କରିବା । ବର୍ତ୍ତମାନ ଆମର ବକ୍ତବ୍ୟ ଏହି ଯେ, କୃଷ୍ଣ କୌଣସି ସ୍ଥାନରେ ନିଜକୁ ଈଶ୍ୱର ବୋଲି ପରିଚୟ ଦେଇ ନାହାନ୍ତି । * କୌଣସିଠାରେ ଏପରି ପ୍ରକାଶ କରିନାହାନ୍ତି ଯେ, ତାଙ୍କର କୌଣସି ପ୍ରକାର ଅମାନୁଷିକ ଶକ୍ତି ଅଛି । କେହି ତାଙ୍କଠାରେ ଈଶ୍ୱରତ୍ୱ ଆରୋପ କଲେ, ସେତେବେଳେ ସେ ସେ କଥାର ଅନୁମୋଦନ କରି ନାହାନ୍ତି,

---

fought that terrible fight in the wilderness : year by year, as an innocent man, was he persecuted by narrow-hearted Jews ; and his was a humanity whose virtue was pressed by all the needs of the multitude and yet kept its richness of nature ; a humanity which, though given up to death on the cross, expressed all that is within the capacity of our own humanity ; and if we really follow him we shall be holy even as he is holy. " Sermon by Dr. Brookly, delivered at Trinity Church, Boston, March 29th 1885. ଶ୍ରୀକୃଷ୍ଣଙ୍କ ସମ୍ବନ୍ଧରେ ମୁଁ ଠିକ୍ ଏହି କଥା କହେ ।

* ଯେଉଁ ଦୁଇଏକ ସ୍ଥାନରେ ଏପରି କଥା ଅଛି, ସେ ସବୁ ଅଂଶ ଯେ ପ୍ରକ୍ଷିପ୍ତ, ତାହା ମଧ୍ୟ ଯଥାସ୍ଥାନରେ ଆମେ ପ୍ରମାଣୀକୃତ କରିବୁ ।

ନା ଏପରି କୌଣସି ଆଚରଣ କର ନାହାନ୍ତି, ଯାହାଦ୍ୱାରା ସେମାନଙ୍କର ତାଙ୍କ ବିଶ୍ୱାସ ଦୃଢ଼ୀକୃତ ହୋଇପାରେ, ବରଂ ଏକସ୍ଥାନରେ ସେ ସ୍ପଷ୍ଟ କହିଛନ୍ତି, "ମୁଁ ଯଥାସାଧ୍ୟ ପୁରୁଷକାର ପ୍ରଦାନ କରିପାରେ, କିନ୍ତୁ ଦୈବର ଅନୁଷ୍ଠାନରେ ମୋର କିଛିମାତ୍ର କ୍ଷମତା ନାହିଁ।" *

ସେ ଯତ୍ନ ପୂର୍ବକ ମନୁଷ୍ୟୋଚିତ ଆଚାର ବ୍ୟବହାରର ଅନୁଷ୍ଠାନ କରୁଥିଲେ। ଯାହାଙ୍କ ମନରେ ଥାଏ ଯେ, ମୁଁ ଗୋଟାଏ ଦେବତା ବୋଲି ପରିଚିତ ହେବି, ସେ ଠିକଏ ମନୁଷ୍ୟୋଚିତ ଆଚରଣ ଅବଲମ୍ବନ କରନ୍ତି, କୃଷ୍ଣଙ୍କଠାରେ ସେ ଭାବ କୌଣସିଠାରେ ଲକ୍ଷିତ ହୁଏ ନାହିଁ। ଏହି ସବୁ କଥାର ଉଦାହରଣ ସ୍ୱରୂପ ସେ ଖାଣ୍ଡବ ଦାହ ପରେ ଯୁଧିଷ୍ଠିରଙ୍କ ନିକଟରୁ ବିଦାୟ ଗ୍ରହଣ କରି, ଯେଉଁ-ବେଳେ ଦ୍ୱାରକା ଯାତ୍ରା କରନ୍ତି, ସେତେବେଳେ ସେ ଯେରୂପ ଆଚରଣ କରିଥିଲେ, ତାହାର ବର୍ଣ୍ଣନା ଉଦ୍ଧୃତ କରୁଅଛୁ। ତାହା ଅତ୍ୟନ୍ତ ମାନୁଷିକ।

"ବୈଶମ୍ପାୟନ କହିଲେ, ଭଗବାନ ବାସୁଦେବ ପରମ ପ୍ରୀତ ପାଣ୍ଡବ ମାନଙ୍କଦ୍ୱାରା ଅଭିପୂଜିତ ହୋଇ କିଛିଦିନ ଖାଣ୍ଡବ ପ୍ରସ୍ଥରେ ବାସ କଲେ। ପରିଶେଷରେ ପିତୃଦର୍ଶନ ନିମିତ୍ତ ଅତ୍ୟନ୍ତ ଉତ୍ସୁକ ହୋଇ ସ୍ୱଭବନକୁ ଯିବାକୁ ବିଶେଷ ଅଭିଳାଷ ହେଲେ। ସେ ପ୍ରଥମେ ଧର୍ମରାଜ ଯୁଧିଷ୍ଠିରଙ୍କୁ ଆମନ୍ତ୍ରଣ କରି ପଶ୍ଚାତ୍ ସ୍ୱୀୟ ପିତୃସ୍ୱସା କୁନ୍ତୀ ଦେବୀଙ୍କ ଚରଣବନ୍ଦନା କଲେ। ପରେ ବାସୁ-ଦେବ, ସାକ୍ଷାତ୍କାର ମାନସରେ ସ୍ୱୀୟ ଭଗିନୀ ସୁଭଦ୍ରାଙ୍କ ସମୀପରେ

---

* ଅହଂ ହି ତତ୍ କରିଷ୍ୟାମି ପରଂ ପୁରୁଷକାରତଃ।
ଦୈବଂ ତୁ ନ ମୟା ଶକ୍ୟଂ କର୍ମ କର୍ତ୍ତୁଂ କଥଞ୍ଚନ।
ଉଦ୍ୟୋଗପର୍ବ, ୭୮ ଅଧ୍ୟାୟ।

ଉପସ୍ଥିତ ହୋଇ, ଅର୍ଥଯୁକ୍ତ ଯଥାର୍ଥ ହିତକର ଅଳ୍ପାକ୍ଷର ଓ ଅଖଣ୍ଡନୀୟ ବାକ୍ୟରେ ତାଙ୍କୁ ନାନାପ୍ରକାର ବୁଝାଇଲେ । ଭଦ୍ର-ଭାଷିଣୀ ଭଦ୍ରା ମଧ୍ୟ ତାଙ୍କୁ ଜନନୀ ପ୍ରଭୃତି ସ୍ୱଜନ ନିକଟକୁ ବକ୍ତବ୍ୟସମସ୍ତ ବାକ୍ୟ ସମ୍ବାଦ କହି ସାରି ବାରମ୍ବାର ପୂଜା ଓ ଅଭିବାଦନ କଲେ । ବୃଷ୍ଣିବଂଶାବତଂସ କୃଷ୍ଣ ତାଙ୍କ ନିକଟରୁ ବିଦାୟ ନେଇ ଦ୍ରୌପଦୀ ଓ ଧୌମ୍ୟଙ୍କ ସହିତ ସାକ୍ଷାତ୍ କଲେ । ଧୌମ୍ୟଙ୍କୁ ଯଥାବିଧି ବନ୍ଦନ ଓ ଦ୍ରୌପଦୀଙ୍କୁ ସମ୍ଭାଷଣ ଓ ଆମନ୍ତ୍ରଣ କରି ଅର୍ଜୁନ ସମଭିବ୍ୟାହାରରେ ସେଠାରୁ ଯୁଧିଷ୍ଠିରାଦି ଭ୍ରାତୃଚତୁଷ୍ଟୟଙ୍କ ନିକଟରେ ଉପସ୍ଥିତ ହେଲେ । ସେଠାରେ ଭଗବାନ ବସୁଦେବ ପଞ୍ଚପାଣ୍ଡବ କର୍ତ୍ତୃକ ବେଷ୍ଟିତ ହୋଇ ଅମରଗଣ - ବେଷ୍ଟିତ ମହେନ୍ଦ୍ରଙ୍କ ପରି ଶୋଭା ପାଇବାକୁ ଲାଗିଲେ ।

ତତ୍ପରେ କୃଷ୍ଣ ଯାତ୍ରାକାଳୋଚିତ କାର୍ଯ୍ୟ କରିବା ମାନସରେ ସ୍ନାନାନ୍ତେ ଅଳଙ୍କାର ପରିଧାନ କରି ମାଳାଜପ, ନମସ୍କାର ଓ ନାନାବିଧ ଗନ୍ଧ ଦ୍ରବ୍ୟ-ଦ୍ୱାରା ଦେବ ଓ ଦ୍ୱିଜମାନଙ୍କ ପୂଜା ସମ୍ପନ୍ନ କଲେ । ସେ କ୍ରମେ କ୍ରମେ ତତ୍କାଳୋଚିତ ସମସ୍ତ କାର୍ଯ୍ୟ ସମାଧାନ କରି ସ୍ୱପୁର ଗମନ ଉଦ୍ୟୋଗରେ ବହିଃକକ୍ଷକୁ ବହିର୍ଗତ ହେଲେ । ସ୍ୱସ୍ତିବାଚକ ବ୍ରାହ୍ମଣଗଣ ଦଧିପାତ୍ର ଫଳପୁଷ୍ପ ଓ ଅକ୍ଷତ ପ୍ରଭୃତି ମାଙ୍ଗଲ୍ୟ ବସ୍ତୁ ହସ୍ତରେ ନେଇ ସେଠାରେ ଉପସ୍ଥିତ ଥିଲେ । ବାସୁଦେବ ସେମାନଙ୍କୁ ଧନଦାନ ପୂର୍ବକ ପ୍ରଦକ୍ଷିଣ କଲେ । ପରେ ଉତ୍କୃଷ୍ଟ ତିଥିନକ୍ଷତ୍ର ଯୁକ୍ତ ମୁହୂର୍ତ୍ତରେ ଗଦା ଚକ୍ର ଅସି ଶାର୍ଙ୍ଗ ପ୍ରଭୃତି ଅସ୍ତ୍ରଶସ୍ତ୍ରପରିବୃତ ଗରୁଡ଼କେତନ ବାୟୁବେଗଗାମୀ କାଞ୍ଚନମୟ ରଥରେ ଆରୋହଣ କରି ସ୍ୱପୁରକୁ ଗମନ କରୁଛନ୍ତି, ଏପରି ସମୟରେ ମହାରାଜ ଯୁଧିଷ୍ଠିର ସ୍ନେହପରବଶ ହୋଇ ସେହି ରଥରେ ଆରୋହଣ ପୂର୍ବକ ଦାରୁକ ସାରଥିଙ୍କୁ ତତ୍ସ୍ଥାନରୁ ସ୍ଥାନାନ୍ତରରେ

ଉପବେଶନ କରାଇ ସ୍ୱୟଂ ସାରଥି ହୋଇ ବଲଗା ଗ୍ରହଣ କଲେ । ମହାବାହୁ ଅର୍ଜୁନ ମଧ୍ୟ ତହିଁରେ ଆରୋହଣ କରି ସ୍ୱର୍ଣ୍ଣଦଣ୍ଡବରାଜିତ ଶ୍ୱେତଚାମର ଗ୍ରହଣ ପୂର୍ବକ ଶ୍ରୀକୃଷ୍ଣଙ୍କୁ ବ୍ୟଜନ କରିଃ ପ୍ରଦକ୍ଷିଣ କଲେ । ମହାବଳ ପରାକ୍ରାନ୍ତ ଭୀମସେନ ନକୁଳ ଏବଂ ସହଦେବ ଋତ୍ୱିକ ଓ ପୁରୋହିତ ଗଣଙ୍କ ସମଭିବ୍ୟାହାରରେ ତାଙ୍କ ଅନୁ-ଗମନ କରିବାକୁ ଲାଗିଲେ । ଶତ୍ରୁବଳାନ୍ତକ ବାସୁଦେବ ଯୁଧିଷ୍ଠିରାଦି ଭ୍ରାତାମାନଙ୍କ କର୍ତ୍ତୃକ ଅନୁଗମ୍ୟମାନ ହୋଇ ଶିଷ୍ୟଗଣାନୁଗତ ଗୁରୁଙ୍କ ସଦୃଶ ଶୋଭା ପାଇବାକୁ ଲାଗିଲେ । ସେ ଅର୍ଜୁନଙ୍କୁ ଆମନ୍ତ୍ରଣ ଓ ଗାଢ଼ଆଲିଙ୍ଗନ, ଯୁଧିଷ୍ଠିର ଓ ଭୀମସେନଙ୍କୁ ପୂଜା ଏବଂ ନକୁଳ ଓ ସହଦେବଙ୍କୁ ସମ୍ଭାଷଣ କଲେ । ଯୁଧିଷ୍ଠିର ଭୀମସେନ ଓ ଅର୍ଜୁନ ତାଙ୍କୁ ଆଲିଙ୍ଗନ ଏବଂ ନକୁଳ ଓ ସହଦେବ ତାଙ୍କୁ ଅଭିବାଦନ କଲେ । ତତ୍ପରେ କ୍ରମେ କ୍ରମେ ଅର୍ଦ୍ଧ ଯୋଜନ ଗମନ କରି ଶତ୍ରୁନିସୂଦନ କୃଷ୍ଣ ଯୁଧିଷ୍ଠିରଙ୍କୁ ଆମନ୍ତ୍ରଣ କରିଃ ପ୍ରତିନିବୃତ୍ତ ହୁଅନ୍ତୁ ବୋଲି କହି ତାଙ୍କ ପାଦଦ୍ୱୟ ଗ୍ରହଣ କଲେ । ଧର୍ମରାଜ ଯୁଧିଷ୍ଠିର ଚରଣପତିତ ପତିତପାବନ କମଳଲୋଚନ କୃଷ୍ଣଙ୍କୁ ଉତ୍ଥାପିତ କରି ତାଙ୍କ ମସ୍ତକାଘ୍ରାଣ ପୂର୍ବକ ଭବନକୁ ଯିବାକୁ ଅନୁମତି କଲେ । ସେତେବେଳେ ଭଗବାନ ବାସୁଦେବ ପାଣ୍ଡବ-ମାନଙ୍କ ସହିତ ଯଥାବିଧି ପ୍ରତିଜ୍ଞା କରି ଅତିକଷ୍ଟରେ ସେମାନଙ୍କୁ ପ୍ରତିନିବୃତ୍ତ କରି ଅମରାବତୀପ୍ରସ୍ଥିତ ମହେନ୍ଦ୍ରଙ୍କ ପରି ଦ୍ୱାରାବତୀ ପ୍ରତିଗମନ କରିବାକୁ ଲାଗିଲେ । ପାଣ୍ଡବମାନେ ଯେପର୍ଯ୍ୟନ୍ତ କୃଷ୍ଣଙ୍କୁ ଦେଖିବାକୁ ପାଇଲେ, ସେ ପର୍ଯ୍ୟନ୍ତ ସେମାନେ ନିମେଷ ଶୂନ୍ୟ ନୟ-ନରେ ତାଙ୍କୁ ନିରୀକ୍ଷଣ ଓ ମନେ ମନେ ତାଙ୍କର ଅନୁଗମନ କରିବାକୁ ଲାଗିଲେ । କୃଷ୍ଣଙ୍କୁ ଦେଖି ସେମାନଙ୍କ ମନ ପରିତୃପ୍ତ ନ ହେଉଣୁ ସେ ସେମାନଙ୍କ ଦୃଷ୍ଟିପଥର ବହିର୍ଭୂତ ହେଲେ । ସେତେବେଳେ ପାଣ୍ଡବମାନେ କୃଷ୍ଣଦର୍ଶନରେ ନିତାନ୍ତ ନିରାଶ ହୋଇ ତଦ୍ବିଷୟିଣୀ

ଚିନ୍ତା କରୁ କରୁ ସ୍ୱପୁରେ ପ୍ରତିନିବୃତ୍ତ ହେଲେ । ଦେବକୀ ନନ୍ଦନ କୃଷ୍ଣ ମଧ୍ୟ ଅନୁଗାମୀ ମହାବୀର ସାତ୍ୟକି ଏବଂ ଦାରୁକ ସାରଥିଙ୍କ ସହିତ ବେଗବାନ୍ ଗରୁଡ଼ଙ୍କଠାରେ ସମୁଦ୍ଭବ ଦ୍ୱାରକାପୁରରେ ସମୁପସ୍ଥିତ ହେଲେ । ଧର୍ମରାଜ ଯୁଧିଷ୍ଠିର ଭ୍ରାତୃଗଣ ସମଭିବ୍ୟାହାରରେ ସୁହୃଜ୍ଜନପରିବୃତ ହୋଇ ସ୍ୱପୁରେ ପ୍ରବେଶ କଲେ, ଏବଂ ଭ୍ରାତା ପୁତ୍ର ଓ ବନ୍ଧୁମାନଙ୍କୁ ବିଦାୟ ଦେଇ ଦ୍ରୌପଦୀଙ୍କ ସହିତ ଆମୋଦ ପ୍ରମୋଦରେ କାଳ କ୍ଷେପ କରିବାକୁ ଲାଗିଲେ ।ଏଣେ କୃଷ୍ଣ ମଧ୍ୟ ପରମ ଆହ୍ଲାଦିତ ଚିତ୍ତରେ ଦ୍ୱାରକାପୁରରେ ପ୍ରବେଶ କଲେ । ଉଗ୍ରସେନ ପ୍ରଭୃତି ଯଦୁଶ୍ରେଷ୍ଠମାନେ ତାଙ୍କର ପୂଜା କରିବାକୁ ଲାଗିଲେ । ବାସୁଦେବ ପୁର ପ୍ରବେଶ କରି ଅଗ୍ରେ ବୃଦ୍ଧ ପିତା, ଆହୁକ ଓ ପରସ୍ୱିନୀ ମାତାଙ୍କୁ, ପରେ ବଳଭଦ୍ରଙ୍କୁ ଅଭିବାଦନ କଲେ । ଅନନ୍ତର ସେ ପ୍ରଦ୍ୟୁମ୍ନ ଶାମ୍ବ, ନିଶଠ, ଚାରୁଦେଷ୍ଣ, ଗଦ, ଅନିରୁଦ୍ଧ ଓ ଭାନୁଙ୍କୁ ଆଲିଙ୍ଗନ କରି ବୃଦ୍ଧମାନଙ୍କର ଅନୁମତି ଗ୍ରହଣ ପୂର୍ବକ ରୁକ୍ମିଣୀଙ୍କ ଭବନରେ ଉପସ୍ଥିତ ହେଲେ ।

## ଷଷ୍ଠ ପରିଚ୍ଛେଦ
## ଜରାସନ୍ଧ ବଧର ପରାମର୍ଶ

ଏଣେ ସଭା ନିର୍ମାଣ ହେଲା । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ କରିବାର ପ୍ରସ୍ତାବ ହେଲା । ସମସ୍ତେ ସେ ବିଷୟରେ ମତ ଦେଲେ, କିନ୍ତୁ ଯୁଧିଷ୍ଠିର କୃଷ୍ଣଙ୍କ ମତ ବ୍ୟତୀତ, ତହିଁରେ ପ୍ରବୃତ୍ତ ହେବାକୁ ଅନିଚ୍ଛୁକ, କାରଣ, କୃଷ୍ଣହିଁ ସର୍ବଜ୍ଞ । ଅତଏବ ସେ କୃଷ୍ଣଙ୍କୁ ଆଣିବାକୁ ପଠାଇଲେ । କୃଷ୍ଣ ମଧ୍ୟ ସମ୍ବାଦ ପ୍ରାପ୍ତିମାତ୍ରେ ଖାଣ୍ଡବ ପ୍ରସ୍ଥରେ ଉପସ୍ଥିତ ହେଲେ ।

ରାଜସୂୟରେ ଅନୁଷ୍ଠାନ ସମ୍ବନ୍ଧରେ ଯୁଧିଷ୍ଠିର କୃଷ୍ଣଙ୍କୁ କହୁଛନ୍ତି —

"ମୁଁ ରାଜସୂୟ ଯଜ୍ଞ କରିବାକୁ ଅଭିଳାଷ କରିଅଛି । ସେହି ଯଜ୍ଞ କେବଳ ଇଚ୍ଛାକଲା ମାତ୍ରେ ସମ୍ପନ୍ନ ହୁଏ, ଏପରି ନୁହେଁ । ଯେ ରୂପେ ତାହା ସମ୍ପନ୍ନ ହୁଏ, ତାହା ତୁମର ସୁବିଦିତ ଅଛି । ଯେଣୁ, ଯେଉଁ ବ୍ୟକ୍ତିଙ୍କଠାରେ ସମସ୍ତ ସମ୍ଭବ, ଯେଉଁ ବ୍ୟକ୍ତି ସର୍ବତ୍ର ପୂଜ୍ୟ, ଏବଂ ଯେ ସମୁଦାୟ ପୃଥିବୀର ଈଶ୍ୱର, ସେହି ବ୍ୟକ୍ତିହିଁ ରାଜସୂୟ ଅନୁଷ୍ଠାନର ଉପଯୁକ୍ତ ପାତ୍ର ।"

କୃଷ୍ଣଙ୍କୁ ଯୁଧିଷ୍ଠିରଙ୍କର ଏଇ କଥାହିଁ ଜିଜ୍ଞାସ୍ୟ ତାଙ୍କର ଜିଜ୍ଞାସ୍ୟ ଏହି ଯେ:-

"ମୁଁ କଣ ସେହିପରି ବ୍ୟକ୍ତି ? ମୋଠାରେ କଣ ସମସ୍ତ ସମ୍ଭବ ? ମୁଁ କଣ ସର୍ବତ୍ର ପୂଜ୍ୟ, ଏବଂ ସମୁଦାୟ ପୃଥିବୀର ଈଶ୍ୱର ?" ଯୁଧିଷ୍ଠିର ଭ୍ରାତୃଗଣଙ୍କ ଭୁଜବଳରେ ଜଣେ ବଡ଼ ରାଜା ହୋଇ ଉଠିଛନ୍ତି ସତ୍ୟ, କିନ୍ତୁ ସେ ଏପରି ଗୋଟାଏ ଲୋକ ହୋଇ ଅଛନ୍ତି କି ଯେ, ରାଜସୂୟ ଯଜ୍ଞର ଅନୁଷ୍ଠାନ କରିବେ ? ମୁଁ କେତେ ବଡ଼ ଲୋକ, ତାହାର ଠିକ୍ ମାପ କେହି ଆପେ ଆପେ ପାଏ ନାହିଁ । ଦାମ୍ଭିକ ଓ ଦୁରାତ୍ମାମାନେ ଖୁବ ବଡ଼ ମାପ କାଠିରେ ନିଜକୁ ମାପି ନିଜର ମହତ୍ତ୍ୱ ସମ୍ବନ୍ଧରେ କୃତନିଶ୍ଚୟ ହୋଇ ସନ୍ତୁଷ୍ଟଚିତ୍ତରେ ବସି ଥାଆନ୍ତି, କିନ୍ତୁ ଯୁଧିଷ୍ଠିରଙ୍କ ପରି ସାବଧାନ ଓ ବିନୟ ସମ୍ପନ୍ନ ବ୍ୟକ୍ତିଙ୍କ ପକ୍ଷରେ ତାହା ସମ୍ଭବ ନୁହେଁ । ସେ ମନେ ମନେ ବୁଝି-ଥିଲେ ଯେ, ମୁଁ ଖୁବ ବଡ଼ ରାଜା ହୋଇଅଛି, କିନ୍ତୁ ଆପଣାକୃତ ଆତ୍ମମାନରେ ତାଙ୍କର ବଡ଼ ବିଶ୍ୱାସ ହେଉ ନାହିଁ । ସେ ନିଜର ମନ୍ତ୍ରିଗଣ ଓ ଭୀମାର୍ଜ୍ଜୁନାଦି ଅନୁଜ ମାନଙ୍କୁ ଡାକି ପଚାରି ଥିଲେ— "ଆଚ୍ଛା, ମୁଁ ରାଜସୂୟ କରି ପାରେ କି ?" ସେମାନେ କହିଥିଲେ "ହଁ, ଅବଶ୍ୟ ପାର । ତୁମେ ତାର ଯୋଗ୍ୟ ପାତ୍ର ।" ଧୌମ୍ୟ ଦ୍ୱୈପାୟନାଦି ଋଷିମାନଙ୍କୁ ଡାକି ପଚାରି ଥିଲେ । "ଆଚ୍ଛା, ମୁଁ

କିଣ ରାଜସୂୟ କରିପାରେ ?" ସେମାନେ ମଧ୍ୟ କହିଥିଲେ, "ତୁମେ ରାଜସୂୟାନୁଷ୍ଠାନର ଉପଯୁକ୍ତ ପାତ୍ର" ତଥାପି ସାବଧାନ * ଯୁଧିଷ୍ଠିରଙ୍କ ମନ ନିଶ୍ଚିନ୍ତ ହେଲା ନାହିଁ। ଅର୍ଜୁନ ପ୍ରଭୃତି, ବ୍ୟାସ ପ୍ରଭୃତି,—ଯୁଧିଷ୍ଠିରଙ୍କ ନିକଟରେ ପରିଚିତ ବ୍ୟକ୍ତିମାନଙ୍କ ମଧ୍ୟରେ ଯେ ସର୍ବାପେକ୍ଷା ଶ୍ରେଷ୍ଠ, ତାଙ୍କ ପାଖରୁ ଏ କଥାର ଉତ୍ତର ନ ଶୁଣିଲେ, ଯୁଧିଷ୍ଠିରଙ୍କ ସନ୍ଦେହ ଯାଏ ନାହିଁ। ତେଣୁ "ମହାବାହୁ ସର୍ବଲୋକୋତ୍ତମ" କୃଷ୍ଣଙ୍କ ସହିତ ପରାମର୍ଶ କରିବାକୁ ସ୍ଥିର କଲେ। ଭାବିଲେ, "କୃଷ୍ଣ ସର୍ବଜ୍ଞ ଓ ସର୍ବକୃତ୍, ସେ ଅବଶ୍ୟ ମତେ ସତ୍‌ପରାମର୍ଶ ଦେବେ।" ସେହି ହେତୁ ସେ କୃଷ୍ଣଙ୍କୁ ଆଣିବାକୁ ଲୋକ ପଠାଇଥିଲେ, ଏବଂ କୃଷ୍ଣ ଆସିଲେ ତାଙ୍କୁ ପୂର୍ବୋକ୍ତ କଥା ପଚାରୁଛନ୍ତି। କାହିଁକି ତାଙ୍କୁ ପଚାରୁଛନ୍ତି, ତାହା ମଧ୍ୟ ତାଙ୍କୁ ଖୋଲି କହୁଛନ୍ତି।

"ମୋର ଅନ୍ୟାନ୍ୟ ସୁହୃଦ୍‌ମାନେ ମତେ ଏହି ଯଜ୍ଞ କରିବାକୁ ପରାମର୍ଶ ଦେଉଛନ୍ତି, କିନ୍ତୁ ମୁଁ ତୁମର ପରାମର୍ଶ ନ ନେଇ ତାହାର

* ପାଣ୍ଡବ ପାଞ୍ଚଜଣଙ୍କ ଚରିତ୍ର ବୁଦ୍ଧିମାନ ସମାଲୋଚକ ସମାଲୋଚନା କଲେ ଦେଖି ପାରିବେ ଯେ, ଯୁଧିଷ୍ଠିରଙ୍କ ପ୍ରଧାନ ଗୁଣ ତାଙ୍କ ସାବଧାନତା। ଭୀମ ଦୁଃସାହସ, "ଏକବାଗିଆ" ଅର୍ଜୁନ ନିଜର ବାହୁବଳର ଗୌରବ ଜାଣି ନିର୍ଭୟ ଓ ନିଶ୍ଚିନ୍ତ। ଯୁଧିଷ୍ଠିର ସାବଧାନ। ଏ ଜଗତରେ ସାବଧାନତାହିଁ ଅନେକ ସ୍ଥାନରେ ଧର୍ମ ବୋଲି ପରିଚିତ ହୁଏ। କଥାଟା ଏଠାରେ ଅପ୍ରାସଙ୍ଗିକ ହେଲେ ମଧ୍ୟ, ବଡ଼ ଗୁରୁତର କଥା ବୋଲି ଏଠାରେ ଏହାର ଉତ୍‌ଥାପନ କଲି। ଏହି ସାବଧାନତାର ସହିତ ଯୁଧିଷ୍ଠିରଙ୍କର ଦ୍ୟୂତାନୁରାଗ କେତେଦୂର ସଙ୍ଗତ, ତାହା ଦେଖାଇବାର ଏହା ସ୍ଥାନ ନୁହେଁ।

ଅନୁଷ୍ଠାନ କରିବାକୁ ନିଶ୍ଚୟ କର ନାହିଁ । ହେ କୃଷ୍ଣ ! କୌଣସି କୌଣସି ବ୍ୟକ୍ତି ବନ୍ଧୁ ତା ନିମିତ୍ତ ଦୋଷୋଦ୍‌ଘୋଷଣ କରନ୍ତି ନାହିଁ । କେହି କେହି ସ୍ୱାର୍ଥପର ହୋଇ ପ୍ରିୟବାକ୍ୟ କହନ୍ତି । କେହିବା ଯହିଁରେ ନିଜର ହିତ ହୁଏ, ତାହାହିଁ ପ୍ରିୟ ବୋଲି ବୋଧ କରନ୍ତି । ହେ ମହାତ୍ମନ୍ ! ଏହି ପୃଥିବୀ ମଧ୍ୟରେ ଉକ୍ତ ପ୍ରକାର ଲୋକହିଁ ଅଧିକ, ସୁତରାଂ ସେମାନଙ୍କ ପରାମର୍ଶ ନେଇ କୌଣସି କାର୍ଯ୍ୟ କରା ଯାଏ ନାହିଁ । ତୁମେ ଉକ୍ତ ଦୋଷରହିତ ଓ କାମ-କ୍ରୋଧ-ବିବର୍ଜ୍ଜିତ ; ଅତଏବ ମତେ ଯଥାର୍ଥ ପରାମର୍ଶ ପ୍ରଦାନ କର । ”

ପାଠକ ଦେଖନ୍ତୁ, କୃଷ୍ଣଙ୍କ ଆତ୍ମୀୟମାନେ ଯେଉଁମାନେ ପ୍ରତ୍ୟକ୍ଷ ତାଙ୍କ କାର୍ଯ୍ୟକଳାପ ଦେଖୁଥିଲେ, ସେମାନେ କୃଷ୍ଣଙ୍କୁ କଣ ଭାବୁଥିଲେ । * ଆଉ ବର୍ତ୍ତମାନ ଆମେ ତାଙ୍କୁ କଣ ଭାବୁ । ସେମାନେ ଜାଣୁଥିଲେ, କୃଷ୍ଣ କାମ-କ୍ରୋଧ-ବିବର୍ଜ୍ଜିତ, ସର୍ବାପେକ୍ଷା ସତ୍ୟବାଦୀ, ସର୍ବଦୋଷରହିତ, ସର୍ବଲୋକୋତ୍ତମ, ସର୍ବଜ୍ଞ ଓ ସର୍ବକୃତି, --ଆମେ ଜାଣୁ, ସେ ଲମ୍ପଟ, ଲହୁଣୀ ଚୋର, କୁଚକ୍ରୀ, ମିଥ୍ୟା-ବାଦୀ, ରିପୁବଶୀଭୂତ ଏବଂ ଅନ୍ୟାନ୍ୟ ଦୋଷଯୁକ୍ତ । ଯେ ଧର୍ମ୍ମର ଚରମାଦର୍ଶ ବୋଲି ପ୍ରାଚୀନ ଗ୍ରନ୍ଥରେ ବର୍ଣ୍ଣିତ, ତାଙ୍କୁ ଯେଉଁଜାତି ଏ ପଦରୁ ଅବନତ କରିଅଛୁ, ସେ ଜାତି ମଧ୍ୟରେ ଯେ ଧର୍ମ୍ମଲୋପ ହେବ, ବିଚିତ୍ର କଣ ?

ଯୁଧିଷ୍ଠିର ଯାହା ଭାବିଥିଲେ, ଠିକ୍ ତାହାହିଁ ହେଲା; ଯେଉଁ

* ଯୁଧିଷ୍ଠିଙ୍କ ମୁହଁରୁ ବାସ୍ତବିକ ଏହିକଥାଗୁଡ଼ିକ ବାହାରିଥିଲା, ଆଉ ତାହା କେହି ଲେଖିରଖିଥିଲେ, ଏହା ନୁହେଁ । ମୌଳିକ ମହାଭାରତରେ ତାଙ୍କର କିରୂପ ଚରିତ୍ର ସୃଷ୍ଟିତ ହୋଇଥିଲା, ଏହାହିଁ ଆମର ଆଲୋଚ୍ୟ ।

ଅପ୍ରିୟ ସତ୍ୟବାକ୍ୟ ଆଉ କେହି ଯୁଧିଷ୍ଠିରଙ୍କୁ କହିନାହାନ୍ତି; କୃଷ୍ଣ ତାହା କହିଲେ । କଥାର ଆବରଣ ଦେଇ ସେ ଯୁଧିଷ୍ଠିରଙ୍କୁ କହିଲେ, "ତୁମେ ରାଜସୂୟର ଅଧିକାରୀ ନୁହଁ, କାରଣ, ସମ୍ରାଟ ଭିନ୍ନ ରାଜସୂୟର ଅଧିକାରୀ ହୁଏ ନାହିଁ, ତୁମେ ସମ୍ରାଟ ନୁହଁ । ମଗଧାଧିପତି ଜରାସନ୍ଧ ବର୍ତ୍ତମାନ ସମ୍ରାଟ୍ । ତାଙ୍କୁ ଜୟ ନ କଲେ ତୁମେ ରାଜସୂୟର ଅଧିକାରୀ ହୋଇ ପାରିବ ନାହିଁ ବା ସମ୍ପନ୍ନ କରିପାରିବ ନାହିଁ ।"

ଯେଉଁମାନେ କୃଷ୍ଣଙ୍କୁ ସ୍ୱାର୍ଥପର ଓ କୁଚକ୍ରୀ ଭାବନ୍ତି । ସେମାନେ ଏହି କଥା ଶୁଣି କହିଲେ "ଏହା ଠିକ୍ କୃଷ୍ଣଙ୍କ ପରି କଥା ହେଲା । ଜରାସନ୍ଧ କୃଷ୍ଣଙ୍କ ପ୍ରବଳ ଶତ୍ରୁ, କୃଷ୍ଣ ନିଜେ ତାଙ୍କୁ ପାରି ଉଠି ନାହାନ୍ତି, ବର୍ତ୍ତମାନ ସୁଯୋଗ ପାଇ ବଳବାନ ପାଣ୍ଡବମାନଙ୍କଦ୍ୱାରା ତାଙ୍କ ବଧ-ସାଧନ କରି ନିଜର ଇଷ୍ଟସିଦ୍ଧିର ଚେଷ୍ଟାରେ ଏହି ପରାମର୍ଶ ଦେଲେ ।"

କିନ୍ତୁ ଆଉ ଟିକିଏ କଥା ବାକି ଅଛି । ଜରାସନ୍ଧ ସମ୍ରାଟ୍, କିନ୍ତୁ ତୈମୁରଲଙ୍ଗ୍ ବା ପ୍ରଥମ ନେପୋଲିୟନଙ୍କ ପରି ଅତ୍ୟାଚାରୀ ସମ୍ରାଟ୍ । ପୃଥିବୀ ତାଙ୍କ ଅତ୍ୟାଚାରରେ ପ୍ରପୀଡ଼ିତ । ଜରାସନ୍ଧ ରାଜସୂୟ ଯଜ୍ଞାର୍ଥ ପ୍ରତିଜ୍ଞା କରି, "ବାହୁବଳରେ ସମସ୍ତ ଭୂପତିମାନଙ୍କୁ ପରାଜୟ କରି ସିଂହ ଯେପରି ପର୍ବତକନ୍ଦର ମଧ୍ୟରେ କରିଗଣଙ୍କୁ ବନ୍ଦୀକରି ରଖେ, ସେହିରୂପ ସେମାନଙ୍କୁ ଗିରିଦୁର୍ଗରେ ବନ୍ଦ କରି ରଖିଅଛି ।" ରାଜାମାନଙ୍କୁ କାରାବଦ୍ଧ କରି ରଖିବାର ଆଉ ଏକ ଭୟାନକ ତାତ୍ପର୍ଯ୍ୟ ଥିଲା । ଜରାସନ୍ଧଙ୍କ ଅଭିପ୍ରାୟ, ସେହି ସମାଗତ ରାଜାମାନଙ୍କୁ ଯଜ୍ଞ ସମୟରେ ସେ ମହାଦେବଙ୍କ ନିକଟରେ ବଳି ଦେବେ । ପୂର୍ବେ ଯେ ଯଜ୍ଞକାଳରେ କେହି କେତେବେଳେ ନରବଳି ଦେଉଥିଲା, ତାହା ଇତିହାସଜ୍ଞ ପାଠକଙ୍କୁ

କହିବାକୁ ହେବନାହିଁ ।* କୃଷ୍ଣ ଯୁଧିଷ୍ଠିରଙ୍କୁ କହିଲେ, "ହେ ଭରତ କୁଳ ପ୍ରଦୀପ ! ବଳିପ୍ରଦାନାର୍ଥ ସମାନୀତ ଭୂପତିମାନେ ପ୍ରୋକ୍ଷିତ ଓ ପ୍ରମୃଷ୍ଟ ହୋଇ ପଶୁମାନଙ୍କ ପରି ପଶୁପତିଙ୍କ ଗୃହରେ ବାସକରି ଅତି କଷ୍ଟରେ ଜୀବନ ଧାରଣ କରୁଅଛନ୍ତି । ଦୁରାତ୍ମା ଜରାସନ୍ଧ ଅଚିରାତ୍ ସେମାନଙ୍କୁ ଛେଦନ କରିବ । ଏଥି ନିମିତ୍ତ ମୁଁ ତାଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେବାକୁ ଉପଦେଶ ଦେଉଅଛି । ସେହି ଦୁରାତ୍ମା ଷଡଶୀତିଜଣ ଭୂପତିଙ୍କୁ ଆନୟନ କରିଅଛି । କେବଳ ଚତୁର୍ଦ୍ଦଶ ଜଣଙ୍କ ନ୍ୟୁନତା ଅଛି ! ଚତୁର୍ଦ୍ଦଶ ଜଣ ଆନୀତ ହେଲମାତ୍ରେ ସେହି ନରାଧମ ସେମାନଙ୍କୁ ସଂହାର କରିବ । "ହେ ଧର୍ମ୍ମଜ୍ଞ ! ବର୍ତ୍ତମାନ ଯେଉଁ ବ୍ୟକ୍ତି ଦୁରାତ୍ମା ଜରାସନ୍ଧର ଏହି କ୍ରୂର କାର୍ଯ୍ୟରେ ବିଘ୍ନ ଉତ୍ପାଦନ କରି ପାରିବ, ତାଙ୍କ ଯଶୋ-ରାଶି ଭୂମଣ୍ଡଳରେ ଦେଦୀପ୍ୟମାନ ହେବ, ଏବଂ ଯେ ତାଙ୍କୁ ଜୟ କରି ପାରିବେ ସେ ନିଶ୍ଚୟ ସାମ୍ରାଜ୍ୟ ଲାଭ କରିବ ।"

ଅତଏବ ଜରାସନ୍ଧ ବଧ ନିମିତ୍ତ ଯୁଧିଷ୍ଠିରଙ୍କୁ କୃଷ୍ଣ ଯେଉଁ ପରାମର୍ଶ ଦେଲେ, ତାହାର ଉଦ୍ଦେଶ୍ୟ, କୃଷ୍ଣଙ୍କ ନିଜର ହିତ ନୁହେଁ;—ଯୁଧିଷ୍ଠିରଙ୍କର ପଦବୀ ବୃଦ୍ଧିରେ ଇଷ୍ଟସିଦ୍ଧି ଅଛି, ତଥାପି ତାହା ମଧ୍ୟ ପ୍ରଧାନତଃ ଏହି ପରାମର୍ଶର ଉଦ୍ଦେଶ୍ୟ ନୁହେଁ । ଏହାର ଉଦ୍ଦେଶ୍ୟ କାରାରୁଦ୍ଧ ରାଜମଣ୍ଡଳୀଙ୍କ ହିତ—ଜରାସନ୍ଧଙ୍କ ଅତ୍ୟାଚାର ପ୍ରପୀଡ଼ିତ ଭାରତବର୍ଷର ହିତ—ସାଧାରଣ ଲୋକଙ୍କ ହିତ । କୃଷ୍ଣ ନିଜେ ସେତେବେଳେ ରୈବତକ ଦୁର୍ଗର ଆଶ୍ରୟରେ, ଜରାସନ୍ଧଙ୍କ ବାହୁର ଅଗମ୍ୟ ଏବଂ ଅଜେୟ; ଜରାସନ୍ଧ ବଧରେ ତାଙ୍କ

---

* କେହି କଦାଚିତ୍ ହେଉଥିଲେ-ସାମାଜିକ ପ୍ରଥା ଥିଲା ନାହିଁ । କୃଷ୍ଣ ଏକସ୍ଥାନରେ କହୁଛନ୍ତି, "ଆମେ କେବେ ନରବଳି ଦେଖି-ନାହୁଁ ।" ଧାର୍ମ୍ମିକ ବ୍ୟକ୍ତିମାନେ ଏହି ଭୟାନକ ପ୍ରଥା ଆଡ଼କୁ ଯାଉ ନ ଥିଲେ ।

ନିଜର ଇଷ୍ଟାନିଷ୍ଟ କିଛିହିଁ ନଥିଲା । ଥାଇ ଥିଲେ ମଧ୍ୟ ଯହିଁରେ ଲୋକହିତ ସାଧିତ ହୁଏ, ସେହି ପରାମର୍ଶ ଦେବାକୁ ସେ ଧର୍ମତଃ ବାଧ୍ୟ - ସେ ପରାମର୍ଶରେ ନିଜର କିଛି ସ୍ୱାର୍ଥ ସିଦ୍ଧି ଥିଲେ ମଧ୍ୟ ସେହି ପରାମର୍ଶ ଦେବାକୁ ବାଧ୍ୟ । ଏହି କାର୍ଯ୍ୟରେ ଲୋକଙ୍କ ହିତ ସାଧିତ ହେବ ସତ୍ୟ, କିନ୍ତୁ ଏଥିରେ ମୋର ମଧ୍ୟ କିଛି ସ୍ୱାର୍ଥ ସିଦ୍ଧି ଅଛି,- ଏପରି ପରାମର୍ଶ ଦେଲେ ଲୋକେ ମତେ ସ୍ୱାର୍ଥପର ମନେ କରିବେ-- ଅତଏବ ମୁଁ ଏପରି ପରାମର୍ଶ ଦେବି ନାହିଁ,- ଯେ ଏପରି ଭାବନ୍ତି, ସେଇହିଁ ଯଥାର୍ଥ ସ୍ୱାର୍ଥପର ଏବଂ ଅଧାର୍ମିକ, କାରଣ ସେ କେବଳ ନିଜ ମର୍ଯ୍ୟାଦା କଥା ଭାବିଲେ, ଲୋକଙ୍କ ହିତ ଭାବିଲେ ନାହିଁ । ଯେ ନିନ୍ଦା କଳଙ୍କ ସାଦରେ ମସ୍ତକରେ ବହନ କରି ଲୋକଙ୍କ ହିତସାଧନ କରନ୍ତି, ସେଇହିଁ ଆଦର୍ଶ ଧାର୍ମିକ । ଶ୍ରୀକୃଷ୍ଣ ସେହିପରି ଆଦର୍ଶ ଧାର୍ମିକ, ।

ଯୁଧିଷ୍ଠିର ସାବଧାନ ବ୍ୟକ୍ତି, ସହଜରେ ଜରାସନ୍ଧଙ୍କ ସହିତ ବିବାଦରେ ରାଜି ହେଲେ ନାହିଁ । କିନ୍ତୁ ଭୀମଙ୍କ ଦୃପ୍ତ ତେଜସ୍ୱୀ ଓ ଅର୍ଜ୍ଜୁନଙ୍କ ଅତିତେଜୋଗର୍ଭ ବାକ୍ୟରେ, ଓ କୃଷ୍ଣଙ୍କ ପରାମର୍ଶରେ ଶେଷରେ ତହିଁରେ ସମ୍ମତ ହେଲେ । ଭୀମାର୍ଜ୍ଜୁନ ଓ କୃଷ୍ଣ ଏହି ତିନିଜଣ ଜରାସନ୍ଧ ଜୟରେ ଯାତ୍ରାକଲେ । ଯାହାଙ୍କ ଅଗଣିତ ସେନାଙ୍କ ଭୟରେ ପ୍ରବଳ ପରାକ୍ରାନ୍ତ ବୃଷ୍ଣିବଂଶ ରୈବତକରେ ଆଶ୍ରୟ ଗ୍ରହଣ କରିଥିଲେ, ତିନି ଜଣ ମାତ୍ର ତାଙ୍କୁ ଜୟ କରିବାକୁ ଯାତ୍ରାକଲେ, ଏହା କିପରି ପରାମର୍ଶ ? ଏହି ପରାମର୍ଶ କୃଷ୍ଣଙ୍କର, ଏବଂ ଏହି ପରାମର୍ଶ କୃଷ୍ଣଙ୍କ ଆଦର୍ଶ ଚରିତ୍ରାନୁଯାୟୀ । ଜରାସନ୍ଧ ଦୁରାତ୍ମା, ଏଥିନିମିତ୍ତ ସେ ଦଣ୍ଡନୀୟ, କିନ୍ତୁ ତାଙ୍କ ସୈନିକମାନେ କି ଅପରାଧ କରିଛନ୍ତି ଯେ, ସେମାନଙ୍କ ବଧ ନିମନ୍ତେ ସୈନ୍ୟ ନେଇ ଯିବାକୁ ହେବ ? ଏରୂପ ସସୈନ୍ୟ ଯୁଦ୍ଧରେ କେବଳ ନିରପରାଧୀମାନଙ୍କର ହତ୍ୟା, ଆଉ ହୁଏତ ଅପ-

ରଧୀର ମଧ୍ୟ ନିଷ୍କୃତି; କାରଣ, ଜରାସନ୍ଧଙ୍କ ସୈନ୍ୟବଳ ବେଶୀ, ପାଣ୍ଡବସୈନ୍ୟ ସେମାନଙ୍କ ସମକକ୍ଷ ନ ହୋଇ ପାରନ୍ତି । କିନ୍ତୁ ସେତେବେଳର କ୍ଷତ୍ରିୟମାନଙ୍କର ଏହି ଧର୍ମ ଥିଲା ଯେ ଦ୍ୱୈରଥ୍ୟ ଯୁଦ୍ଧରେ ଆହୂତ ହେଲେ କେହି ବିମୁଖ ହୁଅନ୍ତେ ନାହିଁ । * ଅତଏବ କୃଷ୍ଣଙ୍କ ଅଭିସନ୍ଧି ଏହିଯେ, ଅନର୍ଥକ ଲୋକକ୍ଷୟ ନ କରି ସେମାନେ ତିନିଜଣ ମାତ୍ର ଜରାସନ୍ଧଙ୍କ ସମ୍ମୁଖୀନ ହୋଇ ତାଙ୍କୁ ଦ୍ୱୈରଥ୍ୟ ଯୁଦ୍ଧରେ ଆହୂତ କରିବେ—ତିନି ଜଣଙ୍କ ମଧ୍ୟରୁ ଏକଜଣଙ୍କ ସହିତ ଯୁଦ୍ଧ କରିବାକୁ ସେ ଅବଶ୍ୟ ସ୍ୱୀକୃତ ହେବେ । ସେତେବେଳେ ଯାହାର ଶାରୀରିକ ବଳ, ସାହସ ଓ ଶିକ୍ଷା ବେଶୀ, ସେଇ ଜିତିବ । ଏ ବିଷୟରେ ଭୀମସେନ ଯାକ ଶ୍ରେଷ୍ଠ । କିନ୍ତୁ ଯୁଦ୍ଧ ସମ୍ବନ୍ଧରେ ଏହିରୂପ ସଂକଳ୍ପ କରି ସେମାନେ ସ୍ନାତକ ବ୍ରାହ୍ମଣବେଶରେ ଗମନ କଲେ । ଏ ଛଦ୍ମବେଶ କାହିଁକି, ତାହା ବୁଝାଯାଏ ନାହିଁ । ଏହା ନୁହେଁ ଯେ, ଗୋପନରେ ଜରାସନ୍ଧଙ୍କୁ ଧରି ବଧ କରିବାର ସେମାନଙ୍କର ସଙ୍କଳ୍ପ ଥିଲା । ସେମାନେ ଶତ୍ରୁଭବରେ, ଦ୍ୱାରସ୍ଥ ଭେରୀ ସବୁ ଭଗ୍ନ କରି, ପ୍ରାକାର ଚୈତ୍ୟ ଚୂର୍ଣ୍ଣ କରି ଜରାସନ୍ଧ ଗୃହରେ ପ୍ରବେଶ କରିଥିଲେ । ଅତଏବ ଗୋପନ ଉଦ୍ଦେଶ୍ୟ ନୁହେଁ ଛଦ୍ମବେଶ କୃଷ୍ଣାର୍ଜ୍ଜୁନଙ୍କ ଅଯୋଗ୍ୟ । ଏହା ପରେ ଆଉ ଏକ କାଣ୍ଡ ତାହା ମଧ୍ୟ ଶୋଚନୀୟ ଓ କୃଷ୍ଣାର୍ଜ୍ଜୁନଙ୍କ ଅଯୋଗ୍ୟ ବୋଲି ବୋଧ ହୁଏ ଜରାସନ୍ଧଙ୍କ ସମ୍ମୁଖବର୍ତ୍ତୀ ହେଲେ ଭୀମାର୍ଜ୍ଜୁନ "ନିୟମସ୍ଥ" ହେଲେ ନିୟମସ୍ଥ ହେଲେ କଥା କହିବାର ନାହିଁ । ସେମାନେ କୌଣସି କଥା କହିଲେ ନାହିଁ । ସୁତରାଂ ଜରାସନ୍ଧ ସହିତ କଥା କହିବାର ଭାର କୃଷ୍ଣଙ୍କ ଉପରେ ପଡ଼ିଲା । କୃଷ୍ଣ କହିଲେ "ଏମାନେ ନିୟମସ୍ଥ, ବର୍ତ୍ତମାନ କଥା କହିବେ ନାହିଁ । ଅର୍ଦ୍ଧରାତ୍ର ଅତୀତ ହେଲେ ଆପଣଙ୍କ

* ତାଲ ପଦବୀ କ୍ଷତ୍ରିୟ ନ ଥିଲା ।

ସତ୍ୱର ଅଲାଗ କରିବେ," ଜରାସନ୍ଧ କୃଷ୍ଣଙ୍କ ବାକ୍ୟ ଶ୍ରବଣାନନ୍ତର ସେମାନଙ୍କୁ ଯଜ୍ଞାଳୟରେ ରଖି ସ୍ୱୀୟ ଗୃହକୁ ଗମନ କଲେ, ଏବଂ ଅର୍ଦ୍ଧରାତ୍ର ସମୟରେ ପୁନର୍ବାର ସେମାନଙ୍କ ସମୀପରେ ସମୁପସ୍ଥିତ ହେଲେ ।

ଏହା ମଧ୍ୟ ଗୋଟିଏ କଳ କୌଶଳ । କଳ କୌଶଳଟା ବଡ଼ ବିଶୁଦ୍ଧ ରକମର ନୁହେଁ-ଲୁଚୁଲୁଚି ଗୋଟାଏ । ଧର୍ମାତ୍ମାଙ୍କର ଏହା ଯୋଗ୍ୟ ନୁହେଁ । ଏହି କଳକୌଶଳ ଫିକର-ଫନ୍ଦିର ଉଦ୍ଦେଶ୍ୟଟା କଣ ? ଯେଉଁ କୃଷ୍ଣାର୍ଜୁନଙ୍କୁ ଏତେ ଦିନ ଆମ୍ଭେମାନେ ଧର୍ମର ଆଦର୍ଶ ରୂପେ ଦେଖି ଆସୁଅଛୁଁ, ହଠାତ୍ ସେମାନଙ୍କର ଏ ଅବନତି କାହିଁକି ? ଏହି ଲୁଚୁଲୁଚିର ଯଦି କୌଣସି ଉଦ୍ଦେଶ୍ୟ ଥାଏ, ତାହା ହେଲେ ବା ବୁଝି ପାରନ୍ତୁ ଯେ, ହଁ, ଅଭୀଷ୍ଟସିଦ୍ଧି ନିମିତ୍ତ, ଏମାନେ ଏହି ଖେଳ ଖେଳୁଛନ୍ତି, କଳ କୌଶଳ କରି ଶତ୍ରୁନିପାତ କରିବେ ବୋଲି ଏ ଉପାୟ ଅବଲମ୍ବନ କରିଛନ୍ତି । କିନ୍ତୁ ତାହା ହେଲେ ଏହା ମଧ୍ୟ କହିବାକୁ ବାଧ୍ୟ ହେବ ଯେ, ଏମାନେ ଧର୍ମାତ୍ମା ନୁହନ୍ତି, ଏବଂ କୃଷ୍ଣଚରିତକୁ ଆମ୍ଭେମାନେ ଯେରୂପ ବିଶୁଦ୍ଧ ମନେ କରିଥିଲୁ, ସେରୂପ ନୁହେ ।

ଯେଉଁମାନେ ଜରାସନ୍ଧ-ବଧ-ବୃତ୍ତାନ୍ତ ଆଦ୍ୟ-ପ୍ରାନ୍ତ ପାଠ କରି ନାହାନ୍ତି, ସେମାନେ ମନେ କରି ପାରନ୍ତି, କାହିଁକି ! ଏରୂପ ଲୁଚୁଲୁଚିର ଉଦ୍ଦେଶ୍ୟତ ପଦାରେ ପଡ଼ିଛି । ନିଶୀଥ ସମୟରେ ଯେତେବେଳେ ଜରାସନ୍ଧଙ୍କୁ ନିଃସହାୟ ଅବସ୍ଥାରେ ପାଇବେ, ସେତେବେଳେ, ତାଙ୍କୁ ହଠାତ୍ ଆକ୍ରମଣ କରି ବଧ କରିବାର ହେଲା ଏହି ଲୁଚୁଲୁଚିର ଉଦ୍ଦେଶ୍ୟ । ସେଥି ଯୋଗୁ ଏମାନେ ଯେପରି ନିଶୀଥ-କାଳରେ ତାଙ୍କ ସାକ୍ଷାତ୍ଲାଭ ହୁଏ, ଏପରି ଗୋଟାଏ କୌଶଳ

କଲେ । ବାସ୍ତବିକ, ଏପରି କୌଣସି ଉଦ୍ଦେଶ୍ୟ ସେମାନଙ୍କର ଥିଲା ନାହିଁ, ଏପରି କୌଣସି କାର୍ଯ୍ୟ ସେମାନେ କରି ନାହାନ୍ତି ! ନିଶୀଥ କାଳରେ ସେମାନେ ଜରାସନ୍ଧଙ୍କ ସାକ୍ଷାତ୍‌ଲାଭ କରିଥିଲେ ସତ୍ୟ, କିନ୍ତୁ ସେତେବେଳେ ଜରାସନ୍ଧଙ୍କୁ ଆକ୍ରମଣ କରି-ନାହାନ୍ତି ଆକ୍ରମଣ କରିବାର କୌଣସି ଚେଷ୍ଟା ମଧ୍ୟ କରି ନାହାନ୍ତି । ନିଶୀଥ-କାଳରେ ଯୁଦ୍ଧ କରି ନାହାନ୍ତି-ଦିନବେଳେ ଯୁଦ୍ଧ ହୋଇଥିଲା । ଗୋପନରେ ଯୁଦ୍ଧ କରି ନାହାନ୍ତି ପ୍ରକାଶ୍ୟରେ ସମସ୍ତ ପୌରବର୍ଗ ଓ ମଗଧବାସୀଙ୍କ ସମକ୍ଷରେ ଯୁଦ୍ଧ ହୋଇ ଥିଲା । ଏପରି ଯୁଦ୍ଧ ଏକ ଦିନ ହୋଇ ନାହିଁ, ଚୌଦ ଦିନ ଏପରି ଯୁଦ୍ଧ ହୋଇଥିଲା । ତିନିଜଣ ଯୁଦ୍ଧ କରି ନାହାନ୍ତି, ଜଣେ ଯୁଦ୍ଧ କରିଥିଲେ । ହଠାତ୍ ଆକ୍ରମଣ କରି ନାହାନ୍ତି ଜରାସନ୍ଧଙ୍କୁ ସେଥିନିମିତ୍ତ ପ୍ରସ୍ତୁତ ହେବାକୁ ବିଶେଷ ଅବକାଶ ଦେଇଥିଲେ-ଏପରିକି, ପାଛେ ମୁଁ ଯୁଦ୍ଧରେ ମରି ଯିବି, ଏହା ଭାବି ଯୁଦ୍ଧ ପୂର୍ବରେ ଜରାସନ୍ଧ ନିଜ ପୁତ୍ରକୁ ରାଜ୍ୟରେ ଅଭିଷେକ କରିଥିଲେ, ସେତେଦୂର ପର୍ଯ୍ୟନ୍ତ ଅବକାଶ ଦେଇଥିଲେ । ନିରସ୍ତ୍ର ହୋଇ ଜରାସନ୍ଧଙ୍କ ସହିତ ସାକ୍ଷାତ୍ କରିଥିଲେ । ଲୁଚି ଲୁଚି କିଛିହିଁ କରି ନାହାନ୍ତି । ଜରାସନ୍ଧ ପଚାରିବା ମାତ୍ରେ କୃଷ୍ଣ ନିଜ ନିଜର ଯଥାର୍ଥ ପରିଚୟ ଦେଇଥିଲେ । ଯୁଦ୍ଧ ସମୟରେ ଜରାସନ୍ଧଙ୍କ ପୁରୋହିତ ଯୁଦ୍ଧଜାତ ଅଙ୍ଗର ବେଦନା ଉପଶମର ଉପଯୋଗୀ ଔଷଧ ସବୁ ନେଇ ନିକଟରେ ରହିଥିଲେ, କୃଷ୍ଣଙ୍କ ପକ୍ଷରେ ସେପରି କିଛି ସାହାଯ୍ୟ ନଥିଲା, ତଥାପି "ଅନ୍ୟାୟ ଯୁଦ୍ଧ" ବୋଲି ସେମାନେ କୌଣସି ଆପତ୍ତି କରି ନାହାନ୍ତି । ଯୁଦ୍ଧ ସମୟରେ ଜରାସନ୍ଧ ଭୀମକର୍ତ୍ତୃକ ଅତିଶୟ ପୀଡ୍ୟମାନ ହେଲେ, ଦୟାମୟ କୃଷ୍ଣ ଭୀମଙ୍କୁ ସେତେ ପୀଡ଼ନ କରିବାକୁ ନିଷେଧ କରି-ଥିଲେ । ଯେଉଁମାନଙ୍କର ଏପରି ଚରିତ୍ର, ଏହି କାର୍ଯ୍ୟରେ ସେମାନେ

କାହିଁକି ଛଦ୍ମବେଶ କଲେ ? ଏହି ଉଦ୍ଦେଶ୍ୟଶୂନ୍ୟ ଛଦ୍ମବେଶ କି ସମ୍ଭବ ? ଅତି ନିର୍ବୋଧମାନେ, ଯେଉଁ ଶଠତାର କୌଣସି ଉଦ୍ଦେଶ୍ୟ ନାହିଁ, ତାହା କଲେ କରି ପାରନ୍ତି ; କିନ୍ତୁ କୃଷ୍ଣାର୍ଜୁନ ଆଉ ଯାହା ହୋଇଥାନ୍ତୁ, ନିର୍ବୋଧ ନହନ୍ତି, ଏହା ଶତ୍ରୁପକ୍ଷ ମଧ୍ୟ ସ୍ୱୀକାର କରନ୍ତି । ତେବେ ଏ ଛଦ୍ମବେଶର କଥା କେଉଁଠୁ ଆସିଲା ? ଯାହା ସହିତ ଏହି ସବୁ ଜରାସନ୍ଧବଧାଧ୍ୟାୟର ଅନୈକ୍ୟ, ସେ କଥା ଏହା ଭିତରକୁ କେଉଁଠାରୁ ଆସିଲା ? ଏହା କଣ କେହି ଯୋଡ଼ି ଦେଇଛନ୍ତି ? ଏହି କଥାଗୁଡ଼ିକ କଣ ପ୍ରକ୍ଷିପ୍ତ ? ଏହା ଛଡ଼ା ଏ କଥାର ଆଉ କୌଣସି ଉତ୍ତର ନାହିଁ । କିନ୍ତୁ ସେ କଥାଟା ଆଉଟିକିଏ ଭଲ କରି ବିଚାର କରି ଦେଖିବା ଉଚିତ ।

ଆମ୍ଭେମାନେ ଦେଖିଅଛୁଁ ଯେ, ମହାଭାରତରେ କୌଣସି ସ୍ଥାନରେ କୌଣସି ଗୋଟିଏ ଅଧ୍ୟାୟ, କୌଣସି ସ୍ଥାନରେ କୌଣସି ଗୋଟିଏ ପର୍ବାଧ୍ୟାୟ ପ୍ରକ୍ଷିପ୍ତ । ଯଦି ଗୋଟିଏ ଅଧ୍ୟାୟ ବା ଗୋଟିଏ ପର୍ବାଧ୍ୟାୟ ପ୍ରକ୍ଷିପ୍ତ ହୋଇ ପାରେ, ତେବେ ଗୋଟିଏ ଅଧ୍ୟାୟ ବା ଗୋଟିଏ ପର୍ବାଧ୍ୟାୟର ଅଂଶବିଶେଷ ବା କେତେକ ଶ୍ଳୋକ ତହିଁରେ ପ୍ରକ୍ଷିପ୍ତ ହୋଇ ପାରେ ନାହିଁ କି ? ବିଚିତ୍ର କିଛି ନୁହେଁ, ବରଂ ପ୍ରାଚୀନ ସଂସ୍କୃତ ଗ୍ରନ୍ଥ ସବୁରେ ଏହିରୂପ ଭୂରି ଭୂରି ହୋଇଅଛି, ଏହାହିଁ ପ୍ରସିଦ୍ଧ କଥା । ଏଇଥି ପାଇଁ ବେଦାଦିର ଏତେ ଭିନ୍ନ ଭିନ୍ନ ଶାଖା, ରାମାୟଣାଦି ଗ୍ରନ୍ଥର ଏତେ ଭିନ୍ନ ଭିନ୍ନ ପାଠ, ଏପରି କି, ଶକୁନ୍ତଳା ମେଘଦୂତ ପ୍ରଭୃତି ଆଧୁନିକ ( ଅପେକ୍ଷାକୃତ ଆଧୁନିକ ) ଗ୍ରନ୍ଥର ମଧ୍ୟ ଏତେ ବିବିଧ ପାଠ । ସବୁ ଗ୍ରନ୍ଥରେହିଁ ମୌଳିକ ଅଂଶ ଭିତରେ ଏହିପରି ଗୋଟାଏ ଗୋଟାଏ ବା ଦୁଇ ଚାରିଟା ପ୍ରକ୍ଷିପ୍ତ ଶ୍ଳୋକ ମଝିରେ ମଝିରେ ଦେଖି-ବାକୁ ମିଳେ—ମହାଭାରତର ମୌଳିକ ଅଂଶ ଭିତରେ ତାହା ମିଳିବ, ସେଥିରେ ବିଚିତ୍ର କ'ଣ ?

କିନ୍ତୁ ଯେଉଁ ଶ୍ଳୋକଟା ମୋର ମତରେ ବିରୋଧି, ସେଇଟାରେ ଯେ ପ୍ରକ୍ଷିପ୍ତ ବୋଲି ମୁଁ ବାଦ ଦେବି, ତାହା ହୋଇପାରେ ନାହିଁ କେଉଁଟି ପ୍ରକ୍ଷିପ୍ତ ନୁହେଁ, ତାହାର ନିଦର୍ଶନ ଦେଖି ପରୀକ୍ଷା କରି ଆବଶ୍ୟକ । ଯେଉଁଟାକୁ ମୁ ପ୍ରକ୍ଷିପ୍ତ ବୋଲି ତ୍ୟାଗ କରିବି, ମତେ ଅବଶ୍ୟ ଦେଖାଇ ଦେବାକୁ ହେବ ଯେ, ପ୍ରକ୍ଷିପ୍ତର ଚିହ୍ନ ସେଥିରେ ଅଛି, ଚିହ୍ନ ଦେଖି ମୁଁ ତାହା ପ୍ରକ୍ଷିପ୍ତ କହୁଅଛି ।

ଅତି ପ୍ରାଚୀନ କାଳରେ ଯାହା ପ୍ରକ୍ଷିପ୍ତ ହୋଇଥିଲା, ତାହା ଧରିବାର ଉପାୟ, ଆଭ୍ୟନ୍ତରିକ ପ୍ରମାଣ ଛଡ଼ା ଆଉ କିଛି ନାହିଁ । ଆଭ୍ୟନ୍ତରିକ ପ୍ରମାଣ ମଧ୍ୟରେ ଗୋଟିଏ ଶ୍ରେଷ୍ଠ ପ୍ରମାଣ – ଅସଙ୍ଗତି, ଅନୈକ୍ୟ ଯଦି ଦେଖେ ଯେ, କୌଣସି ପୋଥିରେ ଏପରି କୌଣସି କଥାଅଛି ଯେ, ସେ କଥା ଗ୍ରନ୍ଥର ଆଉ ସବୁ ଅଂଶର ବିରୋଧୀ, ସେତେବେଳେ ସ୍ଥିର କରିବାକୁ ହେବ ଯେ, ହୁଏତ ତାହା ଗ୍ରନ୍ଥ-କାରର ବା ଲିପିକାରର ଭ୍ରମପ୍ରମାଦବଶତଃ ଘଟି ଅଛି, ନଚେତ୍ ତାହା ପ୍ରକ୍ଷିପ୍ତ, କେଉଁଟି ଭ୍ରମପ୍ରମାଦ, ଆଉ କେଉଁଟି ପ୍ରକ୍ଷିପ୍ତ ତାହା ମଧ୍ୟ ସହଜରେ ନିରୂପଣ କରି ଯାଇ ପାରେ । ଯଦି ରାମାୟଣର କୌଣସି ପୋଥିରେ ଦେଖାଯାଏ, ଲେଖା ଅଛି, ରାମ ଉର୍ମ୍ମିଳାକୁ ବିବାହ କଲେ, ତେବେ ତତ୍‌କ୍ଷଣାତ୍ ସିଦ୍ଧାନ୍ତ କରିବି ଯେ, ଏଇଟା ଲିପିକାରର ଭ୍ରମପ୍ରମାଦ ମାତ୍ର । କିନ୍ତୁ ଯଦି ଦେଖାଯାଏ, । ଏପରି ଲେଖାଅଛି ଯେ, ରାମ ଉର୍ମ୍ମିଳାଙ୍କୁ ବିବାହ କରିବାରୁ ଲକ୍ଷ୍ମଣଙ୍କ ସହିତ ବିବାଦ ଉପସ୍ଥିତ ହେଲା, ତା ପରେ ରାମ, ଲକ୍ଷ୍ମଣଙ୍କୁ ଉର୍ମ୍ମିଳା ଛାଡ଼ି ଦେଇ ମିଟ୍ ମାଟ କଲେ, ସେତେବେଳେ ଆଉ କହି ପାରିବି ନାହିଁ ଯେ, ଏହା ଲିପିକାର ବା ଗ୍ରନ୍ଥକାରର-ଭ୍ରମପ୍ରମାଦ - ସେତେବେଳେ କହିବାକୁ ହେବ ଯେ, ଏ ଠିକଣ କୌଣସି ଭ୍ରାତୃସୌହାର୍ଦ୍ଦ-ରସରେ ସରକର ରଚନା, ସେହି

ପୋଥିରେ ପ୍ରକ୍ଷିପ୍ତ ହୋଇଅଛି । ବର୍ତ୍ତମାନ, ମୁଁ ଦେଖାଇଅଛି ଯେ, ଜରାସନ୍ଧ ବଧ ପର୍ବାଧ୍ୟାୟରେ ଯେଉଁ କେଇଟା କଥା ଆମର ଏଠାରେ ବକ୍ତବ୍ୟ, ତାହା ସେହି ପର୍ବାଧ୍ୟାୟର ଆଉ ସବୁ ଅଂଶର ସମ୍ପୂର୍ଣ୍ଣ ବିରୋଧୀ । ଆଉ ଏହା ମଧ୍ୟ ସ୍ପଷ୍ଟ ଯେ, ସେହି କଥା ଗୁଡ଼ିକ ଏପରି କଥା ନୁହେଁ ଯେ, ତାହା ଲିପିକାରର ବା ଗ୍ରନ୍ଥକାରର ଭ୍ରମପ୍ରମାଦ ବୋଲି ନିର୍ଦ୍ଦିଷ୍ଟ କରି ଯାଏ । ସୁତରାଂ ସେହି କଥା-ଗୁଡ଼ିକୁ ପ୍ରକ୍ଷିପ୍ତ ବୋଲି କହିବାର ଆମର ଅଧିକାର ଅଛି ।

ଏଥିରେ ମଧ୍ୟ ପାଠକ କହି ପାରନ୍ତି ଯେ, ଯେ ଏହି କଥାଗୁଡ଼ିକ ପ୍ରକ୍ଷିପ୍ତ କଲେ ସେ କି ଏହିପରି ଅସଂଲଗ୍ନ କଥା ପ୍ରକ୍ଷିପ୍ତ କଲେ କାହିଁକି ? ତାହାର ବା ଉଦ୍ଦେଶ୍ୟ କଣ ? ଏ କଥାର ମୀମାଂସା ଅଛି । ମୁଁ ପୁନଃ ପୁନଃ ବୁଝାଇଅଛି ଯେ, ମହାଭାରତରେ ତିନି ସ୍ତର ଦେଖାଯାଏ । ତୃତୀୟ ସ୍ତର ନାନା ବ୍ୟକ୍ତିଙ୍କ ଦ୍ୱାରା ଗଠିତ । କିନ୍ତୁ ଆଦିମ ସ୍ତର ଏକହାତରେ ଏବଂ ଦ୍ୱିତୀୟ ସ୍ତର ମଧ୍ୟ ଏକ ହାତରେ । ଏଇ ଦୁହେଁ ଯାକ ଶ୍ରେଷ୍ଠ କବି । କିନ୍ତୁ ସେମାନଙ୍କ ରଚନାପ୍ରଣାଳୀ ସ୍ପଷ୍ଟତଃ ଭିନ୍ନ ଭିନ୍ନ ପ୍ରକୃତିର, ଦେଖିଲେ ବୁଝାଯାଏ । ଯେ ଦ୍ୱିତୀୟ ସ୍ତରର ପ୍ରଣେତା, ତାଙ୍କ ରଚନାର କେତେଗୁଡ଼ିଏ ଲକ୍ଷଣ ଅଛି ଯୁଦ୍ଧପର୍ବ ଗୁଡ଼ିକରେ ତାଙ୍କର ବିଶେଷ୍ୟ ହାତ ଅଛି ସେହି ପର୍ବଗୁଡ଼ି-କର ଅଧିକାଂଶ ତାଙ୍କ ପ୍ରଣୀତ । ସେ ସବୁର ସମାଲୋଚନା ସମୟରେ ଏହା ସ୍ପଷ୍ଟ ବୁଝାଯିବ । ଏହି କବିଙ୍କର ରଚନାର ଅନ୍ୟାନ୍ୟ ଲକ୍ଷଣ ମଧ୍ୟରେ ଗୋଟିଏ ବିଶେଷ ଲକ୍ଷଣ ଏହି ଯେ କୃଷ୍ଣଙ୍କୁ ଚତୁର ଚୂଡ଼ାମଣି ରୂପେ ସଜାଇବାକୁ ବଡ଼ ଭଲପାନ୍ତି । ବୁଦ୍ଧିର କୌଶଳ, ସବୁ ଗୁଣ ଅପେକ୍ଷା ଏହାଙ୍କ ନିକଟରେ ଆଦର-ଣୀୟ । ଏପରି ଲୋକ ଏକାଳରେ ମଧ୍ୟ ବିଶେଷ ଦୁର୍ଲ୍ଲଭ ନୁହନ୍ତି ବର୍ତ୍ତମାନ ବି ବୋଧହୁଏ । ଅନେକ ସୁଶିକ୍ଷିତ ଉଚ୍ଚଶ୍ରେଣୀର ଲୋକ

ଅଛନ୍ତି ଯେ, କୌଶଳବିତ୍ ବୁଦ୍ଧିମାନ ଚତୁରହିଁ ସେମାନଙ୍କ ନିକଟରେ ମନୁଷ୍ୟତ୍ୱର ଆଦର୍ଶ। ଇଉରୋପୀୟ ସମାଜରେ ଏହି ଆଦର୍ଶ ଦତ୍ତ ପ୍ରିୟ-ବନ୍ଧୁଙ୍କୁ ଆଧୁନିକ diplomacy (କୂଟ-ରାଜନୀତି କୌଶଳ) ବିଦ୍ୟାର ସୃଷ୍ଟି। ବିସ୍ମାର୍କ ବିନେ ଜଗତରେ ପ୍ରଧାନ ମନୁଷ୍ୟ ଥିଲେ। ଥେମିସ୍ଟୋକ୍ଲିସଙ୍କ ସମୟରୁ ଆଜି ପର୍ଯ୍ୟନ୍ତ ଯେଉଁ-ମାନେ ଏହି ବିଦ୍ୟାରେ ପଟୁ, ସେହିମାନେହିଁ ଇଉରୋପରେ ମାନ୍ୟ-"Francis d' Assisi ବା Imitation of christ" ଗ୍ରନ୍ଥର ପ୍ରଣେତାଙ୍କୁ କିଏ ଚିହ୍ନେ। ମହାଭାରତର ବିଖ୍ୟାତ ସ୍ତର କବିଙ୍କର ମଧ୍ୟ ମନରେ ସେହିରୂପ ଚରମାଦର୍ଶ ଥିଲା। ଶ୍ରୀ କୃଷ୍ଣଙ୍କର ଈଶ୍ୱରତ୍ୱରେ ତାଙ୍କ ସଂପୂର୍ଣ୍ଣ ବିଶ୍ୱାସ। ତେଣୁ ସେ ପୁରୁଷୋତ୍ତମଙ୍କୁ କୌଶଳର ଶ୍ରେଷ୍ଠ ସଜାଇଛନ୍ତି। ସେ ମିଥ୍ୟା କଥା ଦ୍ୱାରା ଦ୍ରୋଣହତ୍ୟା ସମ୍ବନ୍ଧରେ ବିଖ୍ୟାତ ଉପନ୍ୟାସର ରଚୟିତା। ଜୟଦ୍ରଥବଧରେ ସୁଦର୍ଶନ ଚକ୍ରରେ ରବି ଆଚ୍ଛାଦନ। କର୍ଣ୍ଣାର୍ଜ୍ଜୁନଙ୍କ ଯୁଦ୍ଧରେ କର୍ଣ୍ଣଙ୍କ ରଥଚକ୍ର ପୃଥିବୀରେ ଯୋଡ଼ିପକାଇବା ଆଉ ଘୋଡ଼ା ବସାଇ ଦେବା, ଇତ୍ୟାଦି କୃଷ୍ଣକୃତ-ଅଦ୍ଭୁତ କୌଶଳର ସେ ରଚୟିତା। ବର୍ତ୍ତମାନ ଏହା କହିଲେ ଯଥେଷ୍ଟ ହେବ ଯେ, ଜରାସନ୍ଧବଧ-ପର୍ବାଧ୍ୟାୟରେ ଏହି ଅନର୍ଥକ ଏବଂ ଅସଂଲଗ୍ନ କୌଶଳ-ବିଷୟକ ପ୍ରକ୍ଷିପ୍ତ ଶ୍ଳୋକଗୁଡ଼ିକର ପ୍ରଣେତା ତାହାଙ୍କୁହିଁ ବିବେଚନା ହୁଏ, ଏବଂ ତାଙ୍କୁ ଏ ସବୁର ପ୍ରଣେତା ବିବେଚନା କଲେ ଉଦ୍ଦେଶ୍ୟ ସମ୍ବନ୍ଧରେ ଆଉ ବେଶୀ ଅନ୍ଧକାର ନଥାଏ, କୃଷ୍ଣଙ୍କୁ କୌଶଳମୟ କରାଇ ପ୍ରତିପନ୍ନ କରିବାହିଁ ତାଙ୍କର ଉଦ୍ଦେଶ୍ୟ। କେବଳ ଏତିକି ଉପରେ ନିର୍ଭର କରିବାକୁ ହେଲେ ହୁଏତ ମୁଁ ଏତେ କଥା କହନ୍ତି ନାହିଁ କିନ୍ତୁ ଜରାସନ୍ଧବଧ-ପର୍ବାଧ୍ୟାୟରେ ତାଙ୍କ ହାତ ଆହୁରି ଦେଖିବା।

## ସପ୍ତମ ପରିଚ୍ଛେଦ

## କୃଷ୍ଣ-ଜରାସନ୍ଧ-ସଂବାଦ

ନିଶୀଥକାଳରେ ଯଜ୍ଞାଗାରରେ ଜରାସନ୍ଧ ସ୍ନାତକବେଶଧାରୀ ତିନି ଜଣଙ୍କ ସଙ୍ଗେ ସାକ୍ଷାତ୍ କରି ସେମାନଙ୍କର ପୂଜା କଲେ । ଏଠାରେ କିଛି ପ୍ରକାଶ ନାହିଁ ଯେ, ସେମାନେ ଜରାସନ୍ଧଙ୍କ ପୂଜା ଗ୍ରହଣ କଲେ କି ନାହିଁ । ଆଉ ଗୋଟିଏ ସ୍ଥାନରେ ଅଛି । ମୂଳ ଉପରେ ଆଉଜଣେ କାରିଗରି କରିବାରୁ ଏହିପରି ଗୋଳଯୋଗ ଘଟି ଅଛି ।

ତତ୍ପରେ ସୌଜନ୍ୟ ବିନିମୟ ଉତ୍ତାରୁ ଜରାସନ୍ଧ ସେମାନଙ୍କୁ କହିବାକୁ ଲାଗିଲେ "ହେ ବିପ୍ରଗଣ ! ମୁଁ ଜାଣେ, ସ୍ନାତକ ବ୍ରତଧାରୀ ବିପ୍ରମାନେ ସଭାଗମନ ସମୟ ଭିନ୍ନ କେବେହେଁ ମାଲ୍ୟ * ବା ଚନ୍ଦନ ଧାରଣ କରନ୍ତି ନାହିଁ । ଆପଣମାନେ କିଏ ? ଆପଣମାନଙ୍କ ବସ୍ତ୍ର ରକ୍ତବର୍ଣ୍ଣ; ଅଙ୍ଗରେ ପୁଷ୍ପମାଲ୍ୟ ଓ ଅନୁଲେପନ

---

* ଲିଖିତ ଅଛି ଯେ, ମାଲ୍ୟ ସେମାନେ ଜଣେ ମାଲ୍ୟକାର ନିକଟରୁ ବଳପୂର୍ବକ କାଢ଼ି ନେଇଥିଲେ । ଯେଉଁମାନଙ୍କର ଏତେ ଐଶ୍ୱର୍ଯ୍ୟ ଯେ, ରାଜସୂୟର ଅନୁଷ୍ଠାନରେ ପ୍ରବୃତ୍ତ, ସେମାନଙ୍କୁ ତିନିଟା ମାଳା କିଣିବାର ଯେ କଉଡ଼ି ମିଳବ ନାହିଁ; ଏହା ଅତି ଅସମ୍ଭବ । ଯେଉଁମାନେ କପଟ ଦ୍ୟୂତାପହୃତ ରାଜ୍ୟହିଁ ଧର୍ମାନୁରୋଧରେ ପରିତ୍ୟାଗ କଲେ, ସେମାନେ ଡକେଇତି କରି ତିନିଖଣ୍ଡ ମାଳା ସଂଗ୍ରହ କରିବେ ଏହା ଅତି ଅସମ୍ଭବ । ଏ ସବୁ ଦ୍ୱିତୀୟ ସ୍ତରର କବିଙ୍କର ହାତ । ଦୁଷ୍ଟ ଛଦ୍ମବେଶଙ୍କର ବର୍ଣ୍ଣନାରେ ଏ ସବୁ କଥା ଭଲସାଜେ ।

ସୁଶୋଭିତ, ଭୁଜରେ ଜ୍ୟାଚିହ୍ନ ଲକ୍ଷିତ ହେଉଅଛି, ଆକାର ଦର୍ଶନରେ କ୍ଷତ୍ରତେଜର ସ୍ପଷ୍ଟ ପ୍ରମାଣ ମିଳୁଅଛି ; କିନ୍ତୁ ଆପଣମାନେ ବ୍ରାହ୍ମଣ ବୋଲି ପରିଚୟ ଦେଉ ଅଛନ୍ତି, ଅତଏବ ସତ୍ୟ କହନ୍ତୁ ଆପଣମାନେ କିଏ । ରାଜସମକକ୍ଷରେ ସତ୍ୟହିଁ ପ୍ରଶଂସନୀୟ; କି ନିମିତ୍ତ ଆପଣମାନେ ଦ୍ୱାର ଦେଇ ପ୍ରବେଶ ନ କରି, ନିର୍ଭୟରେ ଚୈତ୍ୟକ ପର୍ବତର ଶୃଙ୍ଗ ଭଗ୍ନ କରି ପ୍ରବେଶ କଲେ ? ବ୍ରାହ୍ମଣମାନେ ବାକ୍ୟଦ୍ୱାରା ବୀର୍ଯ୍ୟ ପ୍ରକାଶ କରି ଥାଆନ୍ତି, କିନ୍ତୁ ଆପଣମାନେ କାର୍ଯ୍ୟଦ୍ୱାରା ତାହା ପ୍ରକାଶ କରି ନିତାନ୍ତ ବିରୁଦ୍ଧାନୁଷ୍ଠାନ କରୁଅଛନ୍ତି । ଆହୁରି ମଧ୍ୟ ଆପଣମାନେ ମୋ ନିକଟକୁ ଆସିଅଛନ୍ତି, ମୁଁ ମଧ୍ୟ ବିଧି ପୂର୍ବକ ପୂଜା କରିଅଛି, କିନ୍ତୁ କି ନିମିତ୍ତ ପୂଜା ଗ୍ରହଣ କଲେ ନାହିଁ ? ବର୍ତ୍ତମାନ କି ନିମିତ୍ତ ଏଠାକୁ ଆଗମନ କରିଅଛନ୍ତି କହନ୍ତୁ ।"

ତଦୁତ୍ତରରେ କୃଷ୍ଣ ସ୍ନିଗ୍ଧଗମ୍ଭୀର (ମୌଳିକ ମହାଭାରତରେ କେଉଁଠି ହେଲେ ଦେଖିନାହିଁ ଯେ, କୃଷ୍ଣ ଚଞ୍ଚଳ ବା ରୁଷ୍ଟ ହୋଇ କୌଣସି କଥା କହିଲେ, ତାଙ୍କର ସମସ୍ତ ଶତ୍ରୁହିଁ ବଶୀଭୂତ) କହିଲେ, "ହେ ରାଜନ୍ ! ତୁମେ ଆମ୍ଭମାନଙ୍କୁ ସ୍ନାତକ ବ୍ରାହ୍ମଣ ବୋଲି ବୋଧ କରୁଅଛ, କିନ୍ତୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଏହି ତିନି ଜାତି ସ୍ନାତକ-ବ୍ରତ ଗ୍ରହଣ କରି ଥାନ୍ତି । ଏମାନଙ୍କ ବିଶେଷ ନିୟମ ଓ ଅବିଶେଷ ନିୟମ ଉଭୟ ଅଛି । କ୍ଷତ୍ରିୟ ଜାତି ବିଶେଷ ନିୟମୀ ହେଲେ ସମ୍ପତ୍ତିଶାଳୀ ହୁଏ । ପୁଷ୍ପଧାରୀ ନିଶ୍ଚୟ ଶ୍ରୀମାନ୍ ହୁଏ ବୋଲି ଆମେ ପୁଷ୍ପଧାରଣ କରି ଅଛୁଁ । କ୍ଷତ୍ରିୟ ବାହୁବଳରେହିଁ ବଳବାନ୍, ବାଗ୍‌ବୀର୍ଯ୍ୟଶାଳୀ ନୁହନ୍ତି ; ଏଥି ନିମିତ୍ତ ସେମାନଙ୍କର ଅପ୍ରଗଲ୍‌ଭ ବାକ୍ୟ ପ୍ରୟୋଗ କରିବା ନିର୍ଦ୍ଦିଷ୍ଟ ଅଛି ।"

ନଥାପ୍ରଭୃତି ଶାସ୍ତ୍ରୋକ୍ତ ଏ ଚତୁରର କଥା ଅଟେ, କିନ୍ତୁ କୃଷ୍ଣଙ୍କ ଯୋଗ୍ୟ କଥା ନୁହେଁ, ଛଦ୍ମବେଶ ଧର୍ମାତ୍ମାଙ୍କ କଥା ନୁହେଁ । କିନ୍ତୁ ଯେ ଛଦ୍ମବେଶ ଧାରଣ କରିଅଛି, ତାକୁ ଏହିପରି ବେଶ-ଉତ୍ତର କାର୍ଯ୍ୟତଃ ଦେବାକୁ ହୁଏ । ଛଦ୍ମବେଶରେ ଯଦି କ୍ଷତ୍ରିୟ ପ୍ରତି କଳଙ୍କ ସୃଷ୍ଟି ହୁଏ, ତେବେ, ଏହି ସବୁ ବାକ୍ୟ ପାଇଁ ସେ ଦାୟୀ । କୃଷ୍ଣଙ୍କ ଯେପରି ଚତୁର ବୃତ୍ତାନ୍ତ ସଜାଇବାକୁ ସେ ଚେଷ୍ଟା କରନ୍ତି, ଏହି ଉତ୍ତର ତାହାର ଅଙ୍ଗ ଅଟେ । କିନ୍ତୁ ଯାହା ହେଉ, ଦେଖା ଯାଉଅଛି ଯେ, ବ୍ରାହ୍ମଣ ବୋଲି ପ୍ରତାରଣା କରିବାର କୃଷ୍ଣଙ୍କର କୌଣସି ଉଦ୍ଦେଶ୍ୟ ନଥିଲା । କ୍ଷତ୍ରିୟ ବୋଲି ନିଜ ମାନଙ୍କୁ ସେ ସ୍ପଷ୍ଟ ସ୍ୱୀକାର କରୁଛନ୍ତି । କେବଳ ସେତିକି ନୁହେଁ, ସେମାନେ ଶତ୍ରୁଭାବରେ ଯୁଦ୍ଧାର୍ଥେ ଆସିଛନ୍ତି, ତାହା ମଧ୍ୟ ସ୍ପଷ୍ଟ କହୁଛନ୍ତି ।

"ବିଧାତା କ୍ଷତ୍ରିୟମାନଙ୍କର ବାହୁରେହିଁ ବଳ ପ୍ରଦାନ କରି ଅଛନ୍ତି । ହେ ରାଜନ୍ ! ଯଦି ତୁମର ଆମ୍ଭମାନଙ୍କର ବାହୁବଳ ଦେଖିବାର ବାସନା ଥାଏ, ତେବେ ବର୍ତ୍ତମାନ ଦେଖିବାକୁ ପାଇବ, ସନ୍ଦେହ ନାହିଁ । ହେ ବୃହଦ୍ରଥ ନନ୍ଦନ ! ଧୀର ବ୍ୟକ୍ତିମାନେ ଶତ୍ରୁ-ଗୃହରେ ଅପ୍ରକାଶ୍ୟ ଭାବରେ ଏବଂ ସୁହୃଦ ଗୃହରେ ପ୍ରକାଶ୍ୟ ଭାବରେ ପ୍ରବେଶ କରି ଥାନ୍ତି । ହେ ରାଜନ୍ ! ଆମ୍ଭେମାନେ ସ୍ୱକାର୍ଯ୍ୟ ସାଧନାର୍ଥ ଶତ୍ରୁଗୃହକୁ ଆଗମନ କରି ତଦ୍ଦତ୍ତ ପୂଜା ଗ୍ରହଣ କରୁନାହିଁ; ଏହା ଆମର ନିତ୍ୟବ୍ରତ ।"

କୌଣସି ଗୋଳମାଳ ନାହିଁ-ସବୁ କଥା ଗୁଡ଼ିକ ସ୍ପଷ୍ଟ । ଏହିଠାରେ ଅଧ୍ୟାୟ ଶେଷ ହେଲା, ଆଉ ସଙ୍ଗେ ସଙ୍ଗେ ଛଦ୍ମବେଶର ଅତ୍ତ୍ୱାଟା ତୁଟିଗଲା । ଦେଖାଗଲା ଯେ, ଛଦ୍ମବେଶର କୌଣସି ମାନେ ନାହିଁ । ତତ୍ପରେ, ପର ଅଧ୍ୟାୟରେ

କୃଷ୍ଣ ଯେଉଁସବୁ କଥା କହୁଛନ୍ତି, ତାହା ସମ୍ପୂର୍ଣ୍ଣରୂପେ ଭିନ୍ନ ପ୍ରକାରର । ତାଙ୍କର ଯେଉଁ ଉନ୍ନତ ଚରିତ୍ର ଏ ପର୍ଯ୍ୟନ୍ତ ଦେଖି ଆସିଅଛୁ, ଏ ସବୁ ତାଙ୍କର ଯୋଗ୍ୟ । ପୂର୍ବଅଧ୍ୟାୟରେ ଏବଂ ଏହି ଅଧ୍ୟାୟରେ ବର୍ଣ୍ଣିତ କୃଷ୍ଣଚରିତ୍ରରେ ଏତେ ଗୁରୁତର ପ୍ରଭେଦ ଯେ, ଦୁଇ ହାତର ବର୍ଣ୍ଣନା ବୋଲି ବିବେଚନା କରିବାର ଆମର ଅଧିକାର ଅଛି ।

ଜରାସନ୍ଧଙ୍କ ଗୃହକୁ କୃଷ୍ଣ ତାଙ୍କର ଶତ୍ରୁଗୃହ ବୋଲି ନିର୍ଦ୍ଦେଶ କରିବାରୁ ଜରାସନ୍ଧ କହିଲେ, "ମୁଁ କୌଣସି ସମୟରେ ତୁମ୍ଭ-ମାନଙ୍କ ସହିତ ଶତ୍ରୁତା ବା ତୁମ୍ଭମାନଙ୍କର ଅପକାର କରିଅଛି, ତାହା ମୋର ସ୍ମରଣ ହେଉ ନାହିଁ । ତେବେ କି ନିମିତ୍ତ ନିରପ-ରାଧରେ ତୁମେ ମତେ ଶତ୍ରୁଜ୍ଞାନ କରୁ ଅଛ ।"

ଉତ୍ତରରେ ଜରାସନ୍ଧଙ୍କ ସହିତ କୃଷ୍ଣଙ୍କର ଯଥାର୍ଥ ଯେଉଁ ଶତ୍ରୁତା, ତାହାହିଁ କହିଲେ । ତାଙ୍କ ନିଜ ସହିତ ଜରାସନ୍ଧଙ୍କ ଯେଉଁ ବିବାଦ, ତାହାର କିଛିମାତ୍ର ଉତ୍ଥାପନା କଲେ ନାହିଁ । ନିଜ ସହିତ ବିବାଦ ନିମିତ୍ତ କେହି ତାଙ୍କ ଶତ୍ରୁ ହୋଇ ପାରେ ନା, କାରଣ, ସେ ସର୍ବତ୍ର ସମଦର୍ଶୀ, ଶତ୍ରୁମିତ୍ର ସମାନ ଦେଖନ୍ତି । ସେ ପାଣ୍ଡବଙ୍କ ସୁହୃଦ୍ ଏବଂ କୌରବଙ୍କ ଶତ୍ରୁ, ଏହିପରି ଲୌକିକ ବିଶ୍ୱାସ । କିନ୍ତୁ ବାସ୍ତବିକ ମୌଳିକ ମହାଭାରତର ସମାଲୋ-ଚନାରେ, ଆମେ କ୍ରମଶଃ ଦେଖିବା ଯେ, ସେ ଧର୍ମ୍ମର ପକ୍ଷ, ଏବଂ ଅଧର୍ମ୍ମର ବିପକ୍ଷ ; ତଦ୍‌ଭିନ୍ନ ତାଙ୍କ ପକ୍ଷାପକ୍ଷକିଛି ମାତ୍ର ନାହିଁ । ବର୍ତ୍ତମାନ ସେ କଥା ଥାଉ । ଆମେ ଏଠାରେ ଦେଖିବା ଯେ, କୃଷ୍ଣ ଉପଯାଚକ ହୋଇ ଜରାସନ୍ଧଙ୍କୁ ଆତ୍ମପରିଚୟ ଦେଲେ, କିନ୍ତୁ ନିଜ ସହିତ ବିବାଦ ନିମିତ୍ତ ତାଙ୍କୁ ଶତ୍ରୁ ବୋଲି ନିର୍ଦ୍ଦେଶ କଲେ ନାହିଁ । ତେବେ ଯେ ମନୁଷ୍ୟ ଜାତିର ଶତ୍ରୁ, ସେ କୃଷ୍ଣଙ୍କ ଶତ୍ରୁ । କାରଣ,

ଆଦର୍ଶ ସ୍ୱରୂପ ସର୍ବଭୂତରେ ନିଜକୁ ଦେଖନ୍ତି, ତଦ୍ଭିନ୍ନ ତାଙ୍କର ଅନ୍ୟ ପ୍ରକାର ଆତ୍ମଜ୍ଞାନ ନାହିଁ । ତେଣୁ ସେ ଜରାସନ୍ଧଙ୍କ ପ୍ରଶ୍ନର ଉତ୍ତରରେ, ଜରାସନ୍ଧ ତାଙ୍କର ଯେଉଁ ଅପକାର କରିଥିଲା, ତାହାର ପ୍ରସଙ୍ଗ ମାତ୍ର ନ କରି ସାଧାରଣଙ୍କର ଯେଉଁ ଅନିଷ୍ଟ କରିଅଛି, କେବଳ ତାହାହିଁ କହିଲେ, କହିଲେ ଯେ, ତୁମେ ରାଜାମାନଙ୍କୁ ମହାଦେବଙ୍କ ନିକଟରେ ବଳି ଦେବା ନିମିତ୍ତ ବନ୍ଦୀ କରି ରଖିଅଛ । ତେଣୁ, ଯୁଧିଷ୍ଠିରଙ୍କ ନିୟୋଗ କ୍ରମେ, ଆମେ ତୁମ ପ୍ରତି ସମୁଦ୍ୟତ ହୋଇଅଛୁଁ । ଶେଷ ତାହା ବୁଝାଇ ଦେବା ନିମିତ୍ତ କୃଷ୍ଣ ଜରାସନ୍ଧଙ୍କୁ କହୁଅଛନ୍ତି :—

"ହେ ବୃହଦ୍ରଥନନ୍ଦନ ! ଆମ୍ଭମାନଙ୍କୁ ମଧ୍ୟ ତତ୍‌କୃତ ପାପରେ ପାପୀ ହେବାକୁ ହେବ, ଯେହେତୁ ଆମ୍ଭେମାନେ **ଧର୍ମଚାରୀ ଏବଂ ଧର୍ମରକ୍ଷଣରେ ସମର୍ଥ ।**"

ଏହି କଥାଟି ପ୍ରତି ପାଠକ ବିଶେଷ ମନୋଯୋଗୀ ହେବ, ଏହି ଭରସାରେ ଆମେ ତାହା ବଡ଼ ଅକ୍ଷରରେ ଲେଖିଲୁଁ । ଏହା ସୁବଚନ ବୋଲି ବୋଧ ହେଲେ ସୁଦ୍ଧା, କଥାଟି ଅତିଶୟ ଗୁରୁତର । ଯେ ଧର୍ମରକ୍ଷଣରେ ଓ ପାପର ଦମନରେ ସକ୍ଷମ ହୋଇ ମଧ୍ୟ ତାହା ନ କରେ, ସେ ସେହି ପାପର ସହକାରୀ । ଅତଏବ ଇହଲୋକରେ ସମସ୍ତଙ୍କର ସାଧ୍ୟ ମତେ ପାପର ନିବାରଣର ଚେଷ୍ଟା ନକରିବା ଅଧର୍ମ । "ମୁଁ ତ କୌଣସି ପାପ କରୁନାହିଁ, ଅନ୍ୟମାନେ କରୁଛନ୍ତି, ମୋର ସେଥିରେ ଦୋଷ କଣ ?" ଯେ ଏହିରୂପ ମନେ କରି ନିଶ୍ଚିନ୍ତ ହୋଇ ଥାଏ, ସେ ମଧ୍ୟ ପାପୀ । କିନ୍ତୁ ସଚରାଚର ଧର୍ମାତ୍ମାମାନେ ମଧ୍ୟ ସେହିରୂପ ଭାବ ନିଶ୍ଚିନ୍ତ ହୋଇ ରହନ୍ତି । ଏଥି ନିମିତ୍ତ ଜଗତରେ ଯେଉଁ ସବୁ ନରୋତ୍ତମ ଜନ୍ମଗ୍ରହଣ କରନ୍ତି, ସେମାନେ ଏହି ଧର୍ମରକ୍ଷା ଓ ପାପନିବାରଣବ୍ରତ ଗ୍ରହଣ କରିଥାନ୍ତି ।

ଶାକ୍ୟସିଂହ, ଯୀଶୁଖ୍ରୀଷ୍ଟ ପ୍ରଭୃତି ଏହାର ଉଦାହରଣ । ଏହି ଦାକ୍ୟହିଁ ସେମାନଙ୍କ ଜୀବନଚରିତର ମୂଳସୂତ୍ର । ଶ୍ରୀକୃଷ୍ଣଙ୍କର ମଧ୍ୟ ସେହି ବ୍ରତ । ଏହି ମହାବାକ୍ୟକୁ ସ୍ମରଣରେ ନ ରଖିଲେ ତାଙ୍କ ଜୀବନ ଚରିତ ବୁଝାଯିବ ନାହିଁ, ଜରାସନ୍ଧ, କଂସ, ଶିଶୁପାଳର ବଧ, ମହାଭାରତ ଯୁଦ୍ଧରେ ପାଣ୍ଡବ ପକ୍ଷରେ କୃଷ୍ଣକୃତ ସହାୟତା, କୃଷ୍ଣଙ୍କର ଏହି ସମସ୍ତ କାର୍ଯ୍ୟ ଏହି ମୂଳସୂତ୍ର ସାହାଯ୍ୟରେ ବୁଝି-ଯାଏ । ଏହାକୁହିଁ ପୁରାଣକାରମାନେ "ପୃଥ୍ୱୀର ଭାରହରଣ" କହନ୍ତି । ଖ୍ରୀଷ୍ଟକୃତ ହେଉ ବୁଦ୍ଧକୃତ ହେଉ, କୃଷ୍ଣକୃତ ହେଉ, ଏହି ପାପନିବାରଣ ବ୍ରତର ନାମ ଧର୍ମ୍ମପ୍ରଚାର । ଦୁଇ ପ୍ରକାରରେ ହୋଇ ପାରେ ଓ ହୋଇ ଥାଏ । ଏକ, ବାକ୍ୟତଃ ଅର୍ଥାତ୍ ଧର୍ମ୍ମ ସମ୍ବନ୍ଧୀୟ ଉପଦେଶଦ୍ୱାରା; ଦ୍ୱିତୀୟ କାର୍ଯ୍ୟତଃ ଅର୍ଥାତ୍ ଆପଣଙ୍କର କାର୍ଯ୍ୟ ସକଳକୁ ଧର୍ମ୍ମର ଆଦର୍ଶରେ ପରିଣତ କରିବା ଦ୍ୱାରା । ଖ୍ରୀଷ୍ଟ, ଶାକ୍ୟସିଂହ ଓ ଶ୍ରୀକୃଷ୍ଣ ଏହି ଦ୍ୱିବିଧ ଅନୁଷ୍ଠାନହିଁ କରିଥିଲେ । ତଥାପି ଶାକ୍ୟସିଂହ ଓ ଖ୍ରୀଷ୍ଟକୃତ ଧର୍ମ୍ମପ୍ରଚାର, ଉପଦେଶ ପ୍ରଧାନ; କୃଷ୍ଣକୃତ ଧର୍ମ୍ମପ୍ରଚାର କାର୍ଯ୍ୟପ୍ରଧାନ । ଏଥିରେ କୃଷ୍ଣଙ୍କରହିଁ ପ୍ରାଧାନ୍ୟ, କାରଣ, ବାକ୍ୟ ସହଜ, କାର୍ଯ୍ୟ କଠିନ ଏବଂ ଅଧିକତର ଫଳୋପଧାୟକ । ଯେ କେବଳ ମନୁଷ୍ୟ, ତାଙ୍କ ଦ୍ୱାରା ଏହା ସୁସମ୍ପନ୍ନ ହୋଇ ପାରେ କି ନାହିଁ, ସେ କଥା ବର୍ତ୍ତମାନ ଆମର ବିଚାର୍ଯ୍ୟ ନୁହେଁ ।

ଏଠାରେ ଗୋଟାଏ କଥାର ମୀମାଂସା କରିବା ଭଲ । କୃଷ୍ଣ-କୃତ କଂସ-ଶିଶୁପାଳାଦିଙ୍କ ବଧର ଉଲ୍ଲେଖ କଲି, ଏବଂ ଜରାସନ୍ଧଙ୍କୁ ବଧ କରିବା ନିମିତ୍ତହିଁ କୃଷ୍ଣ ଆସିଅଛନ୍ତି କହିଅଛି; କିନ୍ତୁ ପାପୀକୁ ବଧ କରିବା କଣ ଆଦର୍ଶ ମନୁଷ୍ୟର କାର୍ଯ୍ୟ ? ଯେ ସର୍ବଭୂତରେ, ସମଦର୍ଶୀ, ସେ ପାପାତ୍ମାକୁ ମଧ୍ୟ ଆତ୍ମବତ୍ ଦେଖି, ତାହାର ବ

ହିତାକାଙ୍କ୍ଷୀ ହେବେ ନାହିଁ କାହିଁକି ? ଏହା ମଧ୍ୟ ସତ୍ୟ ଯେ, ପାପୀକୁ ଜଗତରେ ରଖିଲେ ଜଗତର ମଙ୍ଗଳ ନାହିଁ, କିନ୍ତୁ ତାହାର ବଧସାଧନହିଁ କଣ ଜଗତ୍ ଉଦ୍ଧାରର ଏକମାତ୍ର ଉପାୟ ? ପାପୀକୁ ପାପରୁ ବିରତ କରି, ଧର୍ମରେ ପ୍ରବୃତ୍ତ ଦେଇ, ଜଗତର ଏବଂ ପାପୀର ଉଭୟର ମଙ୍ଗଳ ଏକ ସଙ୍ଗେ ସିଦ୍ଧ କରିବା ତାହା ଅପେକ୍ଷା ଉତ୍କୃଷ୍ଟ ଉପାୟ ନୁହେଁ କି ? ଆଦର୍ଶ ପୁରୁଷର ତାହାହିଁ ଅବଲମ୍ବନ କରିବା କଣ ଉଚିତ ନଥିଲା ? ଯିଶୁ, ଶାକ୍ୟସିଂହ ଓ ଚୈତନ୍ୟ ଏହିରୂପେ ପାପୀର ଉଦ୍ଧାରର ଚେଷ୍ଟା କରିଥିଲେ ।

ଏ କଥାରେ ଉତ୍ତର ଦୁଇଟି । ପ୍ରଥମ ଉତ୍ତର ଏହିଯେ, କୃଷ୍ଣଚରିତ୍ରରେ ଏ ଧର୍ମର ମଧ୍ୟ ଅଭାବ ନାହିଁ । ତେବେ କ୍ଷେତ୍ରଭେଦରେ ଫଳଭେଦ ମଧ୍ୟ ଘଟି ଅଛି । ଦୁର୍ଯ୍ୟୋଧନ ଓ କର୍ଣ୍ଣ, ଯେପରି ନିହତ ନ ହୋଇ ଧର୍ମପଥ ଅବଲମ୍ବନ ପୂର୍ବକ ଜୀବନରେ ଓ ରାଜ୍ୟରେ ତିଷ୍ଠିଥାନ୍ତି, ସେ ଚେଷ୍ଟା ସେ ବିଧିମତେ କରିଥିଲେ, ଏବଂ ସେହି କାର୍ଯ୍ୟ ସମ୍ବନ୍ଧରେ କହିଥିଲେ, ପୁରୁଷକାର ଦ୍ୱାରା ଯାହା ସାଧ୍ୟ, ତାହା ମୁଁ କରିପାରେ; କିନ୍ତୁ ଦୈବ ମୋର ଆୟତ୍ତ ନୁହେଁ । କୃଷ୍ଣ ମାନୁଷୀ ଶକ୍ତିଦ୍ୱାରା କାର୍ଯ୍ୟ କରୁଥିଲେ, ସେଥିନିମିତ୍ତ ଯାହା ସ୍ୱଭାବତଃ ଅସାଧ୍ୟ, ତହିଁରେ ଯତ୍ନ କରି ମଧ୍ୟ ସମସ୍ତ ସମୟରେ ନିଷ୍ଫଳ ହେଉଥିଲେ । ଶିଶୁପାଳର ମଧ୍ୟ ଶତ ଅପରାଧ କ୍ଷମା କରିଥିଲେ । ସେହି କ୍ଷମାର କଥାଟି ଅଲୌକିକ ଉପନ୍ୟାସରେ ଆବୃତ ହୋଇଅଛି । ଯଥାସ୍ଥାନରେ ଆମେ ତାହାର ତାତ୍ପର୍ଯ୍ୟ ବୁଝିବାକୁ ଚେଷ୍ଟା କରିବୁ । କଂସବଧର କଥା ପୂର୍ବେ କହିଅଛୁ ।

ପାଇଲେଟ୍‌କୁ ଖ୍ରୀଷ୍ଟିୟାନ କରିବା, ଖ୍ରୀଷ୍ଟଙ୍କ ପକ୍ଷରେ ଯେତେଦୂର ସମ୍ଭବ ଥିଲା, କଂସକୁ ଧର୍ମପଥରେ ଆନୟନ

କରିବା କୃଷ୍ଣଙ୍କ ପକ୍ଷରେ ଯେତେଦୂର ସମ୍ଭବ । ଜରାସନ୍ଧ ସମ୍ବନ୍ଧରେ ମଧ୍ୟ ତାହା କୁହାଯାଇ ପାରେ । ତଥାପି ଜରାସନ୍ଧ ସମ୍ବନ୍ଧରେ କୃଷ୍ଣଙ୍କ ସେ ବିଷୟରେ ଅଳ୍ପ କଥୋପକଥନ ହୋଇଥିଲା । ଜରାସନ୍ଧ କୃଷ୍ଣଙ୍କ ନିକଟରୁ ଧର୍ମୋପଦେଶ ଗ୍ରହଣ କରିବା ଦୂରେଥାଉ, ସେ କୃଷ୍ଣଙ୍କୁ ଧର୍ମବିଷୟକ ଗୋଟାଏ ଲେକ୍‌ଚର ଶୁଣାଇ ଦେଲା, ଯଥା—"ଦେଖ, ଧର୍ମ ବା ଅର୍ଥର ଉପଘାତ ହାରହିଁ ମନଃପୀଡ଼ା ଜନ୍ମେ; କିନ୍ତୁ ଯେଉଁ ବ୍ୟକ୍ତି କ୍ଷତ୍ରିୟକୁଳରେ ଜନ୍ମଗ୍ରହଣ କରି ଧର୍ମଜ୍ଞ ହୋଇମଧ୍ୟ ନିରପରାଧରେ ଲୋକର ଧର୍ମାର୍ଥରେ ଉପଘାତକରେ, ତାହାର ଇହକାଳରେ ଅମଙ୍ଗଳ ଓ ପରକାଳରେ ନରକରେ ଗମନ ହୁଏ, ସନ୍ଦେହ ନାହିଁ ।" ଇତ୍ୟାଦି ।

ଏ ସବୁ ସ୍ଥଳରେ ଧର୍ମୋପଦେଶ ହାରା କିଛି ହୁଏ ନାହିଁ, ଜରାସନ୍ଧକୁ ସତ୍‌ପଥରେ ଆଣିବାର ଉପାୟ ଥିଲା କି ନାହିଁ, ତାହା ଆମର ବୁଦ୍ଧିରେ ଆସେ ନାହିଁ । ଅତିମାନୁଷିକଶକ୍ତି ଗୋଟାଏ ପ୍ରଚାର କଲେ, ଯାହା ହେଲେ, ଗୋଟାଏ କାଣ୍ଡ ହୋଇ ପାରନ୍ତା । ସେପରି ଅନ୍ୟାନ୍ୟ ଧର୍ମପ୍ରଚାରକମାନଙ୍କ ମଧ୍ୟରେ ଅନେକ ଦେଖାଯାଏ, କିନ୍ତୁ କୃଷ୍ଣଚରିତ ଅତିମାନୁଷୀ ଶକ୍ତିର ବିରୋଧୀ । ଶ୍ରୀକୃଷ୍ଣ ଭୂତ ଛଡ଼େଇ, ରୋଗ ଭଲକରି, ବା କୌଣସି ପ୍ରକାର ବୁଜ୍‌ରୁକି ଖେଳିକି ହାରା ଧର୍ମପ୍ରଚାର ବା ନିଜର ଦେବତ୍ତ୍ୱ ସ୍ଥାପନ କରି ନାହାନ୍ତି ।

ତେବେ ଏହା ବୁଝିପାରେ ଯେ, ଜରାସନ୍ଧଙ୍କ ବଧ କୃଷ୍ଣଙ୍କ ଉଦ୍ଦେଶ୍ୟ ନୁହେଁ, ଧର୍ମର ରକ୍ଷା ଅର୍ଥାତ ନିର୍ଦ୍ଦୋଷୀ ଅଥଚ ପ୍ରପୀଡ଼ିତ ରାଜଗଣଙ୍କ ଉଦ୍ଧାରହିଁ ତାଙ୍କ ଉଦ୍ଦେଶ୍ୟ । ସେ ଜରାସନ୍ଧଙ୍କୁ ବୁଝାଇ ପରେ କହିଲେ, "ମୁଁ ବସୁଦେବ ନନ୍ଦନ କୃଷ୍ଣ ଆଉ ଏଇ

ଦୁଇ ଜଣ ପୁରୁଷ ପାଣ୍ଡୁତନୟ । ଆମେ ତୁମକୁ ଯୁଦ୍ଧରେ ଆହ୍ୱାନ
କରୁଅଛୁଁ ବର୍ତ୍ତମାନ ସମସ୍ତ ଭୂପତିମାନଙ୍କୁ ପରିତ୍ୟାଗ କର ନ
ହେଲେ ଯୁଦ୍ଧକରି ଯମାଳୟକୁ ଗମନ କର ।" ଅତଏବ ଜରାସନ୍ଧ
ରାଜଗଣଙ୍କୁ ଛାଡ଼ି ଦେଇଥିଲେ । କୃଷ୍ଣ ତାଙ୍କୁ ନିଷ୍କୃତି ଦେଇଥାନ୍ତେ ।
ଜରାସନ୍ଧ ସେଥିରେ ସମ୍ମତ ନ ହୋଇ ଯୁଦ୍ଧ କରିବାକୁ ଚାହିଁଲେ
ସୁତରାଂ ଯୁଦ୍ଧ ହେଲା । ଜରାସନ୍ଧ ଯୁଦ୍ଧ ଛଡ଼ା ଅନ୍ୟ କୌଣସିରୂପ
ଉତ୍ତରର ଯାଥାର୍ଥ୍ୟ ସ୍ୱୀକାର କରିବାର ନଥିଲା ।

ଦ୍ୱିତୀୟ ଉତ୍ତର ଏହି ଯେ ଯୀଶୁ ବା ବୁଦ୍ଧଙ୍କ ଜୀବନୀରେ
ପରହିତୋଦ୍ଧାରର ଚେଷ୍ଟା ଯେତେଟା ଦେଖାଯାଏ କୃଷ୍ଣଙ୍କ ଜୀବ-
ନରେ ସେତେଟା ଦେଖାଯାଏ ନାହିଁ ଏହା ସ୍ୱୀକାର୍ଯ୍ୟ । ଯିଶୁ ବା
ଶାକ୍ୟଙ୍କ ବ୍ୟବସାୟ ହେଲା ଧର୍ମ୍ମପ୍ରଚାର । କୃଷ୍ଣ ଧର୍ମ୍ମପ୍ରଚାର
କରିଛନ୍ତି ସତ୍ୟ କିନ୍ତୁ ଧର୍ମ୍ମପ୍ରଚାର ତାଙ୍କ ବ୍ୟବସାୟ ନୁହେଁ;
ତାହା ଆଦର୍ଶପୁରୁଷର ଆଦର୍ଶଜୀବନ ନିର୍ବାହର ଆନୁସଙ୍ଗିକ
ଫଳ ମାତ୍ର । କଥାଟା ଏପରି ଭାବରେ କହିବାହାରୁ କେହି ଯେପରି
ମନେ ନ କରନ୍ତି ଯେ ଯିଶୁଖ୍ରୀଷ୍ଟ ବା ଶାକ୍ୟସିଂହଙ୍କର ବା ଧର୍ମ୍ମ-
ପ୍ରଚାର ବ୍ୟବସାୟର କିଛିମାତ୍ର ଲାଘବ କରିବାକୁ ଇଚ୍ଛାକରେ ।
ଯିଶୁ ଏବଂ ଶାକ୍ୟ ଉଭୟଙ୍କୁହିଁ ମୁଁ ମନୁଷ୍ୟଶ୍ରେଷ୍ଠ ବୋଲି ଭକ୍ତି
କରେ ଏବଂ ସେମାନଙ୍କ ଚରିତ୍ର ଆଲୋଚନା କରି ସେଥିରୁ ଜ୍ଞାନ
ଲାଭ କରିବାର ଭରସା କରେ । ଧର୍ମ୍ମପ୍ରଚାରକର ବ୍ୟବସାୟ
(ବ୍ୟବସାୟ ଅର୍ଥ ଏଠାରେ ଯେଉଁ କର୍ମ୍ମର ଅନୁଷ୍ଠାନରେ ଆମ୍ଭେ-
ମାନେ ସର୍ବଦା ପ୍ରବୃତ୍ତ) ଆଉ ସବୁ ବ୍ୟବସାୟଠାରୁ ଶ୍ରେଷ୍ଠ ବୋଲି
ଜାଣେ । କିନ୍ତୁ ଯେ ଆଦର୍ଶ ମନୁଷ୍ୟ ତାଙ୍କର ତାହା ବ୍ୟବସାୟ
ହୋଇପାରେ ନାହିଁ । କାରଣ ସେ ଆଦର୍ଶ ମନୁଷ୍ୟ ମନୁଷ୍ୟର
ଯେତେ ପ୍ରକାର ଅନୁଷ୍ଠେୟ କର୍ମ୍ମ ଅଛି ସମସ୍ତହିଁ ତାଙ୍କର ଅନୁ-

ଶ୍ରେଷ୍ଠ । କୌଣସି କର୍ମରେ ତାଙ୍କର "ବ୍ୟବସାୟ ନାହିଁ," ଅର୍ଥାତ୍ ଅନ୍ୟକର୍ମ ଅପେକ୍ଷା ପ୍ରାଧାନ୍ୟ ଲାଭ କରିପାରେ ନାହିଁ । ଯିଶୁ ବା ଶାକ୍ୟସିଂହ ଆଦର୍ଶ ପୁରୁଷ ନୁହନ୍ତି, କିନ୍ତୁ ମନୁଷ୍ୟ-ଶ୍ରେଷ୍ଠ । ମନୁଷ୍ୟର ଶ୍ରେଷ୍ଠ ବ୍ୟବସାୟ ଅବଲମ୍ବନରେ ସେମାନଙ୍କର ବିଧେୟ, ଏବଂ ତାହା ଅବଲମ୍ବନ କରି ସେମାନେ ଲୋକହିତ ସାଧନ କରି ଯାଇଅଛନ୍ତି ।

ମୋର, ସମସ୍ତ ଶିକ୍ଷିତ ପାଠକ ଯେ କଥାଟା ବୁଝିଛନ୍ତି, ଏପରି ମୋର ବୋଧ ହେଉ ନାହିଁ । ବୁଝିବାରେ ଗୋଟାଏ ପ୍ରତି-ବନ୍ଧକ ଅଛି । ଆଦର୍ଶ ପୁରୁଷଙ୍କ କଥା କହୁଅଛି । ଅନେକ ଶିକ୍ଷିତ ପାଠକ "ଆଦର୍ଶ" ଶବ୍ଦଟି "Ideal" ଶବ୍ଦ ଦ୍ୱାରା ଅନୁବାଦ କରିବେ । ଅନୁବାଦ ମଧ୍ୟ ଦୁଷ୍ୟ ହେବନାହିଁ । ଏଣେ ଗୋଟାଏ (ଖ୍ରୀଷ୍ଟିୟାନ ଆଦର୍ଶ) "Christian Ideal" ଅଛି । ଖ୍ରୀଷ୍ଟିୟା-ନଙ୍କ ଆଦର୍ଶ ପୁରୁଷ ଯିଶୁ । ଆମ୍ଭେମାନେ ବାଲ୍ୟକାଳରୁ ଖ୍ରୀଷ୍ଟିୟାନ ଜାତିର ସାହିତ୍ୟ ଅଧ୍ୟୟନ କରି ସେହି ଆଦର୍ଶଟି ହୃଦୟଙ୍ଗମ କରିଅଛୁଁ । ଆଦର୍ଶ ପୁରୁଷ କଥା ଉଠିଲେହିଁ ସେହି ଆଦର୍ଶର କଥା ମନେ ପଡେ । ଯେଉଁ ଆଦର୍ଶ ସେହି ଆଦର୍ଶ ସହିତ ମିଳେନାହିଁ, ତାହାଙ୍କୁ ଆଦର୍ଶ ବୋଲିଗ୍ରହଣ କରିପାରୁନା । ଖ୍ରୀଷ୍ଟ ପତିତୋଦ୍ଧାରୀ; କୌଣସି ଦୁରାତ୍ମାକୁ ସେ ପ୍ରାଣରେ ନଷ୍ଟ କରି ନାହାନ୍ତି, କରିବାର କ୍ଷମତା ମଧ୍ୟ ରଖନ୍ତେ ନାହିଁ । ଶାକ୍ୟସିଂହ ବା ଚୈତନ୍ୟଙ୍କଠାରେ ଆମେ ସେହି ଗୁଣ ଦେଖିବାକୁ ପାଉଁ, ଏଥିନିମିତ୍ତ ଏମାନଙ୍କୁ ଆମେ ଆଦର୍ଶ ପୁରୁଷ ବୋଲି ଗ୍ରହଣ କରିବାକୁ ପ୍ରସ୍ତୁତ ଅଛୁଁ କିନ୍ତୁ କୃଷ୍ଣ ପତିତପାବନ ନାମ ଧରି ମଧ୍ୟ, ପ୍ରଧାନତଃ ପତିତ-ନପାଶ ବୋଲି ଇତିହାସରେ ପରିଚିତ । ସୁତରାଂ ତାଙ୍କୁ ଆଦର୍ଶ ପୁରୁଷ ବୋଲି ଆମେ ହଠାତ୍ ବୁଝି ପାରୁ ନାହିଁ । କିନ୍ତୁ ଆମର ଗୋଟିଏ କଥା ବିଚାର କରି

ଦେଖିବା ଉଚିତ। ଏହି Christian Ideal (ଖ୍ରୀଷ୍ଟିୟାନ ଆଦର୍ଶ) କଣ ଯଥାର୍ଥ ମାନୁଷ୍ୟତ୍ୱର ଆଦର୍ଶ ? ସବୁ ଜାତିର ଜାତୀୟ ଆଦର୍ଶ କଣ ସେହିରୂପ ହେବ ?

ଏହି ପ୍ରଶ୍ନରୁ ଆଉ ଗୋଟିଏ ପ୍ରଶ୍ନ ଉଠେ-ହିନ୍ଦୁର ପୁଣି ଜାତୀୟ ଆଦର୍ଶ ଅଛି ନା କଣ?Hindu Ideal (ହିନ୍ଦୁ ଆଦର୍ଶ) ଅଛି ନା କଣ ? ଯଦି ଥାଏ, ତେବେ କିଏ। କଥାଟା ଶିକ୍ଷିତ ହିନ୍ଦୁମଣ୍ଡଳୀ-ମଧ୍ୟରେ ପଚରା ଗଲେ ଅନେକଙ୍କରହିଁ ମସ୍ତକକଣ୍ଡୂୟନରେ ପ୍ରବୃତ୍ତ ହେବାର ସମ୍ଭାବନା। କେହି ହୁଏତ ଜଟାବଲ୍କଲଧାରୀ ଶୁଭ୍ରଶ୍ମଶ୍ରୁ-ବିଭୂଷିତ ବ୍ୟାସ ବଶିଷ୍ଠାଦି ଋଷିମାନଙ୍କୁ ଧରି ଉଡ଼ା ଦେଟରା କରିବେ କେହି ହୁଏତ କହି ଉଠିବେ, "ସେ ଗୁଡ଼ିକ ଜିନିଷ ନାହିଁ।" ନାହିଁ ଏଟା ଠିକ୍ ଥିଲେ ଆମର ଏପରି ଦୁର୍ଦ୍ଦଶା ହୁଅନ୍ତା କାହିଁକି ? କିନ୍ତୁ ଦିନେଥିଲା। ସେତେବେଳେ ହିନ୍ଦୁ ପୃଥିବୀର ଶ୍ରେଷ୍ଠ ଜାତି। ସେ ଆଦର୍ଶ ହିନ୍ଦୁ କିଏ ? ଏହାର ଉତ୍ତର ମୁଁ ଯେରୂପ ବୁଝିଅଛି, ତାହା ପୂର୍ବେ ବୁଝାଇ ଅଛି। ରାମଚନ୍ଦ୍ରାଦି କ୍ଷତ୍ରିୟମାନେ ସେହି ଆଦର୍ଶ ପ୍ରତିମାର ନିକଟବର୍ତ୍ତୀ କିନ୍ତୁ ଯଥାର୍ଥ ହିନ୍ଦୁ ଆଦର୍ଶ ଶ୍ରୀକୃଷ୍ଣ ସେଇହିଁ ଯଥାର୍ଥ ମାନୁଷ୍ୟତ୍ୱର ଆଦର୍ଶ—ଖ୍ରୀଷ୍ଟ ପ୍ରଭୃତିରେ ସେରୂପ ଆଦର୍ଶର ସମ୍ପୂର୍ଣ୍ଣତା ପାଇବାର ସମ୍ଭାବନା ନାହିଁ।

କାହିଁକି, ତାହା କହୁଅଛି, ମନୁଷ୍ୟତ୍ୱ କଣ ଧର୍ମତତ୍ତ୍ୱରେ ତାହା ବୁଝାଇବାର ଚେଷ୍ଟା କରୁଅଛି। ମନୁଷ୍ୟର ସମସ୍ତ ବୃତ୍ତିଗୁଡ଼ିକର ସମ୍ପୂର୍ଣ୍ଣ ସ୍ଫୂର୍ତ୍ତି ଓ ସାମଞ୍ଜସ୍ୟରେ ମନୁଷ୍ୟତ୍ୱ। ଯାହାଙ୍କଠାରେ ସେ ସବୁର ଚରମ ସ୍ଫୂର୍ତ୍ତି ଓ ସାମଞ୍ଜସ୍ୟ ଘଟିଅଛି, ସେଇହିଁ ଆଦର୍ଶ ମନୁଷ୍ୟ ଖ୍ରୀଷ୍ଟଙ୍କ, ଠାରେ ତାହା ନାହିଁ—ଶ୍ରୀକୃଷ୍ଣଙ୍କଠାରେ ତାହା ଅଛି। ଯିଶୁଙ୍କୁ ଯଦି ରୋମକ ସମ୍ରାଟ୍ ୟିହୁଦାର ଶାସନକର୍ତ୍ତୃତ୍ୱରେ ନିଯୁକ୍ତ କରିଥାନ୍ତି ତେବେ କଣ ସେ ସୁଶାସନ କରି ପାରିଥାନ୍ତେ ?

ତାହା ପାରନ୍ତେ ନାହିଁ—କାରଣ ରାଜକାର୍ଯ୍ୟ ନିମିତ୍ତ ଯେଉଁ ସବୁ ବୃତ୍ତିଗୁଡ଼ିକ ପ୍ରୟୋଜନୀୟ ତାହା ତାଙ୍କର ଅନୁଶୀଳନ ହୋଇ ନାହିଁ ଅଥଚ ଏରୂପ ଧର୍ମାତ୍ମା ବ୍ୟକ୍ତି ରାଜ୍ୟରେ ଶାସନ କର୍ତ୍ତା ହେଲେ ସମାଜର ଅନନ୍ତ ଅମଙ୍ଗଳ । ପକ୍ଷାନ୍ତରେ ଶ୍ରୀକୃଷ୍ଣ ଯେ ସର୍ବଶ୍ରେଷ୍ଠ, ମନ୍ତ୍ରଜ୍ଞ ତାହା ପ୍ରସିଦ୍ଧ, ଶ୍ରେଷ୍ଠ ମନ୍ତ୍ରଜ୍ଞ ବୋଲି ସେ ମହାଭାରତରେ ଭୂରି ଭୂରି ବର୍ଣ୍ଣିତ ହୋଇଛନ୍ତି ଏବଂ ଯୁଧିଷ୍ଠିର ବା ଉଗ୍ରସେନ ଶାସନ କାର୍ଯ୍ୟରେ ତାଙ୍କ ପରାମର୍ଶ ଭିନ୍ନ କୌଣସି ଗୁରୁତର କାର୍ଯ୍ୟ କରନ୍ତି ନାହିଁ । ଏହିରୂପେ କୃଷ୍ଣ ନିଜେ ରଜା ନ ହୋଇ ମଧ୍ୟ ପ୍ରଜାଙ୍କର ଅଶେଷ ମଙ୍ଗଳସାଧନ କରିଥିଲେ—ଏଇ ଜରାସନ୍ଧର ବନ୍ଦୀ ମାନଙ୍କମୁକ୍ତି ତାହାର ଏକ ଉଦାହରଣ । ପୁନଶ୍ଚ ଅନେକର ଯହୁ ଯୁହୂଦ ମାନେ ରୋମକଙ୍କର ଅତ୍ୟାଚାରପୀଡ଼ିତ ହୋଇ ସ୍ୱାଧୀନତା ପାଇଁ ଉଠି ଯିଶୁଙ୍କୁ, ସେନାପତିତ୍ୱରେ ବରଣ କରନ୍ତେ ଯିଶୁ କଣ କରିଥାନ୍ତେ ? ଯୁଦ୍ଧରେ ତାଙ୍କର ଶକ୍ତି ଥିଲା ନାହିଁ ବା ପ୍ରବୃତ୍ତି ମଧ୍ୟ ଥିଲା ନାହିଁ । "କାଇସରଙ୍କ ପାଉଣା କାଇସରଙ୍କୁ ଦିଅ" ବୋଲି କହି ସେ ପ୍ରସ୍ଥାନ କରିଥାନ୍ତେ କୃଷ୍ଣମଧ୍ୟ ଯୁଦ୍ଧରେ ପ୍ରବୃତ୍ତିଶୂନ୍ୟ--କିନ୍ତୁ ଧର୍ମାର୍ଥ ଯୁଦ୍ଧ ବି ଅଛି । ଧର୍ମାର୍ଥ ଯୁଦ୍ଧ ଉପସ୍ଥିତ ହେଲେ ଅଗତ୍ୟା ପ୍ରବୃତ୍ତ ହୁଅନ୍ତେ । ଯୁଦ୍ଧରେ ପ୍ରବୃତ୍ତ ହେଲେ ସେ ଅଜେୟ ଥିଲେ । ଯିଶୁ ଅଶିକ୍ଷିତ, କୃଷ୍ଣ ସର୍ବଶାସ୍ତ୍ରବିତ୍ । ଅନ୍ୟାନ୍ୟ ଗୁଣ ସମ୍ବନ୍ଧରେ ମଧ୍ୟ ସେହି ରୂପ ଉଭୟେହିଁ ଶ୍ରେଷ୍ଠ ଧାର୍ମିକ ଓ ଧର୍ମଜ୍ଞ । ଅତଏବ କୃଷ୍ଣହିଁ ଯଥାର୍ଥ ଆଦର୍ଶମନୁଷ୍ୟ--"Christian Ideal"(ଖ୍ରୀଷ୍ଟାନ ଆଦର୍ଶ)ଅପେକ୍ଷା "Hindu Ideal" ହିନ୍ଦୁ ଆଦର୍ଶ ଶ୍ରେଷ୍ଠ । ଇଦୃଶ ସର୍ବଗୁଣ ସମ୍ପନ୍ନ ଆଦର୍ଶମନୁଷ୍ୟ କାର୍ଯ୍ୟବିଶେଷନିମିତ୍ତ ଜୀବନ ସମର୍ପଣ କରି ପାରନ୍ତି ନାହିଁ । ତାହା ହେଲେ ଇତର କାର୍ଯ୍ୟ ଗୁଡ଼ିକ ଅନୁଷ୍ଠିତ

ଅଥଚ ଅସାମଞ୍ଜସ୍ୟର ସହିତ ଅନୁଷ୍ଠିତ ହୁଏ, ଲୋକଚରିତ୍ର ଉଦାର ଅବସ୍ଥା ଭେଦରେ ଶିକ୍ଷା ଭେଦରେ ଭିନ୍ନ ଭିନ୍ନ କର୍ମ ଓ ଭିନ୍ନ ଭିନ୍ନ ସାଧନରେ ଅଧିକାରୀ; ଆଦର୍ଶ ମନୁଷ୍ୟ ସବୁ ଶ୍ରେଣୀରହିଁ ଆଦର୍ଶ ହେବା ଉଚିତ । ଏଥି ନିମନ୍ତେ ଶ୍ରୀକୃଷ୍ଣଙ୍କର ଶାକ୍ୟସିଂହ ଯିଶୁ ବା ଚୈତନ୍ୟଙ୍କ ପରି ସନ୍ୟାସ ଗ୍ରହଣ ପୂର୍ବକ ଧର୍ମ ପ୍ରଚାର ବ୍ୟବସାୟ ରୂପେ ଗ୍ରହଣ କରିବା ଅସମ୍ଭବ । କୃଷ୍ଣ ସଂସାରୀ ଓ ଗୃହୀ ରାଜନୀତିଜ୍ଞ, ଯୋଦ୍ଧା, ଦଣ୍ଡ ପ୍ରଣେତା ତପସ୍ୱୀ ଏବଂ ଧର୍ମ ପ୍ରଚାରକ ସଂସାରୀ ଓ ଗୃହୀମାନଙ୍କର, ରାଜାମାନଙ୍କର, ଯୋଦ୍ଧାମାନଙ୍କର ରାଜପୁରୁଷମାନଙ୍କର ତପସ୍ୱୀମାନଙ୍କର ଧର୍ମବେତ୍ତାମାନଙ୍କର ଏବଂ ଏକାଧାରରେ ସର୍ବାଙ୍ଗୀଣ ମନୁଷ୍ୟତ୍ୱର ଆଦର୍ଶ । ଜରାସନ୍ଧାଦି ବଧ ଆଦର୍ଶ ରାଜପୁରୁଷ ଓ ଦଣ୍ଡପ୍ରଣେତାଙ୍କ ଅବଶ୍ୟ ଅନୁଷ୍ଠେୟ । ଏହାହିଁ Hindu Ideal ଅସମ୍ପୂର୍ଣ୍ଣ ନୋହିଁ ବୌଦ୍ଧ ଓ ଖ୍ରୀଷ୍ଟଧର୍ମ ତାହାର ଆଦର୍ଶ ପୁରୁଷଙ୍କୁ ଆଦର୍ଶ ସ୍ଥାନରେ ବସାଇଲେ ସମ୍ପୂର୍ଣ୍ଣ ନୋହିଁ; ହିନ୍ଦୁ ଧର୍ମ ତାହାର ଆଦର୍ଶ ପୁରୁଷଙ୍କୁ ଆମେ ବୁଝି ପାରିବା ନାହିଁ ।

କିନ୍ତୁ ବୁଝିବାର ବିଶେଷ ପ୍ରୟୋଜନ ହୋଇଅଛି, କାରଣ, ଏହା ଭିତରେ ଆଜି ଗୋଟାଏ ବିସ୍ମୟକର କଥା ଅଛି କି ଖ୍ରୀଷ୍ଟଧର୍ମାବଲମ୍ବୀଙ୍କର ଇଉରୋପରେ, କି ହିନ୍ଦୁଧର୍ମାବଲମ୍ବୀଙ୍କର ଭାରତ ବର୍ଷରେ, ଆଦର୍ଶର ଠିକ୍ ବିପରୀତ ଫଳ ଫଳିଅଛି । ଖ୍ରୀଷ୍ଟୀୟ ଆଦର୍ଶ ପୁରୁଷ, ବିନୀତ, ନିରୀହ, ନିର୍ବିରୋଧ ସନ୍ୟାସୀ ; ବର୍ତ୍ତମାନର ଖ୍ରୀଷ୍ଟିୟାନ ଠିକ୍ ବିପରୀତ । ଇଉରୋପ ବର୍ତ୍ତମାନ ଐହିକ ସୁଖରତ ସଶସ୍ତ୍ର ଯୋଦ୍ଧୃବର୍ଗଙ୍କ ବିସ୍ତୀର୍ଣ୍ଣ ଶିବିର ମାତ୍ର । ହିନ୍ଦୁଧର୍ମର ଆଦର୍ଶ ପୁରୁଷ ସର୍ବକର୍ମକୃତ୍-ବର୍ତ୍ତମାନର ହିନ୍ଦୁ ସର୍ବକର୍ମରେ ଅକର୍ମା । ଏରୂପ ଫଳବୈପରୀତ୍ୟ ଘଟିଲା କାହିଁକି ? ଉତ୍ତର ସହଜ,—ଲୋକଙ୍କ ଚରିତ୍ରରୁ ଉଭୟ ଦେଶରେହିଁ ସେହି ପ୍ରାଚୀନ ଆଦର୍ଶ ଲୁପ୍ତ ହୋଇ ଅଛି । ଉଭୟ ଦେଶରେହିଁ ଏକ ସମୟରେ

ସେହି ଆଦର୍ଶ ଦିନେ ପ୍ରବଳ ଥିଲା—ପ୍ରାଚୀନ ଖ୍ରୀଷ୍ଟିୟାନ ମାନଙ୍କ ଧର୍ମପରାୟଣତା ଓ ସହିଷ୍ଣୁତା, ଓ ପ୍ରାଚୀନ ହିନ୍ଦୁ ରାଜଗଣ ଓ ରାଜପୁରୁଷ ଗଣଙ୍କର ସର୍ବଗୁଣବତ୍ତା ତାହାର ପ୍ରମାଣ । ଯେଉଁ ଦିନ ସେହି ଆଦର୍ଶ ହିନ୍ଦୁ ମାନଙ୍କ ଚିତ୍ତରୁ ବିଦୂରିତ ହେଲା—ଯେଉଁ ଦିନ ଆମ୍ଭେମାନେ କୃଷ୍ଣଚରିତ୍ରକୁ ଅବନତ କରି ନେଲୁ, ସେହି ଦିନଠାରୁ ଆମର ସାମାଜିକ ଅବନତି । ଜୟଦେବ ଗୋସାଇଁଙ୍କ କୃଷ୍ଣଙ୍କ ଅନୁକରଣରେ ସମସ୍ତେ ବ୍ୟସ୍ତ—ମହାଭାରତର କୃଷ୍ଣଙ୍କୁ କେହି ସ୍ମରଣ କରନ୍ତି ନାହିଁ, ବର୍ତ୍ତମାନ ପୁଣି ସେହି ଆଦର୍ଶ ପୁରୁଷଙ୍କୁ ଜାତୀୟ ହୃଦୟରେ ଜାଗରିତ କରିବାକୁ ହେବ । ଆଶା କରେ, ଏହି କୃଷ୍ଣଚରିତ୍ର ବ୍ୟାଖ୍ୟାରେ ସେ କାର୍ଯ୍ୟର କିଛି ଆନୁକୂଲ୍ୟ ହୋଇ ପାରିବ ।

ଜରାସନ୍ଧର ବଧର ବ୍ୟାଖ୍ୟାରେ ଏ ସବୁ କଥା କହିବାର ସେତେ ପ୍ରୟୋଜନ ନଥିଲା, ପ୍ରସଙ୍ଗତଃ ଏତତ୍ତ୍ୱ ଉତ୍ଥାପିତ ହୋଇଅଛି ମାତ୍ର । କିନ୍ତୁ ଏ କଥାଗୁଡ଼ିକ ଏକ ସ୍ଥାନରେ ସ୍ଥାନରେ ମନେ କହିବାକୁ ହୁଅନ୍ତା । ଆଗେ କହି ରଖିଲେ ଲେଖକ ପାଠକ ଉଭୟଙ୍କର ପଥ ସୁଗମ ହେବ ।

## ଅଷ୍ଟମ ପରିଚ୍ଛେଦ

## ଭୀମ ଜରାସନ୍ଧଙ୍କ ଯୁଦ୍ଧ

ଆମ୍ଭେମାନେ ଏ ପର୍ଯ୍ୟନ୍ତ କୃଷ୍ଣଚରିତ୍ର ଯେତେଦୂର ସମାଲୋଚନା କରିଅଛୁଁ, ସେଥି ଭିତରେ ମହାଭାରତରେ କୃଷ୍ଣଙ୍କୁ କୌଣସିଠାରେ ବିଷ୍ଣୁ ବୋଲି ପରିଚିତ ହୋଇଥିବାର ଦେଖି ନାହୁଁ, କେହି ତାଙ୍କୁ ବିଷ୍ଣୁ ବୋଲି ସମ୍ବୋଧନ ବା ବିଷ୍ଣୁଜ୍ଞାନରେ ତାଙ୍କ ସହିତ କଥୋପକଥନ କରି ନାହାଁନ୍ତି । ତାଙ୍କୁ ମଧ୍ୟ ଏ ପର୍ଯ୍ୟନ୍ତ

ମନୁଷ୍ୟ ଶକ୍ତିର ଅତିରିକ୍ତ ଶକ୍ତିରେ କୌଣସି କାର୍ଯ୍ୟ କରିବାର ଦେଖି ନାହୁଁ । ସେ ବିଷ୍ଣୁଙ୍କ ଅବତାର ହୁଅନ୍ତୁ ବା ନ ହୁଅନ୍ତୁ, କୃଷ୍ଣଚରିତର ସ୍ଥୂଳ ମର୍ମ୍ମ ମନୁଷ୍ୟତ୍ୱ, ଦେବତ୍ୱ ନୁହେଁ, ଏହା ଆମେ ପୁନଃ ପୁନଃ ବୁଝାଇ ଅଛୁଁ ।

କିନ୍ତୁ ଏହା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ, ଏହା ପରେ ମହାଭାରତର ଅନେକ ସ୍ଥାନରେ ତାଙ୍କୁ ବିଷ୍ଣୁ ବୋଲି ସମ୍ବୋଧିତ ଏବଂ ପରିଚିତ ହେବାକୁ ଦେଖୁଁ । ଅନେକ ତାଙ୍କୁ ବିଷ୍ଣୁ ବୋଲି ଉପାସନା କରୁଛନ୍ତି, ଦେଖୁଁ ଏବଂ କଦାଚିତ୍ କେତେବେଳେ ତାଙ୍କୁ ଲୋକାତୀତା ବୈଷ୍ଣବୀ ଶକ୍ତିରେ କାର୍ଯ୍ୟ କରିବାର ମଧ୍ୟ ଦେଖୁଁ ; ଏ ପର୍ଯ୍ୟନ୍ତ ତାହା ଦେଖି ନାହିଁ, କିନ୍ତୁ ବର୍ତ୍ତମାନ ଦେଖିବା । ଏହି ଦୁଇଟି ଭାବ ପରସ୍ପର ବିରୋଧୀ କି ନା ?

ଯଦି କେହି କହନ୍ତି ଯେ, ଏହି ଦୁଇଟି ଭାବ ପରସ୍ପର ବିରୋଧୀ ନୁହେଁ, କାରଣ, ଯେତେବେଳେ ଦୈବଶକ୍ତିର ବା ଦେବତ୍ୱର କୌଣସି ପ୍ରକାର ବିକାଶର କୌଣସି ପ୍ରୟୋଜନ ନ ଥାଏ, ସେତେବେଳେ କାର୍ଯ୍ୟରେ ବା ଇତିହାସରେ କେବଳ ମନୁଷ୍ୟ ଭାବ ପ୍ରକଟିତ ହୁଏ, ଆଉ ଯେତେବେଳେ ତାହାର ପ୍ରୟୋଜନ ଥାଏ, ସେତେବେଳେ ଦୈବଭାବ ପ୍ରକଟିତ ହୁଏ ; ତାହା ହେଲେ ଆମେ କହିବା ଯେ ଏହି ଉତ୍ତର ଯଥାର୍ଥ ହେଲା ନାହିଁ । କାରଣ ନିଷ୍ପ୍ରୟୋଜନରେ ବି ଦୈବଭାବରେ ପ୍ରକାଶ ଅନେକ ସମୟରେ ଦେଖା ଯାଏ । ଏହି ଜରାସନ୍ଧ ବଧରୁ ଦୁଇଟା ଗୋଟାଏ ଉଦାହରଣ ଦେଉଅଛୁ ।

ଜରାସନ୍ଧବଧ ପରେ କୃଷ୍ଣ ଓ ଭୀମାର୍ଜ୍ଜୁନ ଜରାସନ୍ଧଙ୍କ ରଥ ଖଣ୍ଡିକ ନେଇ ସେଥିରେ ଆରୋହଣ ପୂର୍ବକ ନିଷ୍କ୍ରାନ୍ତ ହେଲେ । ଦେବନିର୍ମ୍ମିତ ରଥ, ସେଥିରେ କିଛିରହିଁ ଅଭାବ ନାହିଁ । ତଥାପି

ଭୁଗ୍ଗୁଂଟାରେ କୃଷ୍ଣ ଗରୁଡ଼ଙ୍କୁ ସ୍ମରଣ କଲେ, ସ୍ମରଣମାତ୍ରେ ଗରୁଡ଼ ଆସି ରଥର ଚୂଡ଼ାରେ ବସିଲେ । ଗରୁଡ଼ ଆସି ଆଉ କୌଣସି କାମ କଲେ ନାହିଁ, ତାଙ୍କର ଆଉ କୌଣସି ପ୍ରୟୋଜନ ମଧ୍ୟ ଥିବା ନାହିଁ । କଥାଟାର ବି ଆଉ କୌଣସି ପ୍ରୟୋଜନ ଦେଖା ଯାଏ ନାହିଁ, କେବଳ ମଝିରୁ କୃଷ୍ଣଙ୍କ ଐଶ୍ବର୍ଯ୍ୟ ସୂଚିତ ହୁଏ । ଜରାସନ୍ଧଙ୍କୁ ବଧ କରିବା ସମୟରେ କୌଣସି ଦୈବ ଶକ୍ତିର ପ୍ରୟୋଜନ ହେଲା ନାହିଁ, କିନ୍ତୁ ରଥରେ ଚଢ଼ିବା ବେଳେ ହେଲା !

ପୁଣି ଯୁଦ୍ଧର ପୂର୍ବେ, ସେହିପରି ଗୋଟାଏ କଥା ଅଛି । ଜରାସନ୍ଧ ଯୁଦ୍ଧରେ ସ୍ଥିର ସଂକଳ୍ପ ହେଲେ, କୃଷ୍ଣ ପଚାରିଲେ,

" ହେ ରାଜନ୍ ! ଆମ ତିନିଜଣଙ୍କ ମଧ୍ୟରୁ କାହା ସହିତ ଯୁଦ୍ଧ କରିବାକୁ ଇଚ୍ଛା ହୁଏ କହନ୍ତୁ ? କିଏ ଯୁଦ୍ଧ କରିବାକୁ ସଜ୍ଜୀଭୂତ ହେବ ? " ଜରାସନ୍ଧ ଭୀମଙ୍କ ସହିତ ଯୁଦ୍ଧ କରିବାକୁ ଇଚ୍ଛାପ୍ରକାଶ କଲେ । ଅଥଚ ଏହାର ଦୁଇ ଧାଡ଼ି ପୂର୍ବରେ ଲେଖାଅଛି ଯେ, କୃଷ୍ଣ ଜରାସନ୍ଧଙ୍କୁ ଯାଦବ ମାନଙ୍କ ଅବଧ୍ୟ ସ୍ମରଣ କରି ବ୍ରହ୍ମାଙ୍କ ଆଦେଶାନୁସାରେ ସ୍ୱୟଂ ତାଙ୍କ ସଂହାରରେ ପ୍ରବୃତ୍ତ ହେଲେ ନାହିଁ ।

ବ୍ରହ୍ମାଙ୍କ ଏହି ଆଦେଶ କଣ, ତାହା ମହାଭାରତରେ କୌଣସିଠାରେ ନାହିଁ । ପରବର୍ତ୍ତୀ ଗ୍ରନ୍ଥରେ ଅଛି । ଏଥିରୁ ପାଠକଙ୍କ ବିଶ୍ୱାସ ହୁଏ ନାହିଁ କି ଯେ, ଏ ଗୁଡ଼ିକ ଆଦିମ ମହାଭାର-ତର ମୂଳ ଉପରେ ପରବର୍ତ୍ତୀ ଲେଖକଙ୍କ କାରିଗରି ? ପୁଣି କୃଷ୍ଣଙ୍କ ଐଶ୍ବର୍ଯ୍ୟ ଭିତରେ ଭିତରେ ଠିକ୍ ରଖିବା ଏହାର ଉଦ୍ଦେଶ୍ୟ ? ଆଦିମ ସ୍ତରର ମୂଳରେ କୃଷ୍ଣ ଐଶ୍ବର୍ଯ୍ୟର କୌଣସି ପ୍ରକାର ସମ୍ବନ୍ଧ ସ୍ପଷ୍ଟ କରି ଲେଖା ଯାଇ ନାହିଁ, ଯେହେତୁ, କୃଷ୍ଣ-ଚରିତ ମନୁଷ୍ୟ ଚରିତ ; ଦେବଚରିତ ନୁହେଁ । ସେତେବେଳେ ଏଥିରେ କୃଷ୍ଣୋପାସକ ଦ୍ୱିତୀୟ ସ୍ତରର କବିଙ୍କ ହାତ ପଡ଼ିଲା ।

ସେତେବେଳେ ଏଇଟା ବଡ଼ ଭୁଲ ବୋଲି ବୋଧ ହୋଇଥିଲା ସନ୍ଦେହ ନାହିଁ । ପରବର୍ତ୍ତୀ କବିକଳ୍ପନାଟା ତାଙ୍କର ଜଣାଥିଲା, ସେ ଅଭାବ ପୂରଣ କରି ଦେଲେ ।

ଏହିମତେ, ଯେଉଁଠାରେ ବନ୍ଧନ ମୁକ୍ତ କ୍ଷତ୍ରିୟ ରାଜଗଣ କୃଷ୍ଣଙ୍କୁ ଧର୍ମରକ୍ଷା ନିମିତ୍ତ ଧନ୍ୟବାଦ କରୁଛନ୍ତି, ସେଠାରେ ମଧ୍ୟ, କେଉଁଠି କିଛି ନାହିଁ, ଖାଲି ସେମାନେ କୃଷ୍ଣଙ୍କୁ " ବିଷ୍ଣୋ " ବୋଲି ସମ୍ବୋଧନ କରିଛନ୍ତି, କିନ୍ତୁ ଇତିପୂର୍ବେ କେଉଁଠି ହେଲେ ଦେଖା ଯାଏ ନାହିଁ ଯେ, ସେ ବିଷ୍ଣୁ ବା ତଦର୍ଥକ କୌଣସି ନାମରେ ସମ୍ବୋଧିତ ହୋଇ ଅଛନ୍ତି । ଯଦି ଏହା ଦେଖନ୍ତେ ଯେ ଇତିପୂର୍ବେ କୃଷ୍ଣ ଏରୂପ ନାମରେ ମଣ୍ଡିତ ହୋଇ ଆସୁଛନ୍ତି, ତାହାହେଲେ ବୁଝନ୍ତେ ଯେ, ଏଥିରେ ଅସଙ୍ଗତ ବା ଅନୈସର୍ଗିକ କିଛି ନାହିଁ, ଲୋକଙ୍କର ଏପରି ବିଶ୍ୱାସ ଅଛି ବୋଲି ଏହା ହେଲା । ଯଦି ଏପରି ମଧ୍ୟ ଦେଖନ୍ତେ ଯେ, ଏହି ସମୟରେ କୃଷ୍ଣ କୌଣସି ଅଲୌକିକ କାର୍ଯ୍ୟ କରି ଅଛନ୍ତି, ଯାହା ଦେବତା ଭିନ୍ନ ମନୁଷ୍ୟର ସାଧ୍ୟ ନୁହେଁ, ତାହାହେଲେ ବି ହଠାତ୍ ଏହି "ବିଷ୍ଣୁ!" ସମ୍ବୋଧନର ଉପଯୋଗିତା ବୁଝି ପାରନ୍ତେ । କିନ୍ତୁ କୃଷ୍ଣ ସେପରି କୌଣସି କାର୍ଯ୍ୟ କରି ନାହାନ୍ତି । ସେ ଜରାସନ୍ଧଙ୍କୁ ବଧ କରି ନାହାନ୍ତି—ସର୍ବଲୋକସମକ୍ଷରେ ଭୀମ ତାଙ୍କୁ ବଧ କରିଥିଲେ । ସେ କାର୍ଯ୍ୟର ପ୍ରବର୍ତ୍ତକ କୃଷ୍ଣ ଠିକ୍, କିନ୍ତୁ କାରାବାସୀ ରଜାମାନେ ତାହାର କିଛି ଜାଣନ୍ତେ ନାହିଁ । ଅତଏବ କୃଷ୍ଣଙ୍କଠାରେ ଅକସ୍ମାତ୍ ରାଜଗଣ କର୍ତ୍ତୃକ ଏହି ବିଷ୍ଣୁତ୍ୱ ଆରୋପ କଦାପି ଐତିହାସିକ ବା ମୌଳିକ ହୋଇପାରେ ନାହିଁ । କିନ୍ତୁ ଏହା ସେହି ଗରୁଡ଼ ସ୍ମରଣ ଓ ବ୍ରହ୍ମାଙ୍କ ଆଦେଶ ସ୍ମରଣ ସଙ୍ଗେ ଅତ୍ୟନ୍ତ ସଙ୍ଗତ, ଜରାସନ୍ଧବଧର ଆଉ କୌଣସି ଅଂଶ ସଙ୍ଗେ

ସଙ୍ଗତ ନୁହେଁ, ତେଣୋଟି କଥା ଏକ ହାତର କାରଗର—ପୁଣି ତନୋଟ। କଥାହିଁ ମୂଳାନ୍ତରିକ । ବୋଧହୁଏ ଏହା ପାଠକର ହୃଦୟଙ୍ଗମ ହୋଇଅଛି ।

ଯେଉଁମାନେ କହିବେ ତାହା ହୋଇନାହିଁ, ସେମାନଙ୍କର ଏହି କୃଷ୍ଣଚରିତ୍ର ସମାଲୋଚନାର ଅନୁବର୍ତ୍ତୀ ହେବାର ଆଉ କୌଣସି ଫଳ ଦେଖୁ ନାହିଁ । କାରଣ, ଏ ସବୁ ବିଷୟରେ ଅନ୍ୟ କୌଣସି ପ୍ରକାର ପ୍ରମାଣ ସଂଗ୍ରହର ସମ୍ଭାବନା ନାହିଁ । ପୁଣି ଏହି ସମାଲୋଚନା ଦ୍ୱାରା ଯେଉଁମାନଙ୍କର ଏପରି ବିଶ୍ୱାସ ହୋଇଅଛି ଯେ, ଜରାସନ୍ଧବଧ ମଧ୍ୟରେ କୃଷ୍ଣଙ୍କର ଏହି ବିଷ୍ଣୁତ୍ୱ ସୂଚନା ପରବର୍ତ୍ତୀ କବି-ପ୍ରଣୀତ ଓ ପ୍ରକ୍ଷିପ୍ତ, ସେମାନଙ୍କୁ ପଚାରେ ତେବେ କୃଷ୍ଣଙ୍କର ଛଦ୍ମବେଶ ଓ କପଟାଚାର ବିଷୟକ ଯେ କେତୋଟି କଥା ଏହି ଜରାସନ୍ଧବଧ-ପର୍ବାଧ୍ୟାୟରେ ଅଛି, ତାହା ମଧ୍ୟ ସେହିପରି ପ୍ରକ୍ଷିପ୍ତ ବୋଲି ପରିତ୍ୟାଗ କରିବ ନାହିଁ କାହିଁକି ? ଦୁଇଟି ଯାକ ବିଷୟ ଠିକ୍ ଏକା ପ୍ରମାଣ ଉପରେ ନିର୍ଭର କରେ ।

ବସ୍ତୁତଃ ଏହି ଦୁଇ ବିଷୟ ଏକତ୍ର କରି ଦେଖିଲେ ବେଶ ବୁଝାଯିବ ଯେ, ଏହି ଜରାସନ୍ଧବଧ ପର୍ବାଧ୍ୟାୟରେ ପରବର୍ତ୍ତୀ କବିଙ୍କର ବିଲକ୍ଷଣ କାରଗର ଅଛି, ଏବଂ ଏହି ସବୁ ଅସଙ୍ଗତି ତାହାର ଫଳ । ଦୁଇ କବିଙ୍କର ଯେ ହାତ ଅଛି, ତାହାର ଆଉ ଏକ ପ୍ରମାଣ ଦେଉଅଛି ।

ଜରାସନ୍ଧଙ୍କ ପୂର୍ବବୃତ୍ତାନ୍ତ କୃଷ୍ଣ ଯୁଧିଷ୍ଠିରଙ୍କ ନିକଟରେ ବିବୃତ କଲେ, ଏହା ପୂର୍ବେ କହିଅଛି । ସେଥି ସଙ୍ଗେ, କୃଷ୍ଣଙ୍କ ସହିତ ଜରାସନ୍ଧର କଂସବଧଜନିତ ଯେଉଁ ବିରୋଧ, ତାହାର ମଧ୍ୟ ପରିଚୟ ଦେଲେ । ସେଥିରୁ କିଛି ଉଦ୍ଧୃତ ମଧ୍ୟ କରିଅଛି ।

ତାହା ପରେ ମହାଭାରତକାର କଣ କହୁଛନ୍ତି, ଶୁଣନ୍ତୁ ।

"ବୈଶମ୍ପାୟନ କହିଲେ, ନରପତି ବୃହଦ୍ରଥ ଭାର୍ଯ୍ୟାଦ୍ୱୟ ସମଭିବ୍ୟାହାରରେ ତପୋବନରେ ବହୁଦିବସ ତପସ୍ୟାନୁଷ୍ଠାନ କରି ସ୍ୱର୍ଗକୁ ଗମନ କଲେ । ସେମାନେ ଜରାସନ୍ଧ ଓ ଚଣ୍ଡକୌଶିକଙ୍କଠାରୁ ସମୁଦାୟ ବର ଲାଭ କରି ନିଷ୍କଣ୍ଟକରେ ରାଜ୍ୟ ଶାସନ କରିବାକୁ ଲାଗିଲେ । ସେହି ସମୟରେ ଭଗବାନ ବାସୁଦେବ କଂସ ନରପତିଙ୍କୁ ସଂହାର କଲେ । କଂସନିପାତ ନିବନ୍ଧନ କୃଷ୍ଣଙ୍କ ସହିତ ଜରାସନ୍ଧଙ୍କର ଘୋରତର ଶତ୍ରୁତା ଜନ୍ମିଲା ।"

ଏ ସବୁତ କୃଷ୍ଣ କହୁଛନ୍ତି-ଆଉରି ସବିସ୍ତରେ କହିଛନ୍ତି- ପୁଣି ଏ କଥା କାହିଁକି ? ପ୍ରୟୋଜନ ଅଛି । ମୂଳ ମହାଭାରତ ପ୍ରଣେତା ଅଦ୍ଭୁତରସରେ ବଡ଼ରସିକ ନୁହନ୍ତି—କୃଷ୍ଣ ଅଲୌକିକ ଘଟନା କିଛି କହିଲେ ନାହିଁ । ସେ ଅଭାବ ବର୍ତ୍ତମାନ ପୂରିତ ହେବାକୁ ଯାଉଛି । ବୈଶମ୍ପାୟନ କହୁଛନ୍ତି,—

"ମହାବଳ ପରାକ୍ରାନ୍ତ ଜରାସନ୍ଧ ଗିରିବ୍ରଜ ମଧ୍ୟରେହିଁ କୃଷ୍ଣଙ୍କ ବଧାର୍ଥେ ଗୋଟାଏ ବୃହତ୍ ଗଦା ଏକୋନଶତ ବାର ଘୂର୍ଣ୍ଣାୟମାନ କରି ନିକ୍ଷେପ କଲା । ଗଦା ମଥୁରାସ୍ଥିତ ଅଦ୍ଭୁତ କର୍ମା ବାସୁଦେବଙ୍କର ଏକୋନଶତ ଯୋଜନ ଅନ୍ତରରେ ପତିତ ହେଲା । ପୌରଗଣ କୃଷ୍ଣଙ୍କ ନିକଟରେ ଗଦାପତନର ବିଷୟ ନିବେଦନ କଲେ । ତଦ୍‌ବଧି ମଥୁରାର ସମୀପବର୍ତ୍ତୀ ସେହି ସ୍ଥାନ ଗଦାବସାନ ନାମରେ ବିଖ୍ୟାତ ହେଲା ।"

ବର୍ତ୍ତମାନ ସୁଦ୍ଧା ଯଦି କୌଣସି ପାଠକର ବିଶ୍ୱାସ ଥାଏ ଯେ, ଜରାସନ୍ଧବଧ-ପର୍ବାଧ୍ୟାୟରେ ଥିବା ସମୁଦାୟ ଅଂଶ ମୂଳ ମହାଭାରତର ଅନ୍ତର୍ଗତ ଏବଂ ଏକ ବ୍ୟକ୍ତି ପ୍ରଣୀତ, ଏବଂ କୃଷ୍ଣାଦି ଯଥାର୍ଥରେ ଛଦ୍ମବେଶରେ ଗିରିବ୍ରଜକୁ ଆସିଥିଲେ,

ତେବେ ତାଙ୍କୁ ଅନୁରୋଧ କରୁଅଛୁ, ହିନ୍ଦୁମାନଙ୍କର ପୁରାଣେ-
ତିହାସ ମଧ୍ୟରେ ଐତିହାସିକ ତତ୍ତ୍ୱର ଅନୁସନ୍ଧାନ ପରିତ୍ୟାଗ
କରି ଅନ୍ୟ ଶାସ୍ତ୍ରର ଆଲୋଚନାରେ ପ୍ରବୃତ୍ତ ହୁଅନ୍ତୁ । ଏ
ଦିଗରେ କିଛି ହେବ ନାହିଁ । ଅତଃପର, ଜରାସନ୍ଧବଧର
ଅବଶିଷ୍ଟ କଥା ଗୁଡ଼ିକ କହି ଏହି ପବାଧ୍ୟାୟରେ ଉପସଂହାର
କରିବ ; ସେ ସବୁ ଖୁବ ସହଜ କଥା ।

ଜରାସନ୍ଧ ଯୁଦ୍ଧାର୍ଥ ଭୀମଙ୍କୁ ମନୋନୀତ କଲେ, ଜରାସନ୍ଧ
"ଯଶସ୍ୱୀ ବ୍ରାହ୍ମଣ କର୍ତ୍ତୃକ କୃତ-ସ୍ୱସ୍ତ୍ୟୟନ ହୋଇ କ୍ଷତ୍ରଧର୍ମାନୁସାରେ
ବର୍ମ ଓ କିରୀଟ ପରିତ୍ୟାଗ ପୂର୍ବକ" ଯୁଦ୍ଧରେ ପ୍ରବୃତ୍ତ ହେଲେ ।
"ସେତେବେଳେ ଯାବତୀୟ ପୁରବାସୀ ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ
ଶୂଦ୍ର ବନିତା ଓ ବୃଦ୍ଧଗଣ ସେମାନଙ୍କ ସଂଗ୍ରାମ ଦେଖିବାକୁ
ସେଠାରେ ଉପସ୍ଥିତ ହେଲେ । ଯୁଦ୍ଧକ୍ଷେତ୍ର ଜନତା ଦ୍ୱାରା ସମାକୀର୍ଣ୍ଣ
ହେଲା ।" "ଚତୁର୍ଦ୍ଦଶ ଦିବସ ଯୁଦ୍ଧ ହେଲା ।" (ଯଦି ସତ୍ୟ
ହୋଇଥାଏ, ତେବେ ବୋଧ ହୁଏ ମଝିରେ ମଝିରେ ଅବକାଶା-
ନୁଯାୟୀ ଯୁଦ୍ଧ ହେଉଥିଲା ) ଚତୁର୍ଦ୍ଦଶ ଦିବସରେ "ବାସୁଦେବ
ଜରାସନ୍ଧଙ୍କୁ କ୍ଳାନ୍ତ ଦେଖି ଭୀମ କର୍ମା ଭୀମସେନଙ୍କୁ ସମ୍ବୋଧନ
କରି କହିଲେ, ହେ କୌନ୍ତେୟ ! କ୍ଳାନ୍ତ ଶତ୍ରୁକୁ ପୀଡ଼ନ
କରିବା ଉଚିତ ନୁହେଁ; ଅଧିକତର ପୀଡ଼ିୟମାନ ହେଲେ ଜୀବନ
ପରିତ୍ୟାଗ କରେ । ଅତଏବ ଏ ତୁମର ପୀଡ଼ନୀୟ ନୁହନ୍ତି ।
ହେ ଭରତର୍ଷଭ, ଏଣୁ ବାହୁଯୁଦ୍ଧ କର ।" (ଅର୍ଥାତ୍ ଯେଉଁ
ଶତ୍ରୁକୁ ଧର୍ମତଃ ବଧ କରିବାକୁ ହେବ, ତାକୁ ମଧ୍ୟ ପୀଡ଼ନ
କର୍ତ୍ତବ୍ୟ ନୁହେଁ । ) ଭୀମ ଜରାସନ୍ଧଙ୍କୁ ପୀଡ଼ନ କରି ହିଁ ବଧ
କଲେ । ଭୀମର ଧର୍ମଜ୍ଞାନ କୃଷ୍ଣଙ୍କ ତୁଲ୍ୟ ହୋଇପାରେନା ।
ତତ୍ପରେ କୃଷ୍ଣାର୍ଜ୍ଜୁନ ଓ ଭୀମ କାରାବଦ୍ଧ ମହୀପାଳମାନଙ୍କୁ

ବିମୁକ୍ତ କଲେ । ତାହାହିଁ ଜରାସନ୍ଧବଧର ଏକମାତ୍ର ଉଦ୍ଦେଶ୍ୟ । ଅତଏବ ରାଜାମାନଙ୍କୁ ମୁକ୍ତ କରି ଆଉ କିଛିହିଁ କଲେନାହିଁ, ଦେଶକୁ ଚାଲି ଗଲେ । ସେମାନେ Annexationist (ସଂଯୋଜନ ସମର୍ଥନ କାରୀ) ଥିଲେ ନାହିଁ —ପିତାର ଅପରାଧରେ ପୁତ୍ରର ରାଜ୍ୟ ଅପହରଣ କରୁ ନ ଥିଲେ ; ସେମାନେ ଜରାସନ୍ଧଙ୍କୁ ବିନଷ୍ଟ କରି ଜରାସନ୍ଧପୁତ୍ର ସହଦେବଙ୍କୁ ରାଜ୍ୟରେ ଅଭିଷିକ୍ତ କଲେ । ସହଦେବ କିଛି ନଜର ଦେଲେ, ତାହା ଗ୍ରହଣ କଲେ । କାରାମୁକ୍ତ ରାଜାମାନେ କୃଷ୍ଣଙ୍କୁ ପଚାରିଲେ,

"ବର୍ତ୍ତମାନ ଏହି ଭୃତ୍ୟମାନଙ୍କୁ କଣ କରିବାକୁ ହେବ ଅନୁମତି କରନ୍ତୁ ।"

କୃଷ୍ଣ ସେମାନଙ୍କୁ କହିଲେ, "ରାଜା ଯୁଧିଷ୍ଠିର ରାଜସୂୟ ଯଜ୍ଞ କରିବାକୁ ଅଭିଳାଷ କରିଛନ୍ତି । ଆପଣମାନେ ସେହି ସାମ୍ରାଜ୍ୟ—ଚିକୀର୍ଷୁ ଧାର୍ମିକଙ୍କର ସାହାଯ୍ୟ କରନ୍ତୁ, ଏହାହିଁ ପ୍ରାର୍ଥନା ।" ଯୁଧିଷ୍ଠିରଙ୍କୁ କେନ୍ଦ୍ରସ୍ଥିତ କରି ଧର୍ମରାଜ୍ୟ ସଂସ୍ଥାପନ କରିବା, କୃଷ୍ଣଙ୍କର ବର୍ତ୍ତମାନ ଜୀବନର ଉଦ୍ଦେଶ୍ୟ । ଅତଏବ ପ୍ରତିପଦରେ ସେ ତାହାର ଉଦ୍ୟୋଗ କରୁଛନ୍ତି ।

ଏହି ଜରାସନ୍ଧ ବଧରେ କୃଷ୍ଣଚରିତ୍ରର ବିଶେଷ ମହିମା ପ୍ରକାଶମାନ- କିନ୍ତୁ ପରବର୍ତ୍ତୀ ଲେଖକ ମାନଙ୍କ ଦୌରାତ୍ମ୍ୟରେ ଏହା ବଡ ଜଟିଳ ହୋଇ ପଡ଼ିଅଛି । ଏହା ପରେ ଶିଶୁପାଳବଧ । ସେଠାରେ ଆହୁରି ଗଣ୍ଡଗୋଳ ।

## ନବମ ପରିଚ୍ଛେଦ

## ଅର୍ଘାଭି ହରଣ

ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ଆରମ୍ଭ ହେଲା । ନାନାଦିଗ୍-

ଦେଶରୁ ଆଗତ ରାଜଗଣ ଋଷିଗଣ, ଏବଂ ଅନ୍ୟାନ୍ୟ ଶ୍ରେଣୀର ଲୋକଙ୍କ ଦ୍ୱାରା ରାଜଧାନୀ ପୂର୍ଣ୍ଣ ହୋଇଗଲା । ଏହି ବୃହତ୍ କାର୍ଯ୍ୟର ସୁନିର୍ବାହ ନିମିତ୍ତ ପାଣ୍ଡବମାନେ ଆତ୍ମୀୟବର୍ଗଙ୍କୁ ବିଶେଷ କାର୍ଯ୍ୟରେ ନିଯୁକ୍ତ କଲେ । ଦୁଃଶାସନ ଭୋଜ୍ୟଦ୍ରବ୍ୟ ତତ୍ତ୍ୱାବଧାନରେ, ସଞ୍ଜୟ ପରିଚର୍ଯ୍ୟାରେ, କୃପାଚାର୍ଯ୍ୟ ରତ୍ନରକ୍ଷା ଓ ଦକ୍ଷିଣା ଦାନରେ, ଦୁର୍ଯ୍ୟୋଧନ ଉପାୟନ ଦ୍ରବ୍ୟଗ୍ରହଣରେ ଇତ୍ୟାଦି ରୂପେ ସମସ୍ତଙ୍କୁ ନିଯୁକ୍ତ କଲେ । ଶ୍ରୀକୃଷ୍ଣ କେଉଁ କାର୍ଯ୍ୟରେ ନିଯୁକ୍ତ ହେଲେ ? ଦୁଃଶାସନାଦିଙ୍କ ନିୟୋଗ ସଙ୍ଗେ ଶ୍ରୀକୃଷ୍ଣଙ୍କ ନିୟୋଗର କଥା ମଧ୍ୟ ଲେଖାଅଛି । ସେ ବ୍ରାହ୍ମଣମାନଙ୍କ ପଦପ୍ରକ୍ଷାଳନରେ ନିଯୁକ୍ତ ହେଲେ ।

କଥାଟା ବୁଝାଗଲାନାହିଁ । ଶ୍ରୀକୃଷ୍ଣ କାହିଁକି ଏଇ ଭୃତ୍ୟୋପଯୋଗୀ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ ? ତାଙ୍କ ଯୋଗ୍ୟ କଣ ଆଉ କୌଣସି ଭଲ କାର୍ଯ୍ୟ ନ ଥିଲା ? ନା, ବ୍ରାହ୍ମଣର ଗୋଡ଼ ଧୋଇଦେବା ବଡ଼ ମହତ୍ କାମ ? ତାଙ୍କୁ ଆଦର୍ଶ ପୁରୁଷ ବୋଲି ଗ୍ରହଣ କରି କଣ ଆମେ ବ୍ରାହ୍ମଣମାନଙ୍କର ପଦ ପ୍ରକ୍ଷାଳନ କରି ବୁଲିବାକୁ ହେବ ? ଯଦି ତାହାହୁଏ, ତେବେ ସେ ଆଦର୍ଶ ପୁରୁଷ ନୁହନ୍ତି, ଏହା ଆମେ ମୁକ୍ତ କଣ୍ଠରେ କହିବା ।

କଥାଟାର ଅନେକ ରକମ ବ୍ୟାଖ୍ୟା କରାଯାଇପାରେ । ବ୍ରାହ୍ମଣମାନଙ୍କ ଦ୍ୱାରା ପ୍ରଚାରିତ ଏବଂ ବର୍ତ୍ତମାନର ପ୍ରଚଳିତ ବ୍ୟାଖ୍ୟା ଏହି ଯେ, ଶ୍ରୀକୃଷ୍ଣ ବ୍ରାହ୍ମଣମାନଙ୍କ ଗୌରବ ବଢାଇବା ନିମିତ୍ତ ସକଳ କାର୍ଯ୍ୟ ପରିତ୍ୟାଗ କରି ଏଇଟିରେ ନିଜକୁ ନିଯୁକ୍ତକରିଥିଲେ । ଏ ବ୍ୟାଖ୍ୟା ଅତି ଅଶ୍ରଦ୍ଧେୟ ବୋଲି ଆମର ବୋଧ ହୁଏ । ଶ୍ରୀକୃଷ୍ଣ ଅନ୍ୟାନ୍ୟ କ୍ଷତ୍ରିୟମାନଙ୍କ ପରି ବ୍ରାହ୍ମଣଙ୍କୁ ଯଥା ଯୋଗ୍ୟ ସମ୍ମାନ କରୁଥିଲେ ସତ୍ୟ, କିନ୍ତୁ ତାହାଙ୍କୁ କେଉଁଠି

ବ୍ରାହ୍ମଣର ଗୌରବ ପ୍ରଚାର ନିମିତ୍ତ ବିଶେଷ ବ୍ୟସ୍ତ ହେବାର ଦେଖି ନାହୁଁ । ବରଂ ଅନେକ ସ୍ଥାନରେ ତାଙ୍କୁ ବିପରୀତ ପଥ ଅବଲମ୍ବନ କରିବାର ଦେଖୁଁ । ଯଦି ବନପର୍ବରେ ଦୁର୍ବାସାଙ୍କ ଆତିଥ୍ୟ ବୃତ୍ତାନ୍ତଟା ମୌଳିକ ମହାଭାରତର ଅନ୍ତର୍ଗତ ବୋଲି ବିବେଚନା କରି ଯାଏ, ତାହା ହେଲେ ବୁଝିବାକୁ ହେବ ଯେ ସେ କଳକୌଶଳରେ ବ୍ରାହ୍ମଣ ଗୋସାଇଁ ମାନଙ୍କୁ ପାଣ୍ଡବମାନଙ୍କ ଆଶ୍ରମରୁ ଅର୍ଦ୍ଧଚନ୍ଦ୍ର ପ୍ରଦାନ କରିଥିଲେ । ସେ ଘୋର ତର ସାମ୍ୟବାଦୀ । ଗୀତୋକ୍ତ ଧର୍ମ ଯଦି କୃଷ୍ଣଙ୍କ ଧର୍ମ ହୁଏ ତେବେ,

ବିଦ୍ୟାବିନୟ ସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି ।
ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ॥ ୫ । ୧୮

ତାଙ୍କ ମତରେ ବ୍ରାହ୍ମଣରେ, ହାତୀରେ, କୁକୁରରେ ଓ ଚଣ୍ଡାଳରେ ସମାନ ଦେଖିବାକୁ ହେବ । ତାହାହେଲେ ଏହା ଅସମ୍ଭବ ଯେ, ସେ ବ୍ରାହ୍ମଣର ଗୌରବ ବୃଦ୍ଧି ନିମିତ୍ତ ସେମାନଙ୍କର ପଦ ପ୍ରକ୍ଷାଳନରେ ନିଯୁକ୍ତ ହେବେ ।

କେହି କେହି କହି ପାରନ୍ତି, କୃଷ୍ଣ ଯେତେବେଳେ ଆଦର୍ଶ ପୁରୁଷ ସେତେବେଳେ ବିନୟର ଆଦର୍ଶ ଦେଖାଇବା ନିମିତ୍ତ ଏହି ଭୃତ୍ୟକାର୍ଯ୍ୟର ଭାର ଗ୍ରହଣ କରିଥିଲେ । ଜିଜ୍ଞାସ୍ୟ, ତେବେ କେବଳ ବ୍ରାହ୍ମଣର ପଦପ୍ରକ୍ଷାଳନରେହିଁ, ନିଯୁକ୍ତ କାହିଁକି ? ବୟୋବୃଦ୍ଧ କ୍ଷତ୍ରିୟ ମାନଙ୍କର ମଧ୍ୟ ପାଦପ୍ରକ୍ଷାଳନରେ ନିଯୁକ୍ତ ନୁହନ୍ତି କାହିଁକି ? ଆଉ ଏହା ମଧ୍ୟ ବକ୍ତବ୍ୟ ଯେ ଏପରି ବିନୟକୁ ଆମେ ଆଦର୍ଶ ବିନୟ କହି ପାରୁନା । ଏଟା ବିନୟର ବଡ଼ିମା ।

ଅନ୍ୟେ କହିପାରନ୍ତି ଯେ କୃଷ୍ଣଚରିତ୍ର ସମୟୋପଯୋଗୀ । ସେ ସମୟରେ ବ୍ରାହ୍ମଣମାନଙ୍କ ପ୍ରତି ଭକ୍ତି ବଡ଼ ପ୍ରବଳ ଥିଲା; କୃଷ୍ଣ

ଧର୍ମ, ପ୍ରସାର ବଢ଼ାଇବା ପାଇଁ ଏପରି ଅଲୌକିକ ବ୍ରହ୍ମଭକ୍ତି ଦେଖାଉଥିଲେ ।

ମୁଁ କହେଁ, ଏହି ଶ୍ଳୋକଟି ପ୍ରକ୍ଷିପ୍ତ । କାରଣ ଆମ୍ଭେମାନେ ଏହି ଶିଶୁପାଳବଧ-ପର୍ବାଧ୍ୟାୟର ଅନ୍ୟ ଅଧ୍ୟାୟରେ (ଦ୍ଵୈଧୀକରଣ) ଦେଖିବାକୁ ପାଉଁ ଯେ, କୃଷ୍ଣ ବ୍ରାହ୍ମଣମାନଙ୍କ ପାଦପ୍ରକ୍ଷାଳନରେ ନିଯୁକ୍ତ ନ ଥାଇ, ସେ କ୍ଷତ୍ରିୟୋଚିତ ଓ ବୀରୋଚିତ କାର୍ଯ୍ୟାନ୍ତରରେ ନିଯୁକ୍ତ ଥିଲେ । ସେଠାରେ ଲିଖିତ ଅଛି, "ମହାବାହୁ ବାସୁଦେବ ଶଙ୍ଖ, ଚକ୍ର ଓ ଗଦା ଧାରଣ ପୂର୍ବକ ସମାପନପର୍ଯ୍ୟନ୍ତ ସେହି ଯଜ୍ଞରକ୍ଷା କରିଥିଲେ," ହୁଏତ ଦୁଇଟା କଥା ହିଁ ପ୍ରକ୍ଷିପ୍ତ । ଆମେ ଏ ପରିଚ୍ଛେଦରେ ଏ କଥାର ବେଶୀ ଆନ୍ଦୋଳନ ଆବଶ୍ୟକ ବିବେଚନା କରୁ ନାହିଁ । କଥାଟା ସେପରି ଗୁରୁତର କଥା ନୁହେଁ । କୃଷ୍ଣଚରିତ ସମ୍ବନ୍ଧରେ ମହାଭାରତୀୟ ଉକ୍ତି ଅନେକ ସମୟରେ ପରସ୍ପର ଅସଙ୍ଗତ, ଏହା ଦେଖାଇବା ପାଇଁ ଏତେ କହିଲି, ନାନାହାତର କାମ ବୋଲି ଅସଂଗତ ।

ଏହି ରାଜସୂୟ ଯଜ୍ଞର ମହାସଭାରେ କୃଷ୍ଣକର୍ତ୍ତୃକ ଶିଶୁପାଳ ନାମରେ ପ୍ରବଳ ପରାକ୍ରାନ୍ତ ମହାରାଜା ନିହତ ହୁଅନ୍ତି । ପାଣ୍ଡବମାନଙ୍କ ସଂଶ୍ଳେଷ ମାତ୍ରରେ ଥାଇ କୃଷ୍ଣଙ୍କର ଏଇ ଥରେ ମାତ୍ର ଅସ୍ତ୍ର ଧାରଣ କଲେ ବୋଲି କୁହାଯାଏ । ଖାଣ୍ଡବ ଦାହର ଯୁଦ୍ଧଟା ଆମେ ବଡ଼ ମୌଳିକ ବୋଲି ଧରି ନାହୁଁ, ଏହା ପାଠକଙ୍କ ସ୍ମରଣ ଥାଇ ପାରେ ।

ଶିଶୁପାଳ ବଧ-ପର୍ବାଧ୍ୟାୟରେ ଗୋଟାଏ ଗୁରୁତର ଐତିହାସିକ ତତ୍ତ୍ୱ ନିହିତ ଅଛି । କହିବାକୁ ଗଲେ, ସେପରି ଗୁରୁତର ଐତିହାସିକ ତତ୍ତ୍ୱ ମହାଭାରତର ଆଉ କେଉଁଠି ନାହିଁ । ଆମ୍ଭେମାନେ

ଦେଖିଅଛୁଁ ଯେ, ଜରାସନ୍ଧ ବଧ ପୂର୍ବ, କୃଷ୍ଣ ମୌଳିକ ମହାଭାରତର କୌଣସିଠାରେ, ଦେବତା ବା ଈଶ୍ୱରାବତାର - ସ୍ୱରୂପ ଅଭିହିତ ବା ସ୍ୱୀକୃତ ନୁହନ୍ତି । ଜରାସନ୍ଧ ବଧରେ, ସେ କଥାଟା ପ୍ରାୟ ଅସ୍ଫୁଟ ଭାବରେ ଅଛି । ଏହି ଶିଶୁପାଳ ବଧରେହିଁ ପ୍ରଥମ କୃଷ୍ଣଙ୍କର ସମସାମୟିକ ଲୋକ କର୍ତ୍ତୃକ ସେ ଜଗଦୀଶ୍ୱର ବୋଲି ସ୍ୱୀକୃତ । ଏଠାରେ କୁରୁବଂଶର ତାତ୍କାଳିକ ନେତା ଭୀଷ୍ମହିଁ ଏହି ମତର ପ୍ରବର୍ତ୍ତକ ।

ବର୍ତ୍ତମାନ ଐତିହାସିକ ସ୍ଥୂଳ ପ୍ରଶ୍ନଟା ଏହି ଯେ, ଯେତେବେଳେ ଦେଖିଅଛୁଁ ଯେ କୃଷ୍ଣ ତାଙ୍କ ଜୀବନର ପ୍ରଥମାଂଶରେ ଈଶ୍ୱରାବତାର ବୋଲି ସ୍ୱୀକୃତ ନୁହନ୍ତି, ସେତେବେଳେ ଜାଣିବାକୁ ହେବ, କେଉଁ ସମୟରେ ସେ ପ୍ରଥମ ଈଶ୍ୱର ବୋଲି ସ୍ୱୀକୃତ ହେଲେ ? ତାଙ୍କ ଜୀବିତ କାଳରେ କଣ ଈଶ୍ୱରାବତାର ବୋଲି ସ୍ୱୀକୃତ ହୋଇଥିଲେ ? ଅବଶ୍ୟ ଦେଖିବାକୁ ପାଉଁ ଯେ, ଏହି ଶିଶୁପାଳ ବଧରେ, ଏବଂ ତତ୍ପରବର୍ତ୍ତୀ ମହାଭାରତର ଅନ୍ୟାନ୍ୟ ଅଂଶରେ ସେ ଈଶ୍ୱର ବୋଲି ସ୍ୱୀକୃତ ହୋଇଅଛନ୍ତି । କିନ୍ତୁ ଏହା ମଧ୍ୟ ହୋଇପାରେ ଯେ, ଶିଶୁପାଳବଧ-ପର୍ବାଧ୍ୟାୟ ଏବଂ ସେହି ସେହି ଅଂଶ ପ୍ରକ୍ଷିପ୍ତ । ଏ ପ୍ରଶ୍ନର ଉତ୍ତରରେ କେଉଁ ପକ୍ଷ ଅବଲମ୍ବନୀୟ ?

ଏହାର ଆମେ ବର୍ତ୍ତମାନ କୌଣସି ଉତ୍ତର ଦେଉ ନାହୁଁ । ଆଶାକରେ, କ୍ରମଶଃ ଉତ୍ତର ଆପେ ଆପେ ପରିସ୍ଫୁଟ ହେବ, ତେବେ ଏହା ବକ୍ତବ୍ୟ ଯେ, ଶିଶୁପାଳବଧ-ପର୍ବାଧ୍ୟାୟ ଯଦି ମୌଳିକ ମହାଭାରତର ଅଂଶ ହୁଏ, ତେବେ ଏପରି ବିବେଚନା କରା ଯାଇ ପାରେ ଯେ, ଏହି ସମୟରେହିଁ କୃଷ୍ଣ ଈଶ୍ୱରତ୍ୱରେ ପ୍ରତିଷ୍ଠିତ ହୋଇଥିଲେ । ଏବଂ ଏ ବିଷୟରେ ତାଙ୍କ ସ୍ୱପକ୍ଷ ବିପକ୍ଷ ଦୁଇ ପକ୍ଷ ଥିଲା । ତାଙ୍କ ପକ୍ଷୀୟମାନଙ୍କ ମଧ୍ୟରେ ପ୍ରଧାନ ଭୀଷ୍ମ,

ଏବଂ ପାଣ୍ଡବମାନେ । ତାଙ୍କ ବିପକ୍ଷ ମାନଙ୍କ ଜଣେ ନେତା ଶିଶୁପାଳ । ଶିଶୁପାଳ ବଧ ବୃତ୍ତାନ୍ତର ସ୍ଥୂଳ ମର୍ମ୍ମ ଏହି ଯେ, ଭୀଷ୍ମାଦି ସେହି ସଭା ମଧ୍ୟରେ କୃଷ୍ଣଙ୍କ ପ୍ରାଧାନ୍ୟ ସ୍ଥାପନର ଚେଷ୍ଟା କରନ୍ତି । ଶିଶୁପାଳ ତାହାର ବିରୋଧୀ ହୁଅନ୍ତି । ସେଥିରୁ ତୁମୁଳ ବିବାଦର ସୂତ୍ରପାତ ହୁଏ । ସେତେବେଳେ କୃଷ୍ଣ ଶିଶୁପାଳଙ୍କୁ ନିହତ କରନ୍ତି, ତହିଁରେ ସବୁ ଅଡ଼ୁଆ ତୁଟି ଯାଏ । ଯଜ୍ଞର ବିଘ୍ନ ବିନଷ୍ଟ ହେବାରୁ, ଯଜ୍ଞ ନିର୍ବିଘ୍ନରେ ନିର୍ବାହ ହେଲା ।

ଏ ସବୁ କଥା ଭିତରେ ଯଥାର୍ଥ ଐତିହାସିକତା କିଛିମାତ୍ର ଅଛି କି ନାହିଁ, ତାହାର ମୀମାଂସା ପୂର୍ବେ ବୁଝିବାକୁ ହେବ ଯେ, ଏହି ଶିଶୁପାଳବଧ - ପର୍ବାଧ୍ୟାୟ ମୌଳିକ କି ନୁହେଁ ? କଥାଟାର ଉତ୍ତର ବଡ଼ ସହଜ ନୁହେଁ ଶିଶୁପାଳବଧ ସହିତ ମହାଭାରତର ସ୍ଥୂଳ ଘଟନାଗୁଡ଼ିକର କୌଣସି ବିଶେଷ ସମ୍ବନ୍ଧ ଅଛି, ଏପରି କଥା କହି ହେବ ନାହିଁ । କିନ୍ତୁ ତାହା ନ ଥିଲେ ଯେ ପ୍ରକ୍ଷିପ୍ତ କହିବାକୁ ହେବ, ଏପରି ନୁହେଁ ।

ଏହା ମଧ୍ୟ ସତ୍ୟ ଯେ, ଇତି ପୂର୍ବେ ଅନେକ ସ୍ଥାନରେ ଶିଶୁ-ପାଳ ନାମକ ଜଣେ ପ୍ରବଳ ପରାକ୍ରାନ୍ତ ରାଜାଙ୍କ କଥା ଦେଖିବାକୁ ପାଉ । ପରଭାଗରେ ଦେଖୁ ଯେ, ସେ ନାହାନ୍ତି । ମଧ୍ୟଭାଗରେ ତାଙ୍କର ମୃତ୍ୟୁ ହୋଇଥିଲା । ପାଣ୍ଡବ-ସଭାରେ କୃଷ୍ଣଙ୍କ ହସ୍ତରେ ତାଙ୍କ ମୃତ୍ୟୁ ହୋଇଥିଲା, ଏହାର ବିରୋଧୀ କୌଣସି କଥା ପାଉନା ଅନୁକ୍ରମଣିକାଧ୍ୟାୟରେ ଏବଂ ପର୍ବସଂଗ୍ରହାଧ୍ୟାୟରେ ଶିଶୁପାଳ ବଧର କଥା ଅଛି । ଆଉ ରଚନା ପ୍ରଣାଳୀ ଦେଖିଲେ ବି ଶିଶୁପାଳବଧ - ପର୍ବାଧ୍ୟାୟକୁ ମୌଳିକ ମହାଭାରତର ଅଂଶ ବୋଲି ବୋଧହୁଏ । ମୌଳିକ ମହାଭାରତର ଅନ୍ୟ କେତୋଟି ଅଂଶ ପରି, ନାଟ-କାଂଶରେ ଏହାର ବିଶେଷ ଉତ୍କର୍ଷ ଅଛି । ଅତଏବ ଏହାକୁ

ଅମୌଳିକ ବୋଲି ଏକାବେଳକେ ପରିତ୍ୟାଗ କରି ପାରୁ ନାହିଁ ।

କିନ୍ତୁ ଏହା ମଧ୍ୟ ସ୍ପଷ୍ଟ ବୋଧ ହୁଏ ଯେ, ଯେପରି ଜରାସନ୍ଧ ବଧ-ପର୍ବାଧ୍ୟାୟରେ ଦୁଇ ହାତରେ କାରିଗରି ଦେଖିଅଛୁ, ଏଠାରେ ମଧ୍ୟ ସେହିପରି, ବରଂ ଜରାସନ୍ଧବଧ ଅପେକ୍ଷା ସେ ବୈଚିତ୍ର୍ୟ ଶିଶୁପାଳବଧରେ ବେଶୀ । ଅତଏବ ମୁଁ ଏହି ସିଦ୍ଧାନ୍ତ କରିବାକୁ ବାଧ୍ୟ ଯେ ଶିଶୁପାଳବଧ ସ୍ଥୂଳତଃ ମୌଳିକ କିନ୍ତୁ ଏଥିରେ ଦ୍ୱିତୀୟ ସ୍ତରର କବିର ବା ଅନ୍ୟ ପରବର୍ତ୍ତୀ ଲେଖକଙ୍କର ଅନେକ ହାତ ଅଛି ।

ବର୍ତ୍ତମାନ ଶିଶୁପାଳବଧ ବୃତ୍ତାନ୍ତ ସମ୍ବନ୍ଧରେ କହିବି ।

ବର୍ତ୍ତମାନ ସମୟରେ ମଧ୍ୟ ଆମ ଦେଶରେ ଗୋଟିଏ ପ୍ରଥା ପ୍ରଚଳିତ ଅଛି ଯେ, କୌଣସି ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଘରେ ସଭା ହେଲେ ସଭାସ୍ଥ ସର୍ବପ୍ରଧାନ ବ୍ୟକ୍ତିଙ୍କୁ ସ୍ରକ୍‌ଚନ୍ଦନ ଦିଆ ହୋଇ ଥାଏ । ଏହାକୁ "ମାଳାଚନ୍ଦନ" କହନ୍ତି । ଏହା ବର୍ତ୍ତମାନ ପାତ୍ରର ଗୁଣ ଦେଖି ଦିଆ ହୁଏନାହିଁ, ବଂଶମର୍ଯ୍ୟାଦା ଦେଖି ଦିଆ ଯାଏ । କୁଳୀନ ଘରେ ଗୋଷ୍ଠୀପତିଙ୍କୁହିଁ ମାଳାଚନ୍ଦନ ଦିଆ ଯାଏ । କାରଣ, କୁଳୀନ ପାଖରେ ଗୋଷ୍ଠୀପତିବଂଶ ବଡ଼ ମାନ୍ୟ । କୃଷ୍ଣଙ୍କ ସମୟରେ ପ୍ରଥାଟା ଠିକଏ ଭିନ୍ନ ପ୍ରକାର ଥିଲି । ସଭାସ୍ଥ ସର୍ବପ୍ରଧାନ ବ୍ୟକ୍ତିଙ୍କୁ ଅର୍ଘ୍ୟ ପ୍ରଦାନ କରିବାକୁ ହୁଅନ୍ତା । ବଂଶମର୍ଯ୍ୟାଦା ଦେଖି ଦିଆ ହୁଅନ୍ତା ନାହିଁ, ପାତ୍ରର ନିଜର ଗୁଣ ଦେଖି ଦିଆ ହୁଅନ୍ତା ।

ଯୁଧିଷ୍ଠିରଙ୍କ ସଭାର ଅର୍ଘ୍ୟ ଦେବାକୁ ହେବ—କିଏ ଏହାର ଉପଯୁକ୍ତ ପାତ୍ର ? ଭାରତ ବର୍ଷୀୟ ସମସ୍ତ ରାଜଗଣ ସଭାସ୍ଥ ହୋଇ-ଛନ୍ତି, ଏମାନଙ୍କ ମଧ୍ୟରେ ଶ୍ରେଷ୍ଠ କିଏ ? ଏହି କଥା ବିଚାର୍ଯ୍ୟ । ଭୀଷ୍ମ କହିଲେ, "କୃଷ୍ଣ ହେଉଛନ୍ତି ସର୍ବଶ୍ରେଷ୍ଠ । ଏହାଙ୍କୁ ଅର୍ଘ୍ୟ ପ୍ରଦାନ କର ।"

ପ୍ରଥମେ ଯେତେବେଳେ ଏହିକଥା କହନ୍ତି, ସେତେବେଳେ ଭୀଷ୍ମ ଯେ କୃଷ୍ଣଙ୍କୁ ଦେବତା ବିବେଚନାରେ ସର୍ବଶ୍ରେଷ୍ଠ ସ୍ଥିର କରିଥିଲେ, ଏପରି ଭାବ କିଛି ପ୍ରକାଶ ନାହିଁ, କୃଷ୍ଣ "ତେଜଃ ବଳ ଓ ପରାକ୍ରମ ବିଷୟରେ ଶ୍ରେଷ୍ଠ" ବୋଲି ତାଙ୍କୁ ଅର୍ଘ୍ୟଦାନ କରିବାକୁ କହିଲେ । ଅର୍ଥାତ୍ ଗୁଣରେ କୃଷ୍ଣ କ୍ଷତ୍ରିୟ ମାନଙ୍କ ଶ୍ରେଷ୍ଠ, ଏଥି ପାଇଁ ଅର୍ଘ୍ୟ ଦେବାକୁ କହିଲେ । ଏଠାରେ ଦେଖା ଯାଉଅଛି ଯେ, ଭୀଷ୍ମ କୃଷ୍ଣଙ୍କର ମନୁଷ୍ୟ ଚରିତ୍ରକୁ କେବଳ ଦେଖୁଛନ୍ତି ।

ଏହି କଥା ଅନୁସାରେ କୃଷ୍ଣଙ୍କୁ ଅର୍ଘ୍ୟ ପ୍ରଦତ୍ତ ହେଲା । ସେ ମଧ୍ୟ ତାହା ଗ୍ରହଣ କଲେ । ଏହା ଶିଶୁପାଳଙ୍କୁ ଅସହ୍ୟ ହେଲା । ଶିଶୁପାଳ ଭୀଷ୍ମ, କୃଷ୍ଣ ଓ ପାଣ୍ଡବମାନଙ୍କୁ ଏକକାଳୀନ ତିରସ୍କାର କରି ଯେଉଁ ବକ୍ତୃତା କଲେ, ବିଲାତରେ ପାର୍ଲେମେଣ୍ଟ ମହାସଭାରେ ତାହା ଉକ୍ତ ହୋଇଥିଲେ ଉଚିତ ଦରରେ ବିକନ୍ତା । ତାଙ୍କ ବକ୍ତୃତାର ପ୍ରଥମ ଭାଗରେ ସେ ଯାହା କହିଲେ, ତାହାର ବାଗ୍ମିତା ବଡ଼ ବିଶୁଦ୍ଧ ଅଥଚ ତୀବ୍ର । କୃଷ୍ଣ ରାଜା ନୁହନ୍ତି, ତେବେ ଏତେ ରାଜା ଥାଉଁ ଥାଉଁ ସେ ଅର୍ଘ୍ୟ ପାଇଲେ କାହିଁକି ? ଯଦି ସ୍ଥବିର ବୋଲି ତାଙ୍କ ପୂଜା କରିଥାଅ, ତେବେ ତାଙ୍କ ବାପ ବସୁଦେବଙ୍କୁ ପୂଜାକଲ ନାହିଁ କାହିଁକି ? ସେ ତୁମର ଆତ୍ମୀୟ ଏବଂ ପ୍ରିୟ-ଚିକୀର୍ଷୁ ବୋଲି କଣ ତାଙ୍କ ପୂଜା କରିଅଛ ? ଶ୍ୱଶୁର ଦ୍ରୁପଦ ଥାଉଁ ଥାଉଁ ତାଙ୍କୁ କାହିଁକି ? କୃଷ୍ଣଙ୍କୁ ଆଚାର୍ଯ୍ୟ * ମନେ କରିଅଛ ? ଦ୍ରୋଣାଚାର୍ଯ୍ୟଙ୍କ ଉପସ୍ଥିତିରେ କୃଷ୍ଣଙ୍କ ଅର୍ଚ୍ଚନା କାହିଁକି ? ଋତ୍ୱିକ ବୋଲି କଣ ତାଙ୍କୁ ଅର୍ଘ୍ୟ ଦେଇଅଛ ?

---

* କୃଷ୍ଣ, ଅଭିମନ୍ୟୁ, ସାତ୍ୟକି ପ୍ରଭୃତି ମହାରଥୀଙ୍କର, ଏବଂ କଦାଚିତ୍ ସ୍ୱୟଂ ଅର୍ଜୁନଙ୍କର ମଧ୍ୟ ଯୁଦ୍ଧବିଦ୍ୟାର ଆଚାର୍ଯ୍ୟ ।

ବେଦବ୍ୟାସ ଥାଉଁ ଥାଉଁ କୃଷ୍ଣ କାହିଁକି? † ଇତ୍ୟାଦି ।

ମହାରାଜ ଶିଶୁପାଳ କଥା କହୁଁ କହୁଁ ଅନ୍ୟାନ୍ୟ ବାଗ୍ମୀଙ୍କ ପରି ଗରମ ହୋଇ ଉଠିଲେ, ସେତେବେଳେ ଲଜିକ(ନ୍ୟାୟଶାସ୍ତ୍ର) ରେଟୋରିକ (ଅଳଙ୍କାର ଶାସ୍ତ୍ର) କୁ ଉଠିଲେ, ବିଗୁର ଛାଡ଼ିଦେଇ ଗାଳି ଦେବାକୁ ଆରମ୍ଭ କଲେ । ପାଣ୍ଡବମାନଙ୍କୁ ଛାଡ଼ି କୃଷ୍ଣଙ୍କୁ ଧରିଲେ । ଅଳଙ୍କାର ଶାସ୍ତ୍ର ବିଲକ୍ଷଣ ବୁଝିଥିଲେ—ପ୍ରଥମେ "ପ୍ରିୟତ୍ଵକର୍ଷ" "ଅପ୍ରାପ୍ତଲକ୍ଷଣ" ଇତ୍ୟାଦି ଛୋଟ ଛୋଟ କଥାରୁ ଆରମ୍ଭ କରି, ଶେଷରେ "ଧର୍ମଭ୍ରଷ୍ଟ" "ଦୁରାତ୍ମା" ପ୍ରଭୃତି ବଡ଼ ବଡ଼ ଗାଳିକୁ ଉଠିଲେ । ପରିଶେଷରେ climax (ଚରମସୀମା) —କୃଷ୍ଣ ଘୃତଭୋଜୀ କୁକୁର, ଦାରପରିଗ୍ରହକାରୀ କ୍ଳୀବ‡ଇତ୍ୟାଦି । ଗାଳିର ଏକଶେଷ କଲେ । ଏ ସବୁ ଶୁଣି, କ୍ଷମାଗୁଣରେ ପରମାଧାର, ପରମଯୋଗୀ, ଆଦର୍ଶ ପୁରୁଷ କୌଣସି ଉତ୍ତର ଦେଲେ ନାହିଁ । କୃଷ୍ଣଙ୍କର ଏପରି ଶକ୍ତି ଥିଲା ଯେ, ତଦ୍ଦଣ୍ଡରେ ସେ ଶିଶୁପାଳଙ୍କୁ ବିନଷ୍ଟ କରିବାକୁ ସକ୍ଷମ ଥିଲେ—ପରବର୍ତ୍ତୀ ଘଟନାରେ ପାଠକ ତାହା ଜାଣିବେ । କୃଷ୍ଣ ମଧ୍ୟ ଆଉ କେବେ ଯେ ଏପରି ପରୁଷବାକ୍ୟରେ ତିରସ୍କୃତ ହୋଇଥିବେ, ଏହା ଦେଖାଯାଏ ନାହିଁ । ତଥାପି ସେ ଏହି ତିରସ୍କାରରେ ଭ୍ରୂକ୍ଷେପ ସୁଦ୍ଧା କଲେ ନାହିଁ । ଇଉରୋପୀୟମାନଙ୍କପରି ଡାକି କହିଲେ ନାହିଁ, "ଶିଶୁପାଳ ! କ୍ଷମା ବଡ଼ ଧର୍ମ, ମୁଁ ତୁମକୁ କ୍ଷମା କଲି।" ନୀରବରେ ଶତ୍ରୁକୁ କ୍ଷମା କଲେ । କର୍ମକର୍ତ୍ତା ଯୁଧିଷ୍ଠିର ଆହୂତ ରାଜାଙ୍କ କ୍ରୋଧ ଦେଖି ତାଙ୍କୁ ସାନ୍ତ୍ଵନା କରିବାକୁ ଗଲେ—ପଞ୍ଚଘରର କର୍ମକର୍ତ୍ତାଙ୍କ ଯେପରି

---

† ଅତଏବ କୃଷ୍ଣ ବିଖ୍ୟାତ ବେଦଜ୍ଞ ଏହା ସ୍ୱୀକୃତ, ହେଲା ।

‡ କୃଷ୍ଣ ଅନପତ୍ୟ ନୁହନ୍ତି-ତେବେ ଇନ୍ଦ୍ରିୟ ପରାୟଣ ବ୍ୟକ୍ତିମାନେ ଜିତେନ୍ଦ୍ରିୟ ବ୍ୟକ୍ତିଙ୍କୁ ଏପରି ଗାଳି ଦେଇଥାନ୍ତି,

ତନ୍ତୁର । ମଧୁର ବାକ୍ୟରେ କୃଷ୍ଣଙ୍କ କୁତ୍ସାକାରୀଙ୍କୁ ତୁଷ୍ଟ କରିବାର ଚେଷ୍ଟା କରିବାକୁ ଲଗିଲେ । ବୁଡ଼ା ଖ୍ରିଷ୍ଟ ଲୌହନନ୍ଦିତ—ତାଙ୍କୁ ସେଟା ଭଲ ଲାଗିଲା ନାହିଁ । ବୁଡ଼ା ସ୍ପଷ୍ଟ କହିଦେଲେ, "କୃଷ୍ଣଙ୍କ ଅର୍ଚ୍ଚନା ଯାହାର ଅନଭିମତ, ଏପରି ବ୍ୟକ୍ତିଙ୍କୁ ଅନୁନୟ ବା ସାନ୍ତ୍ୱନା କରିବା ଅନୁଚିତ ।"

ତତ୍ପରେ କୁରୁବୃଦ୍ଧ ଖ୍ରିଷ୍ଟ, ସଦର୍ଥଯୁକ୍ତ ବାକ୍ୟପରମ୍ପରାଦ୍ୱାରା, କାହିଁକି ସେ କୃଷ୍ଣଙ୍କୁ ଅର୍ଚ୍ଚନାର ପରାମର୍ଶ ଦେଇଥିଲେ, ତାହାର କୈଫିୟତ୍ ଦେବାକୁ ଲାଗିଲେ । ଆମେ ସେହି ବାକ୍ୟଗୁଡ଼ିକର ସାର ଭାଗ ଉଦ୍ଧୃତ କରୁଅଛୁଁ, କିନ୍ତୁ ତାହା ଭିତରେ ଗୋଟାଏ ରହସ୍ୟ ଅଛି, ଆଗେ ଦେଖାଇ ଦିଏଁ । କେତେ ଗୁଡ଼ିଏ ବାକ୍ୟର ତାତ୍ପର୍ଯ୍ୟ ଏହି ଯେ, ଆଉ ସବୁ ମନୁଷ୍ୟର, ବିଶେଷତଃ କ୍ଷିତ୍ରିୟର ଯେଉଁ ସବୁ ଗୁଣ ଥାଏ, ସେ ସବୁ ଗୁଣରେ କୃଷ୍ଣ ସର୍ବଶ୍ରେଷ୍ଠ । ଏଇଥିପାଇଁ ସେ ଅର୍ଘ୍ୟର ଯୋଗ୍ୟ । ପୁଣି ତାର ଭିତରେ ଆଉ କେତେଗୁଡ଼ିଏ କଥା ଅଛି, ତହିଁରେ ଖ୍ରିଷ୍ଟ କହୁଛନ୍ତି ଯେ, କୃଷ୍ଣ ସ୍ୱୟଂ ଜଗଦୀଶ୍ୱର, ଏଥିପାଇଁ କୃଷ୍ଣ ସମସ୍ତଙ୍କର ଅର୍ଚ୍ଚନୀୟ । ଆମେ ଦୁଇ ରକମ ପୃଥକ୍ ପୃଥକ୍ ଦେଖାଉଅଛୁଁ, ପାଠକ ତାହାର ପ୍ରକୃତ ତାତ୍ପର୍ଯ୍ୟ ବୁଝିବାକୁ ଚେଷ୍ଟା କରନ୍ତୁ । ଭୀଷ୍ମ କହିଲେ,

"ଏହି ମହତୀ ନୃପ ସଭାରେ ଜଣେ ମହୀପାଳ ବି ଦୃଷ୍ଟ ହେଉ ନାହାନ୍ତି, ଯାହାଙ୍କୁ କୃଷ୍ଣ ତେଜୋବଳରେ ପରାଜୟ କରିନାହାନ୍ତି ।"

ଏ ଗଲା ମନୁଷ୍ୟତ୍ୱ ବାଦ—ତାରପରେ ଦେବତ୍ୱବାଦ—"ଅଚ୍ୟୁତ କେବଳ ଆମ୍ଭମାନଙ୍କ ପୂଜନୀୟ ଏପରି ନୁହେଁ, ସେହି ମହାଭୁଜ ତ୍ରିଲୋକର ପୂଜନୀୟ । ସେ ଯୁଦ୍ଧରେ ଅସଂଖ୍ୟ କ୍ଷତ୍ରିୟ

ବର୍ଗକୁ ପରାଜୟ କରିଛନ୍ତି, ଏବଂ ଅଖଣ୍ଡ ବ୍ରହ୍ମାଣ୍ଡ ତାଙ୍କ ଠାରେହିଁ ପ୍ରତିଷ୍ଠିତ ରହିଅଛି ।"

ପୁନଶ୍ଚ ମନୁଷ୍ୟତ୍ୱ—

"କୃଷ୍ଣ ଜନ୍ମଅବଧି ଯେଉଁ ସବୁ କାର୍ଯ୍ୟ କରିଛନ୍ତି, ଲୋକେ ମତ୍‌ସନ୍ନିଧାନରେ ପୁନଃ ତତ୍‌ସମୁଦାୟ କୀର୍ତ୍ତନ କରିଛନ୍ତି । ସେ ଅତ୍ୟନ୍ତ ବାଳକ ହେଲେ ବି ଆମେ ତାଙ୍କର ପରୀକ୍ଷା କରି ଥାଉଁ । କୃଷ୍ଣଙ୍କର ଶୌର୍ଯ୍ୟ,ବୀର୍ଯ୍ୟ,କୀର୍ତ୍ତି ଓ ବିଜୟ ପ୍ରଭୃତି ସମସ୍ତ ପରିଜ୍ଞାତ ହୋଇ"—

ପରେ ସଙ୍ଗେ ସଙ୍ଗେ ଦେବତ୍ୱବାଦ,

'ସେହି ଭୂତସୁଖାବହ ଜଗଦର୍ଚ୍ଚିତ ଅଚ୍ୟୁତଙ୍କ ପୂଜାର ବିଧାନ କରିଅଛି ।" ପୁନଶ୍ଚ, ମନୁଷ୍ୟତ୍ୱ, ପରିଷ୍କାର ରକମର—

"କୃଷ୍ଣଙ୍କ ପୂଜ୍ୟତା ବିଷୟରେ ଦୁଇଟି ହେତୁ ଅଛି; ସେ ନିଖିଳ ବେଦବେଦାଙ୍ଗ-ପାରଦର୍ଶୀ ଓ ସମଧିକ ବଳଶାଳୀ । ଫଳତଃ ମନୁଷ୍ୟଲୋକରେ ତାଦୃଶ ବଳବାନ୍ ଏବଂ ବେଦବେଦାଙ୍ଗସମ୍ପନ୍ନ ଦ୍ୱିତୀୟ ବ୍ୟକ୍ତି ପ୍ରତ୍ୟକ୍ଷ ହେବା ସୁକଠିନ । ଦାନ, ଦାକ୍ଷ୍ୟ, ଶ୍ରୁତ ଶୌର୍ଯ୍ୟ, ଲଜ୍ଜା, କୀର୍ତ୍ତି, ବୁଦ୍ଧି, ବିନୟ, ଅନୁପମଶ୍ରୀ, ଧୈର୍ଯ୍ୟ ଓ ସନ୍ତୋଷ ପ୍ରଭୃତି ସମୁଦାୟ ଗୁଣାବଳୀ କୃଷ୍ଣଙ୍କଠାରେ ନିୟତ ବିରାଜିତ ରହିଅଛି । ଅତଏବ ସେଇ ସର୍ବଗୁଣସମ୍ପନ୍ନ ଆଚାର୍ଯ୍ୟ, ପିତା ଓ ଗୁରୁସ୍ୱରୂପ ପୂଜାର୍ହ କୃଷ୍ଣଙ୍କ ପ୍ରତି କ୍ଷମା ପ୍ରଦର୍ଶନ ତୁମ୍ଭମାନଙ୍କର ସର୍ବୋତୋଭାବେ କର୍ତ୍ତବ୍ୟ । ସେ ଋତ୍ୱିକ, ଗୁରୁ, ସମ୍ବନ୍ଧୀ, ସ୍ନାତକ, ରାଜା ଏବଂ ପ୍ରିୟପାତ୍ର । ଏଥି ନିମିତ୍ତ ଅଚ୍ୟୁତ ଅର୍ଚ୍ଚିତ ହୋଇଛନ୍ତି ।" * ପୁନଶ୍ଚ ଦେବତ୍ୱବାଦ, "କୃଷ୍ଣହିଁ

* ପ୍ରଥମ ଅଧ୍ୟାୟରେ ଯାହା ରହିଅଛି- ଅନୁଶୀଳନଧର୍ମ୍ମର ଚରମାଦର୍ଶ ଶ୍ରୀକୃଷ୍ଣ, ଏହି ଶ୍ଲୋକରେ ତାହା ପରିସ୍ଫୁଟ ହୋଇଅଛି ।

ଏହି ଚରାଚର ବିଶ୍ୱର ସୃଷ୍ଟି-ସ୍ଥିତି-ପ୍ରଳୟ କର୍ତ୍ତା, ସେ ଅବ୍ୟକ୍ତ ପ୍ରକୃତି, ସନାତନ, କର୍ତ୍ତା, ଏବଂ ସର୍ବଭୂତର ପରମ ପୂଜନୀୟ, ତାହାଙ୍କର ଆଉ ସନ୍ଦେହ କଣ ? ବୁଦ୍ଧି, ମନ, ମହାନ୍, ପୃଥିବ୍ୟାଦି ପଞ୍ଚଭୂତ, ଏ ସମସ୍ତ ଏକମାତ୍ର କୃଷ୍ଣଙ୍କଠାରେ ପ୍ରତିଷ୍ଠିତ ଅଛି । ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର, ଦିଗ୍ବିଦିକ୍ ସମସ୍ତହିଁ ଏକମାତ୍ର କୃଷ୍ଣଙ୍କଠାରେ ପ୍ରତିଷ୍ଠିତ ଅଛି । ଇତ୍ୟାଦି ।"

ଭୀଷ୍ମ କହିଛନ୍ତି କୃଷ୍ଣଙ୍କ ପୂଜାର ଦୁଇଟି କାରଣ-(୧, ସେ ବଳରେ ସର୍ବଶ୍ରେଷ୍ଠ (୨) ତାଙ୍କ ତୁଲ୍ୟ ବେଦ ବେଦାଙ୍ଗ ପାରଦର୍ଶୀ କେହି ନାହାନ୍ତି । ଅଦ୍ୱିତୀୟ ପରାକ୍ରମର ପ୍ରମାଣ ଏହି ଗ୍ରନ୍ଥରେ ଅନେକ ଦିଆ ଯାଇଅଛି । କୃଷ୍ଣଙ୍କ ଅଦ୍ୱିତୀୟ ବେଦଜ୍ଞତାର ପ୍ରମାଣ ଗୀତା । ଯାହା ଆମ୍ଭେମାନେ ଭଗବଦ୍‌ଗୀତା ବୋଲି ପାଠ କରୁଁ, ତାହା କୃଷ୍ଣ ପ୍ରଣୀତ ନୁହେଁ । ତାହା ବ୍ୟାସ—ପ୍ରଣୀତ ବୋଲି ଖ୍ୟାତ—"ବୈୟାସିକୀ ସଂହିତା" ନାମରେ ପରିଚିତ । ତାହାର ପ୍ରଣେତା ବ୍ୟାସ ହୁଅନ୍ତୁ ବା ଆଉ ଯେ କେହି ହୁଅନ୍ତୁ, ସେ ଠିକ୍ କୃଷ୍ଣଙ୍କ ମୁଖର କଥାଗୁଡ଼ିକ ଟିପିରଖି ସେହି ଗ୍ରନ୍ଥ ସଙ୍କଳନ କରି ନାହାନ୍ତି । ତାହାକୁ ମୌଳିକ ମହାଭାରତର ଅଂଶ ବୋଲି ମଧ୍ୟ ମୋର ବୋଧ ହୁଏ ନାହିଁ । କିନ୍ତୁ ଗୀତା କୃଷ୍ଣଙ୍କ ଧର୍ମମତର ସଙ୍କଳନ, ଏହା ମୋର ବିଶ୍ୱାସ । ତାଙ୍କ ମତାବଲମ୍ବୀ କୌଣସି ମନୀଷୀ କର୍ତ୍ତୃକ ତାହା ଏହି ଆକାରରେ ସଙ୍କଳିତ, ଏବଂ ମହାଭାରତରେ ପ୍ରକ୍ଷିପ୍ତ ହୋଇ ପ୍ରଚାରିତ ହୋଇଅଛି, ଏହାହିଁ ସଙ୍ଗତ ବୋଲି ବୋଧହୁଏ । ବର୍ତ୍ତମାନ କହିବା କଥା ଏହି ଯେ, ଗୀତୋକ୍ତ ଧର୍ମ ଯାହାଙ୍କ ପ୍ରଣୀତ ସେ ସୁସ୍ପଷ୍ଟତଃ ଅଦ୍ୱିତୀୟ ବେଦବିତ୍ ପଣ୍ଡିତ ଥିଲେ । ଧର୍ମ ସମ୍ବନ୍ଧରେ ସେ ବେଦକୁ ସର୍ବୋଚ୍ଚ ସ୍ଥାନରେ ବସାଉ ନଥିଲେ-କେତେବେଳେ ଅତି ବେଦର ଟିକିଏ ଟିକିଏ ନିନ୍ଦା

କରୁଥିଲେ । କିନ୍ତୁ ତଥାପି ଅର୍ବାଚୀନଙ୍କ ବେଦଙ୍କ ଭିନ୍ନ ଅନ୍ୟ କାହାଦ୍ୱାରା ଗୀତୋକ୍ତ ଧର୍ମ ପ୍ରଣୀତ ହୋଇ ନାହିଁ ଏହା ଯେ ଗୀତା ଓ ବେଦ ଉଭୟ ଅଧ୍ୟୟନ କରେ ସେ ଅନାୟାସରେ ବୁଝି ପାରେ ।

ଯେ ଏହିରୂପ ପରାକ୍ରମରେ ଓ ପାଣ୍ଡିତ୍ୟରେ ବୀର୍ଯ୍ୟରେ ଓ ଶିକ୍ଷାରେ, କର୍ମରେ ଓ ଜ୍ଞାନରେ, ଭକ୍ତିରେ ଓ ଧର୍ମରେ ଦୟାରେ ଓ କ୍ଷମାରେ, ତୁଲ୍ୟରୂପେ ସର୍ବଶ୍ରେଷ୍ଠ, ସେଇହିଁ ଆଦର୍ଶ ପୁରୁଷ ।

## ଦଶମ ପରିଚ୍ଛେଦ
## ଶିଶୁପାଳ ବଧ

ଭୀଷ୍ମ କଥା ସମାପ୍ତ କରି, ଶିଶୁପାଳଙ୍କୁ ନିତାନ୍ତ ଅବଜ୍ଞା କରି କହିଲେ, "ଯଦି କୃଷ୍ଣଙ୍କ ପୂଜା ଶିଶୁପାଳଙ୍କର ନିତାନ୍ତ ଅସହ୍ୟ ବୋଧ ହୋଇଥାଏ, ତେବେ ତାଙ୍କର ଯେପରି ଅଭିରୁଚି ହୁଏ କରନ୍ତୁ ।" ଅର୍ଥାତ୍ "ଭଲ ନ ଲାଗିଲେ, ଉଠିଯାଅ ।"

ପରେ ମହାଭାରତରୁ ଉଦ୍ଧୃତ କରୁଅଛୁ :—

"କୃଷ୍ଣ ଅର୍ଚ୍ଚିତ ହେଲେ ଦେଖି ସୁନୀଥନାମା ଜଣେ ମହାବଳ ପରାକ୍ରାନ୍ତ ବୀରପୁରୁଷ କ୍ରୋଧରେ କମ୍ପାନ୍ୱିତ କଳେବର ଓ ଆରକ୍ତନେତ୍ର ହୋଇ ସମସ୍ତ ରାଜଗଣଙ୍କୁ ସମ୍ବୋଧନ କରି କହିଲେ ମୁଁ ପୂର୍ବେ ସେନାପତି ଥିଲି ସମ୍ପ୍ରତି ଯାଦବ ଓ ପାଣ୍ଡବ କୁଳର **ସମୂଳୋନ୍ମୂଳନ** କରିବା ନିମିତ୍ତ ଅଦ୍ୟ ଏହି ସମରସାଗରରେ ଅବଗାହନ କରିବି । ଚେଦିରାଜ ଶିଶୁପାଳ ମହୀପାଳଗଣର ଅବିଚଳିତ ଉତ୍ସାହ ସନ୍ଦର୍ଶନେ ପ୍ରୋତ୍ସାହିତ ହୋଇ ଯଜ୍ଞର ବ୍ୟାଘାତ ଜନ୍ମାଇବା ନିମିତ୍ତ ସେମାନଙ୍କ ସହିତ ମନ୍ତ୍ରଣା କରିବାକୁ ଲାଗିଲେ । ଯେପରି ଯୁଧିଷ୍ଠିରଙ୍କ ଅଭିଷେକ ଏବଂ କୃଷ୍ଣଙ୍କ ପୂଜା ନ ହୁଏ

ତାହା ଆମ୍ଭମାନଙ୍କର ସର୍ବୋତୋଭାବେ କର୍ତ୍ତବ୍ୟ । ରାଜାମାନେ ନିର୍ବେଦ ପ୍ରଯୁକ୍ତ କ୍ରୋଧପରବଶ ହୋଇ ମନ୍ତ୍ରଣା କରୁଥିବାର ଦେଖି କୃଷ୍ଣ ପ୍ରଷ୍ଟ ବୁଝିପାରିଲେ ଯେ ସେମାନେ ଯୁଦ୍ଧ ନିମନ୍ତେ ପରାମର୍ଶ କରୁଛନ୍ତି ।”

ରାଜା ଯୁଧିଷ୍ଠିର ସାଗର ସଦୃଶ ରାଜମଣ୍ଡଳଙ୍କୁ ରୋଷପ୍ରଚଳିତ ଦେଖି ପ୍ରାଜ୍ଞତମ ପିତାମହ ଭୀଷ୍ମଙ୍କୁ ସମ୍ବୋଧନ କରି କହିଲେ, “ହେ ପିତାମହ ! ଏହି ମହାନ୍ ରାଜ ସମୁଦ୍ର ସଂକ୍ଷୋଭିତ ହୋଇ ଉଠିଅଛି, ବର୍ତ୍ତମାନ ଯାହା କର୍ତ୍ତବ୍ୟ ହୁଏ, ଅନୁମତି କରନ୍ତୁ ।”

ଶିଶୁପାଳ ବଧର ଏହାହିଁ ଯଥାର୍ଥ କାରଣ । ଶିଶୁପାଳଙ୍କୁ ବଧ ନ କରିଥିଲେ ସେ ରାଜାଗଣଙ୍କ ସହିତ ମିଳିତ ହୋଇ ଯଜ୍ଞ ନଷ୍ଟ କରି ଥାଆନ୍ତେ ।

ଶିଶୁପାଳ ପୁଣି ଭୀଷ୍ମ ଓ କୃଷ୍ଣଙ୍କୁ ଗୁଡାଏ ଗାଳି ଦେଲେ ।

ଭୀଷ୍ମଙ୍କୁ ଓ କୃଷ୍ଣଙ୍କୁ ଏଥରକ ବଡ଼ ବେଶୀ ଗାଳି ଦେଲେ, “ଦୁରାତ୍ମା,” “ଯାହାକୁ ବାଳକ ମଧ୍ୟ ଘୃଣାକରେ,” “ଗୋପାଳ,” “ଦାସ” ଇତ୍ୟାଦି । ପରମ ଯୋଗୀ ଶ୍ରୀକୃଷ୍ଣ ପୁନର୍ବାର ତାଙ୍କୁ କ୍ଷମାକରି ନୀରବ ହୋଇ ରହିଲେ । କୃଷ୍ଣ ଯେପରି ବଳର ଆଦର୍ଶ କ୍ଷମାରେ ସେହିପରି ଆଦର୍ଶ । ଭୀଷ୍ମ ପ୍ରଥମେ କିଛି କହିଲେ ନାହିଁ, କିନ୍ତୁ ଭୀମ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଶିଶୁପାଳଙ୍କୁ ଆକ୍ରମଣ କରିବା ନିମିତ୍ତ ଉତ୍ଥିତ ହେଲେ । ଭୀଷ୍ମ ତାଙ୍କୁ ନିରସ୍ତ କରି ଶିଶୁପାଳଙ୍କ ପୂର୍ବବୃତ୍ତାନ୍ତ ତାଙ୍କୁ ଶୁଣାଇବାକୁ ଲାଗିଲେ । ଏହି ବୃତ୍ତାନ୍ତ ଅତ୍ୟନ୍ତ ଅସମ୍ଭବ, ଅନୈସର୍ଗିକ ଓ ଅବିଶ୍ୱାସଯୋଗ୍ୟ । ସେ କଥା ଏହି—

ଶିଶୁପାଳଙ୍କ ଜନ୍ମକାଳରେ ତାଙ୍କର ତିନୋଟି ଚକ୍ଷୁ ଓ ଚାରିଟି ହାତ ହୋଇଥିଲା, ଏବଂ ସେ ଗର୍ଦ୍ଦଭ ପରି ଚିତ୍କାର କରିଥିଲେ । ଏରୂପ ଦୁର୍ଲକ୍ଷଣଯୁକ୍ତ ପୁତ୍ରକୁ ତାଙ୍କ ପିତା ମାତା ପରିତ୍ୟାଗ କରିବା

ଶ୍ରେୟ ବୋଲି ବିବେଚନା କଲେ । ଏପରି ସମୟରେ, ଦୈବବାଣୀ ହେଲା । ସେ କାଳରେ ଯେଉଁମାନେ କପୋଳକଳ୍ପିତ ଗଳ୍ପ ପ୍ରସ୍ତୁତ କରନ୍ତେ, ଦୈବବାଣୀର ସାହାଯ୍ୟ ଭିନ୍ନ ସେମାନଙ୍କ ଗଳ୍ପ ଜମିପାରନ୍ତା ନାହିଁ । ଦୈବବାଣୀ କହିଲା, "ଭଲ ପୁଅଟି, ପକାଇ ଦିଅନାହିଁ, ଭଲକରି ପ୍ରତିପାଳନ କର ! ଯମ ମଧ୍ୟ ଏହାର କିଛି କରି ପାରିବେ ନାହିଁ । ତେବେ ଯେ ଏକୁ ମାରିବ, ସେ ଜନ୍ମିଛନ୍ତି ।" ତେଣୁ ବାପ ମା ପଚାରିଲେ "ବାପ ଦୈବବାଣୀ, କିଏ ମାରିବ ନାମଟା କହିଦିଅ ନା ?" ବର୍ତ୍ତମାନ ଦୈବବାଣୀ ଯଦି ଏତେ କଥା କହିଲେ, ତେବେ କୃଷ୍ଣଙ୍କ ନାମଟା କହିଦେଲେଇତ ଗୋଳ ମିଟି ଯାନ୍ତା । କିନ୍ତୁ ତାହାହେଲେ ଗଳ୍ପର plot interest ( ଗଳ୍ପ ରହସ୍ୟର ଚିତ୍ତାକର୍ଷକତା) ହୁଅନ୍ତା ନାହିଁ । ଅତଏବ ସେ କେବଳ କହିଲେ "ଯା କୋଳରେ ଦେଲେ ପୁଅର ବେଶୀ ହାତ ଦୁଇଟା ଖସି ପଡିବ, ଅଧିକା ଆଖିଟା ମିଳେଇ ଯିବ, ସେ ଏକୁ ମାରିବ ।"

ଏଣୁ ଶିଶୁପାଳଙ୍କ ବାପ ଦେଶର ଲୋକ ଧରିଆଣି କୋଳରେ ପୁଅକୁ ଦେବାକୁ ଲାଗିଲେ । କାହାରି କୋଳକୁ ଗଲେ ପୁଅର ଅଧିକା ହାତ ବା ଆଖି ଗଲାନାହିଁ । କୃଷ୍ଣ ଶିଶୁପାଳର ସମ-ବୟସ୍କ ବୋଲି ବୋଧହୁଏ । କାରଣ ଉଭୟେ ଏକ ସମୟରେ ରୁକ୍ମିଣୀଙ୍କୁ ବିବାହ କରିବାର ଉମେଦାର ଥିଲେ, ଏବଂ ଦୈବ-ବାଣୀଙ୍କ 'ଜନ୍ମଗ୍ରହଣ କରିଛନ୍ତି' କଥାରୁ ମଧ୍ୟ ଏହିପରି ବୁଝାଏ । କିନ୍ତୁ ତଥାପି କୃଷ୍ଣ ଦ୍ୱାରକାରୁ ଚେଦି ଦେଶକୁ ଯାଇ ଶିଶୁପାଳକୁ କୋଳ କଲେ । ସଙ୍ଗେ ସଙ୍ଗେ ଶିଶୁପାଳର ଦୁଇଟା ହାତ ଖସିଗଲା, ଆଉ ଗୋଟାଏ ଆଖି ମିଳାଇ ଗଲା ।

ଶିଶୁପାଳଙ୍କ ମା କୃଷ୍ଣଙ୍କ ପିଉସୀ । ପିଉସୀ କୃଷ୍ଣଙ୍କୁ ଜବର-ଦସ୍ତି କରି ଧରି କହିଲେ, "ବାପ ! ମୋ ପୁଅକୁ ମାରି ପାରିବୁ

ନାହିଁ ।" କୃଷ୍ଣ ସ୍ୱୀକାର କଲେ, ଶିଶୁପାଳର ବଧୋଚିତ ଶତ ଅପରାଧ ସେ କ୍ଷମା କରିବେ ।

ଯାହା ଅନୈସର୍ଗିକ ତାହା ଆମେ ବିଶ୍ୱାସ କରୁ ନାହିଁ । ବୋଧ ହୁଏ ପାଠକ ମାନେ ମଧ୍ୟ କରନ୍ତୁ ନାହିଁ । କୌଣସି ଇତିହାସରେ ଅନୈସର୍ଗିକ ଘଟଣା ପାଇଲେ ତାହା ଲେଖକଙ୍କର ବା ତାଙ୍କ ପୂର୍ବଗାମୀ ମାନଙ୍କର କଳ୍ପନା ପ୍ରସୂତ ବୋଲି ସମସ୍ତେହିଁ କହିବେ । କ୍ଷମାଗୁଣର ମାହାତ୍ମ୍ୟ ବୁଝନ୍ତି ନାହିଁ, ଏବଂ କୃଷ୍ଣଚରିତର ମାହାତ୍ମ୍ୟ ବୁଝନ୍ତି ନାହିଁ, ଏପରି କୌଣସି କବି, କୃଷ୍ଣଙ୍କ ଅଦ୍ଭୁତ କ୍ଷମାଶୀଳତା ବୁଝି ନ ପାରି, ଲୋକଙ୍କୁ ଶିଶୁପାଳଙ୍କ ପ୍ରତି କ୍ଷମାର କାରଣ ବୁଝାଇବା ନିମିତ୍ତ ଏହି ଅଦ୍ଭୁତ ଉପନ୍ୟାସ ପ୍ରସ୍ତୁତ କରିଛନ୍ତି । ଅନ୍ଧ ଅନ୍ଧକୁ ବୁଝାଏ, ହାତୀ କୁଲା ପରି । ଅସୁର ବଧ ନିମିତ୍ତ ଯେଉଁ କୃଷ୍ଣ ଅବତୀର୍ଣ୍ଣ, ସେ ଯେ ଅସୁରର ଅପରାଧ ପାଇ କ୍ଷମା କରିବେ, ଏହା ଅସଙ୍ଗତ ଅଟେ । କୃଷ୍ଣଙ୍କୁ ଅସୁର ବଧାର୍ଥ ଅବତୀର୍ଣ୍ଣ ମନେ କରିଲେ, ଏହି କ୍ଷମାଗୁଣ ମଧ୍ୟ ବୁଝା ଯାଏ ନାହିଁ, ତାଙ୍କର କୌଣସି ଗୁଣ ବି ବୁଝା ଯାଏ ନାହିଁ । କିନ୍ତୁ ତାଙ୍କୁ ଆଦର୍ଶ ପୁରୁଷ ବୋଲି ଭାବିଲେ, ମନୁଷ୍ୟତ୍ୱର ଆଦର୍ଶର ବିକାଶ ନିମିତ୍ତ ଅବତୀର୍ଣ୍ଣ, ଏହା ଭାବିଲେ, ତାଙ୍କର ସମସ୍ତ କାର୍ଯ୍ୟହିଁ ବିଶଦ ରୂପେ ବୁଝା ଯାଏ । କୃଷ୍ଣଚରିତ ସ୍ୱରୂପ ରତ୍ନଭଣ୍ଡାର ଖୋଲିବାର ଚାବି ଏହି ଆଦର୍ଶ-ପୁରୁଷ ତତ୍ତ୍ୱ ।

ଶିଶୁପାଳଙ୍କ କେତେ ଦୋଷ କଟୁକ୍ତି କୃଷ୍ଣ ସହ୍ୟ କରିଥିଲେ ବୋଲି ଯେ କୃଷ୍ଣଙ୍କ କ୍ଷମାଗୁଣର ପ୍ରଶଂସା କରୁଅଛି, ତାହା ନୁହେଁ । ଶିଶୁପାଳ ଇତିପୂର୍ବେ କୃଷ୍ଣଙ୍କ ଉପରେ ଅନେକ ଅତ୍ୟାଚାର କରିଥିଲା । କୃଷ୍ଣ ପ୍ରାଗ୍‌ଜ୍ୟୋତିଷପୁର ଗମନ କଲେ ସେ, ସୁବିଧା ପାଇ, ଦ୍ୱାରକା ଦଗ୍ଧ କରି ପଳାଇଥିଲା । କୌଣସି ସମୟରେ ଭୋଜବଂଶ ରୈବ-

ତଙ୍କ ଦ୍ୱାରକାରେ ଗଲେ ଶିଶୁପାଳ ସେହି ସମୟରେ ଆସି ଅନେକ ଯାଦବଙ୍କୁ ବିନଷ୍ଟ ଓ ବନ୍ଧ କରିଥିଲା । ବସୁଦେବଙ୍କ ଅଶ୍ୱମେଧର ଘୋଡ଼ା ଚୋରି କରିଥିଲା । ଏହା ତତ୍କାଳୀନ କ୍ଷତ୍ରିୟ ମାନଙ୍କ ନିକଟରେ ବଡ଼ ଗୁରୁତର ଅପରାଧ ବୋଲି ଗଣ୍ୟ । ଏ ସମସ୍ତ କୃଷ୍ଣ କ୍ଷମା କରିଥିଲେ । ଆଉ ମଧ୍ୟ କେବଳ ଶିଶୁପାଳଙ୍କର ସେ ସେ ବୈରାଚରଣ କ୍ଷମା କରିଥିଲେ ତାହା ନୁହେଁ । ଜରାସନ୍ଧ ମଧ୍ୟ ତାଙ୍କୁ ବାରମ୍ବାର ରୂପେ ପୀଡ଼ିତ କରିଥିଲେ । ସ୍ୱତଃ ହେଉ, ପରତଃ ହେଉ, କୃଷ୍ଣ ସେ ଜରାସନ୍ଧନାଶ ସାଧନରେ ସକ୍ଷମ, ତାହା ଦେଖାଇ ଅଛୁ । କିନ୍ତୁ ଯେତେ ଦିନ ପର୍ଯ୍ୟନ୍ତ ଜରାସନ୍ଧ ରାଜମଣ୍ଡଳଙ୍କୁ ଆବଦ୍ଧ କରି ପଶୁପତିଙ୍କ ନିକଟରେ ବଳି ଦେବାକୁ ପ୍ରବୃତ୍ତ ହୋଇ ନ ଥିଲା, ସେତେଦିନ ପର୍ଯ୍ୟନ୍ତ ସେ ତାଙ୍କ ପ୍ରତି କୌଣସି ପ୍ରକାର ବୈରାଚରଣ କରି ନଥିଲେ । କିନ୍ତୁ କାଳେ ଯୁଦ୍ଧ ହୋଇ ଲୋକ-କ୍ଷୟ ହେବ ବୋଲି, ନିଜେ ଉଠିଯାଇ ରୈବତକରେ ଗଡ଼ ବାନ୍ଧି ରହିଲେ । ସେହିପରି ଯେତେଦିନ ପର୍ଯ୍ୟନ୍ତ ଶିଶୁପାଳ କେବଳ ତାଙ୍କର ଶତ୍ରୁତା କରିଥିଲା, ସେତେଦିନ ପର୍ଯ୍ୟନ୍ତ କୃଷ୍ଣ ତାଙ୍କର କୌଣସି ପ୍ରକାର ଅନିଷ୍ଟ କରି ନାହାନ୍ତି । ତାର ପରେ ଯେତେ-ବେଳେ ସେ ପାଣ୍ଡବଙ୍କ ଯଜ୍ଞର ବିଘ୍ନ ଓ ଧର୍ମରାଜ୍ୟ ସଂସ୍ଥାପନର ବିଘ୍ନ କରିବାକୁ ଉଦ୍ୟତ ହେଲା, କୃଷ୍ଣ ସେତେବେଳେ ତାଙ୍କୁ ବଧ କଲେ, ଆଦର୍ଶ ପୁରୁଷଙ୍କ କ୍ଷମା, କ୍ଷମା ପରାୟଣତାର ଆଦର୍ଶ, ଏଣୁ କେହି ତାଙ୍କର ଅନିଷ୍ଟ କଲେ, ସେ ତାର କୌଣସି ପ୍ରକାର ବୈର ସାଧନ କରୁ ନ ଥିଲେ । କିନ୍ତୁ ଆଦର୍ଶ ପୁରୁଷ ଦଣ୍ଡପ୍ରଣେତାଙ୍କର ମଧ୍ୟ ଆଦର୍ଶ, ଏଥିପାଇଁ କେହି ସମାଜର ଅନିଷ୍ଟ ସାଧନରେ ଉଦ୍ୟତ ହେଲେ, ସେ ତାହାକୁ ଦଣ୍ଡିତ କରୁଥିଲେ ।

କୃଷ୍ଣଙ୍କ କ୍ଷମାଗୁଣର ପ୍ରସଙ୍ଗ ଉଠିଲେ କର୍ଣ୍ଣ ଦୁର୍ଯ୍ୟୋଧନଙ୍କ ପ୍ରତି

ସେ ଯେଉଁ କ୍ଷମା ପ୍ରକାଶ କରିଥିଲେ, ତାହାର ଉଲ୍ଲେଖ ନ କରି ରହି ହେବ ନାହିଁ । ତାହା ଉଦ୍ୟୋଗ ପର୍ବର କଥା, ବର୍ତ୍ତମାନ କହିବାର ନୁହେଁ । କର୍ଣ୍ଣ ଦୁର୍ଯୋଧନ ଯେଉଁ ଅବସ୍ଥାରେ ତାଙ୍କୁ ବନ୍ଧନ କରିବାର ଉଦ୍ୟୋଗ କରିଥିଲେ, ସେ ଅବସ୍ଥାରେ ଆଜି କାହାକୁ କେହି ବନ୍ଧନର ଉଦ୍ୟୋଗ କରିଥିଲେ ବୋଧ ହୁଏ ଯିଶୁଙ୍କ ଛଡ଼ା ଅନ୍ୟ କୌଣସି ମନୁଷ୍ୟ ଶତ୍ରୁକୁ ମାର୍ଜ୍ଜନା କରନ୍ତେ ନାହିଁ । କୃଷ୍ଣ ସେମାନଙ୍କୁ କ୍ଷମା କରିଥିଲେ, ପରେ ବନ୍ଧୁଭାବରେ କର୍ଣ୍ଣଙ୍କ ସହିତ କଥୋପକଥନ କରିଥିଲେ, ଏବଂ ସେମାନଙ୍କ ବିରୁଦ୍ଧରେ ମହାଭାରତ ଯୁଦ୍ଧରେ ଆଦୌ ଅସ୍ତ୍ର ଧାରଣ କରି ନ ଥିଲେ ।

ଭୀଷ୍ମ ଓ ଶିଶୁପାଳଙ୍କ ମଧ୍ୟରେ ଆହୁରି କିଛି କଳିକଜିଆ ହେଲା । ଭୀଷ୍ମ କହିଲେ ଶିଶୁପାଳ କୃଷ୍ଣଙ୍କ ତେଜରେହିଁ ତେଜସ୍ୱୀ, ସେ ବର୍ତ୍ତମାନ ଶିଶୁପାଳଙ୍କ ତେଜୋହରଣ କରିବେ । "ଶିଶୁପାଳ ଜଳି ଉଠି ଭୀଷ୍ମଙ୍କୁ ଅନେକ ଗାଳି ଦେଇ ଶେଷରେ କହିଲା" "ତୁମର ଜୀବନ ଏହି ଭୂପାଳମାନଙ୍କ ଅନୁଗ୍ରହାଧୀନ, ଏମାନେ ମନେ କଲେ ତୁମର ପ୍ରାଣସଂହାର କରି ପାରନ୍ତି । " ଭୀଷ୍ମ ସେ ସମୟରେ କ୍ଷତ୍ରିୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ଯୋଦ୍ଧା— ସେ କହିଲେ "ମୁଁ ଏମାନଙ୍କୁ ତୃଣତୁଲ୍ୟ ବୋଧ କରୁ ନାହିଁ ।" ଏହା ଶୁଣି ସମବେତ ରାଜମଣ୍ଡଳି ଗର୍ଜ୍ଜି ଉଠି କହିଲେ, "ଏଇ ଭୀଷ୍ମଙ୍କୁ ପଶୁବତ୍ ବଧ କର ଅଥବା ପ୍ରଦୀପ୍ତ ହୁତାଶନରେ ଦଗ୍ଧକର" ଭୀଷ୍ମ ଉତ୍ତର କଲେ "ଯାହା ହୁଏ କର, ମୁଁ ଏଇ ତୁମ ମସ୍ତକରେ ପଦାର୍ପଣ କଲି ।"

ବୁଢ଼ାକୁ ଜୋରରେ ପାରିବାର ଜୁ ନାହିଁ, ବସ୍ତୁରରେ ବି ପାରିବାର ଜୁ ନାହିଁ । ଭୀଷ୍ମ ସେତେବେଳେ ରାଜାମାନଙ୍କୁ ମୀମାଂସାର ସହଜ ଉପାୟଟା ଦେଖେଇ ଦେଲେ, । ସେ ଯାହା କହିଲେ, ତାହାର ସ୍ଥୂଳ ମର୍ମ ଏହି;— ଆଚ୍ଛା କୃଷ୍ଣଙ୍କୁ ପୂଜା କରିଅଛୁ ବୋଲି ତୁମେ

ଗୋଳମାଳ କରୁଅଛ; ତାଙ୍କ ଶ୍ରେଷ୍ଠତ୍ୱ ମାନୁ ନାହିଁ । ଗୋଳମାଳରେ କାମ କଅଣ ? ସେତ ସାମନାରେ ଅଛନ୍ତି-ଥରେ ପରୀକ୍ଷା କରି ଦେଖ ନା ? ଯାହାଙ୍କ ମରଣ ଯୋଗ ଅଛି, ସେ ଥରେ କୃଷ୍ଣଙ୍କୁ ଯୁଦ୍ଧରେ ଆହ୍ୱାନ କରି ଦେଖନ୍ତୁ ନା ? ”

ଏହା ଶୁଣି ଶିଶୁପାଳ କଣ ଚୁପ କରି ରହି ପାରେ ? ଶିଶୁପାଳ କୃଷ୍ଣଙ୍କୁ ଡାକ କହିଲା, "ଆସ, ସଂଗ୍ରାମ କର, ତୁମକୁ ଯୁଦ୍ଧରେ ଆହ୍ୱାନ କରୁଅଛି । ”

ଏତେବେଳେ କୃଷ୍ଣ ପ୍ରଥମ କଥା କହିଲେ । କିନ୍ତୁ ଶିଶୁପାଳଙ୍କ ସଙ୍ଗେ ନୁହେଁ । କ୍ଷତ୍ରିୟ ହୋଇ କୃଷ୍ଣ ଯୁଦ୍ଧରେ ଆହୂତ ହୋଇଛନ୍ତି, ଆଉ ଯୁଦ୍ଧରେ ବିମୁଖ ହେବାର ବାଟ ରହିଲା ନାହିଁ; ଏବଂ ଯୁଦ୍ଧର ମଧ୍ୟ ଧର୍ମତଃ ପ୍ରୟୋଜନ ଥିଲା । ସେତେବେଳେ ସଭାସ୍ଥ ସମସ୍ତଙ୍କୁ ସମ୍ବୋଧନ କରି ଶିଶୁପାଳକୃତ ପୂର୍ବାପରାଧ ସବୁ ଗୋଟି ଗୋଟି କରି ବିବୃତ କଲେ । ତାରପରେ କହିଲେ, "ଏତେଦିନ କ୍ଷମା କରି ଅଛି । ଆଜି କ୍ଷମା କରିବି ନାହିଁ ।”

ଏହି କୃଷ୍ଣୋକ୍ତି ମଧ୍ୟରେ ଏପରି କଥା ଅଛି ଯେ, ସେ ପିତୃ-ଷ୍ୱସାଙ୍କ ଅନୁରୋଧରେହିଁ ତାଙ୍କର ଏତେ ଅପରାଧ କ୍ଷମା କରି ଅଛନ୍ତି । ଇତିପୂର୍ବେ ଯାହା କହିଅଛି, ତାହା ସ୍ମରଣ କରି ହୁଏତ ପାଠକ ପଚାରିବେ, ଏ କଥାଟା ମଧ୍ୟ ପ୍ରକ୍ଷିପ୍ତ ? ଆମର ଉତ୍ତର ଏହି ଯେ, ଏହା ପ୍ରକ୍ଷିପ୍ତ ହେଲେ ହୋଇପାରେ, କିନ୍ତୁ ପ୍ରକ୍ଷିପ୍ତ ବିବେଚନା କରିବାର କୌଣସି ପ୍ରୟୋଜନ ଦେଖୁ ନାହିଁ । ଏଥିରେ ଅନୈସର୍ଗିକତା କିଛି ନାହିଁ; ବରଂ ଏହା ବିଶେଷ ରୂପେ ସ୍ୱାଭାବିକ ଓ ସମ୍ଭବ । ପୁଅ ଦୁରନ୍ତ, କୃଷ୍ଣଦ୍ୱେଷୀ, କୃଷ୍ଣ ମଧ୍ୟ ବଳବାନ୍, ମନେ କଲେ ଶିଶୁପାଳକୁ ମାଛିପରି ଚିପି ମାରି ପାରନ୍ତି, ଏପରି ଅବସ୍ଥାରେ ପିଉସୀ ଯେ ଭ୍ରାତୃଷ୍ପୁତ୍ରଙ୍କୁ ଅନୁରୋଧ କରିବେ, ଏହା

ଖୁବ ସମ୍ଭବ । କ୍ଷମାତତ୍ପୂର୍ଣ କୃଷ୍ଣ ଶିଶୁପାଳଙ୍କୁ ନିଜ ଗୁଣରେ କ୍ଷମା କଲେ ସୁଦ୍ଧା ପିଉସୀଙ୍କ ଅନୁରୋଧ ସ୍ମରଣ ରଖିବେ, ଏହା ବି ଖୁବ ସମ୍ଭବ । ପୁଣି ପିଉସୀଙ୍କ ପୁଅକୁ ବଧ କରିବା ଆପାତତଃ ନିନ୍ଦନୀୟ କାର୍ଯ୍ୟ । କୃଷ୍ଣ ପିଉସୀଙ୍କ ଖାତିର କରୁହିଁ କଲେ ନାହିଁ, ଏ କଥାଟା ମଧ୍ୟ ଉଠି ପାରନ୍ତା । ସେ କଥାର ଗୋଟାଏ କୈଫିୟତ୍ ଦେବା ଆବଶ୍ୟକ । ଏଥି ନିମିତ୍ତ କୃଷ୍ଣଙ୍କ ଉକ୍ତି ଖୁବ୍ ସଙ୍ଗତ ।

ଏହା ପରେ ମଧ୍ୟ ପୁଣି ଗୋଟାଏ ଅନୈସର୍ଗିକ କାଣ୍ଡ ଉପସ୍ଥିତ ଶ୍ରୀକୃଷ୍ଣ,ଶିଶୁପାଳଙ୍କ ବଧ ନିମିତ୍ତ ନିଜର ଚକ୍ରାସ୍ତ୍ର ସ୍ମରଣ କଲେ । ସ୍ମରଣ କଲାମାତ୍ରେ ଚକ୍ର ତାଙ୍କ ହାତରେ ଆସି ଉପସ୍ଥିତ ହେଲା । ସେତେବେଳେ କୃଷ୍ଣ ଚକ୍ର ଦ୍ୱାରା ଶିଶୁପାଳଙ୍କ ମୁଣ୍ଡ କାଟି ପକାଇଲେ ।

ବୋଧହୁଏ, ଏହି ଅନୈସର୍ଗିକ ବ୍ୟାପାରକୁ କେହି ହେଲେ ପାଠକ ଐତିହାସିକ ଘଟଣା ବୋଲି ଗ୍ରହଣ କରିବେ ନାହିଁ । ସେ କହିବେ, କୃଷ୍ଣ ଈଶ୍ୱରାବତାର, ଈଶ୍ୱରଙ୍କଠାରେ ସମସ୍ତ ସମ୍ଭବ, ତାଙ୍କୁ ପକ୍ଷରେ, ଯଦି ଚକ୍ରଦ୍ୱାରା ଶିଶୁପାଳଙ୍କୁ ବଧ କରିବାକୁ ହେବ, ତେବେ ସେଥି ନିମିତ୍ତ କୃଷ୍ଣଙ୍କର ମନୁଷ୍ୟଶରୀର ଧାରଣର କି ପ୍ରୟୋଜନ ଥିଲା ? ଚକ୍ରତ ଚେତନାବିଶିଷ୍ଟ ଜୀବତୁଲ୍ୟ ଆଜ୍ଞାନୁସାରେ ଯାତାୟାତ କରି ପାରେ ବୋଲି ଦେଖା ଯାଉଅଛି । ତେବେ ବୈକୁଣ୍ଠରେ ଥାଇ ବିଷ୍ଣୁ ତାକୁ ଶିଶୁପାଳର ଶିରଚ୍ଛେଦ ନିମିତ୍ତ ପଠାଇ ପାରିଲେ ନାହିଁ କାହିଁକି ? ଏପରି ସବୁ କାମପାଇଁ ମନୁଷ୍ୟ ଶରୀର ଧାରଣର ପ୍ରୟୋଜନ କଣ ? ଈଶ୍ୱର କଣ ନିଜର ନୈସର୍ଗିକ ନିୟମ ଦ୍ୱାରା ବା କେବଳ ଇଚ୍ଛାମାତ୍ର ଗୋଟିଏ ମନୁଷ୍ୟର ମୃତ୍ୟୁ ଘଟାଇ ପାରନ୍ତି ନାହିଁ ଯେ, ସେଥି ନିମିତ୍ତ ତାଙ୍କୁ ମନୁଷ୍ୟ ଦେହ ଧାରଣ କରିବାକୁ ହେବ ? ଏବଂ ମନୁଷ୍ୟ-ଦେହ ଧାରଣ

କଲେ ମଧ୍ୟ ସେ କଣ ଏପରି ହୀନବଳ ହେବେ ଯେ, ସ୍ୱୀୟ ମାନୁଷୀଶକ୍ତିଦ୍ୱାରା ଗୋଟାଏ ମନୁଷ୍ୟ ସହିତ ପାରି ଉଠିବେ ନାହିଁ, ଐଶୀ ଶକ୍ତି ଦ୍ୱାରା ଦୈବ ଅସ୍ତ୍ରକୁ ସ୍ମରଣ କରି ଆଣିବାକୁ ହେବ ? ଈଶ୍ୱର ଯଦି ଏପରି ଅଳ୍ପଶକ୍ତିମାନ୍ ହୁଅନ୍ତି; ତେବେ ମନୁଷ୍ୟ ସହିତ ତାଙ୍କ ତଫାତ୍ ବଡ଼ ଅଳ୍ପ । ଆମେ ମଧ୍ୟ କୃଷ୍ଣଙ୍କ ଈଶ୍ୱରତ୍ୱ ଅସ୍ୱୀକାର କରୁ ନା-କରୁ ଆମ ମତରେ କୃଷ୍ଣ ମାନୁଷୀ ଶକ୍ତି ଭିନ୍ନ ଅନ୍ୟଶକ୍ତିର ଆଶ୍ରୟ ଗ୍ରହଣ କରନ୍ତେ ନାହିଁ, ଏବଂ ମାନୁଷୀ ଶକ୍ତି ଦ୍ୱାରହିଁ ସମସ୍ତ କାର୍ଯ୍ୟ ସମ୍ପନ୍ନ କରୁଥିଲେ । ଏହି ଅନୈସର୍ଗିକ ଚକ୍ରାସ୍ତ୍ରସ୍ମରଣବୃତ୍ତାନ୍ତ ଯେ ଅଳୀକ ଓ ପ୍ରକ୍ଷିପ୍ତ, କୃଷ୍ଣ ଯେ ସାଧାରଣଯୁଦ୍ଧଦ୍ୱାରା ଶିଶୁପାଳକୁ ନିହତ କରିଥିଲେ, ତାହାର ପ୍ରମାଣ ମହାଭାରତରେଇ ଅଛି । ଉଦ୍ୟୋଗପର୍ବରେ ଧୃତରାଷ୍ଟ୍ର ଶିଶୁପାଳ ବଧର ଇତିହାସ କହୁଛନ୍ତି, ଯଥା,

"ପୂର୍ବେ ରାଜସୂୟ ଯଜ୍ଞରେ, ଚେଦିରାଜ ଓ କରୁଷକ ପ୍ରଭୃତି ଯେଉଁ ସମସ୍ତ ଭୂପାଳ ସର୍ବପ୍ରକାର ଉଦ୍ୟୋଗବିଶିଷ୍ଟ ହୋଇ ବହୁସଂଖ୍ୟକ ବୀରପୁରୁଷ ସମଭିବ୍ୟାହାରରେ ଏକତ୍ର ସମବେତ ହୋଇଥିଲେ, ତନ୍ମଧ୍ୟରେ ଚେଦିରାଜତନୟ ସୂର୍ଯ୍ୟଙ୍କ ପରି ପ୍ରତାପଶାଳୀ, ଶ୍ରେଷ୍ଠ ଧନୁର୍ଦ୍ଧର ଓ ଯୁଦ୍ଧରେ ଅଜେୟ । ଭଗବାନ କୃଷ୍ଣ କ୍ଷଣକାଳ ମଧ୍ୟରେ ତାଙ୍କୁ ପରାଜୟ କରି କ୍ଷତ୍ରିୟଗଣଙ୍କ ଉତ୍ସାହ ଭଙ୍ଗ କରିଥିଲେ; ଏବଂ କରୁଷରାଜପ୍ରମୁଖ ନରେନ୍ଦ୍ରବର୍ଗ ଯେ ଶିଶୁପାଳଙ୍କ ସମ୍ମାନ ବର୍ଦ୍ଧନ କରିଥିଲେ, ସେମାନେ ସିଂହସ୍ୱରୂପ କୃଷ୍ଣଙ୍କୁ ରଥାରୂଢ଼ ନିରୀକ୍ଷଣ କରି ଚେଦିପତିଙ୍କୁ ପରିତ୍ୟାଗ କରି କ୍ଷୁଦ୍ର ମୃଗ ତୁଲ୍ୟ ପଳାୟନ କଲେ, ସେ ସେତେବେଳେ ଅବଲୀଳାକ୍ରମେ ଶିଶୁପାଳଙ୍କ ପ୍ରାଣସଂହାର ପୂର୍ବକ ପାଣ୍ଡବମାନଙ୍କ ଯଶ ଓ ମାନ ବର୍ଦ୍ଧନ କଲେ ।"—୧୨ ଅଧ୍ୟାୟ ।

ଏଠାରେ ତ ଚନ୍ଦକଥା କିଛି ଦେଖା ପଡ଼ୁନାହିଁ । ଦେଖା ଯାଏ, କୃଷ୍ଣଙ୍କୁ ରଥାରୂଢ଼ ହୋଇ ଶତ୍ରୁମତ ମାନୁଷିକ ସଂଗ୍ରାମରେ ପ୍ରବୃତ୍ତ ହେବାକୁ ହୋଇଥିଲା । ଏବଂ ସେ ମଣିଷ ଯୁଦ୍ଧରେହିଁ ଶିଶୁପାଳ ଓ ତାହାର ଅନୁଚରବର୍ଗଙ୍କୁ ପରାଭୂତ କରିଥିଲେ । ଯେଉଁଠାରେ ଗୋଟିଏ ଗ୍ରନ୍ଥରେ ଏକ ଘଟନାର ଦୁଇ ପ୍ରକାର ବର୍ଣ୍ଣନା ଦେଖାଯାଏ—ଗୋଟିଏ ନୈସର୍ଗିକ, ଅପରଟି ଅନୈସର୍ଗିକ, ସେଠାରେ ଅନୈସର୍ଗିକ ବର୍ଣ୍ଣନାକୁ ଅଗ୍ରାହ୍ୟ କରି ନୈସର୍ଗିକକୁ ଐତିହାସିକ ବୋଲି ଗ୍ରହଣ କରିବାହିଁ ବିଧେୟ । ଯେ ପୁରାଣ ଓ ଇତିହାସ ମଧ୍ୟରେ ସତ୍ୟର ଅନୁସନ୍ଧାନ କରିବେ, ସେ ଯେପରି ଏହି ସହଜ କଥାଟା ସ୍ମରଣ ରଖନ୍ତି । ତା ନ ହେଲେ ସବୁ ପରିଶ୍ରମ ବିଫଳ ହେବ ।

ଶିଶୁପାଳବଧର ଆମେ ଯେଉଁ ସମାଲୋଚନା କଲୁଁ, ତହିଁରେ ଉକ୍ତ ଘଟନାର ସ୍ଥୂଳ ଐତିହାସିକ ତତ୍ତ୍ୱ ଆମେ ଏହିପରି ଦେଖୁଅଛୁଁ । ରାଜସୂୟର ମହାସଭାରେ ସକଳ କ୍ଷତ୍ରିୟ ଅପେକ୍ଷା କୃଷ୍ଣଙ୍କ ଶ୍ରେଷ୍ଠତା ସ୍ୱୀକୃତ ହୋଇ ଅଛି । ଏଥିରେ ଶିଶୁପାଳ ପ୍ରଭୃତି କେତେଜଣ କ୍ଷତ୍ରିୟ ରୁଷ୍ଟ ହୋଇ ଯଜ୍ଞ ନଷ୍ଟ କରିବା ନିମିତ୍ତ ଯୁଦ୍ଧ ଉପସ୍ଥିତ କରନ୍ତି । କୃଷ୍ଣ ସେମାନଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ପରାଜିତ କରିଥିଲେ ଏବଂ ଶିଶୁପାଳଙ୍କୁ ନିହତ କରିଥିଲେ ପରେ ଯଜ୍ଞ ନିର୍ବିଘ୍ନରେ ସମାପିତ ହୋଇଥିଲା ।

ଆମେ ଦେଖିଅଛୁଁ, କୃଷ୍ଣ ଯୁଦ୍ଧରେ ସଚରାଚର ବିଦ୍ୱେଷବିଶିଷ୍ଟ । ତେବେ ଅର୍ଜ୍ଜୁନାଦି ଯୁଦ୍ଧକ୍ଷମ ପାଣ୍ଡବମାନେ ଥାଉଁ ଥାଉଁ ସେ ଯଜ୍ଞଘ୍ନମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ କାହିଁକି ? ରାଜସୂୟରେ ଯେଉଁ କାର୍ଯ୍ୟର ଭାର କୃଷ୍ଣଙ୍କ ଉପରେ ଥିଲା, ତାହା ସ୍ମରଣ କରିଲେ ପାଠକ କଥାର ଉତ୍ତର ପାଇବେ । ଯଜ୍ଞରକ୍ଷା ଭାର

କୃଷ୍ଣଙ୍କ ଉପରେ ଥିଲା ଏହା ପୂର୍ବେ କହିଅଛୁ । ଯେଉଁ କାର୍ଯ୍ୟର ଭାର ଯାହା ଉପରେ ଥାଏ ତାହା, ତାହାର ଅନୁଷ୍ଠେୟ କର୍ମ (Duty) । ନିଜର ଅନୁଷ୍ଠେୟ କର୍ମର ସାଧନ ନିମିତ୍ତହିଁ କୃଷ୍ଣ ଯୁଦ୍ଧରେ ପ୍ରବୃତ୍ତ ହୋଇ ଶିଶୁପାଳକୁ ବଧ କରିଥିଲେ ।

## ଏକାଦଶ ପରିଚ୍ଛେଦ

## ପାଣ୍ଡବ ବନବାସ

ରାଜସୂୟ ଯଜ୍ଞ ସମାପ୍ତ ହେବାପରେ କୃଷ୍ଣ ଦ୍ୱାରକାକୁ ଫେରି-ଗଲେ । ସଭାପର୍ବରେ ଆଉ ତାଙ୍କୁ ଦେଖିବାକୁ ପାଉ ନାହିଁ । ତେବେ ଗୋଟିଏ ସ୍ଥାନରେ ତାଙ୍କ ନାମ କରା ହୋଇଅଛି, ଦ୍ୟୁତକ୍ରୀ-ଡ଼ାରେ ଯୁଧିଷ୍ଠିର ଦ୍ରୌପଦୀଙ୍କୁ ହାରିଲେ, ତାପରେ ଦ୍ରୌପଦୀଙ୍କ କେଶାକର୍ଷଣ' ଏବଂ ସଭାମଧ୍ୟରେ ବସ୍ତ୍ରହରଣ । ମହାଭାରତର ଏହି ଭାଗଟି କାବ୍ୟାଂଶରେ ଉତ୍କୃଷ୍ଟ ରଚନା ଜଗତର ସାହିତ୍ୟରେ ବଡ ଦୁର୍ଲଭ । କିନ୍ତୁ କାବ୍ୟ ଆମର ବର୍ତ୍ତମାନ ସମାଲୋଚନୀୟ ନୁହେଁ— ଐତିହାସିକ ମୂଲ୍ୟ କିଛି ଅଛି କି ନାହିଁ ପରୀକ୍ଷା କରିବାକୁ ହେବ ଯେତେବେଳେ ଦୁଃଶାସନ ସଭା ମଧ୍ୟରେ ଦ୍ରୌପଦୀଙ୍କ ବସ୍ତ୍ରହରଣ କରିବାକୁ ପ୍ରବୃତ୍ତ, ନିରୁପାୟ ଦ୍ରୌପଦୀ ସେତେବେଳେ କୃଷ୍ଣଙ୍କୁ ମନେ ମନେ ଚିନ୍ତା କରିଥିଲେ । ସେ ଅଂଶ ଉଦ୍ଧୃତ କରିଅଛୁ ।

"ଗୋବିନ୍ଦ ଦ୍ୱାରକାବାସିନ୍ ! କୃଷ୍ଣ ଗୋପୀଜନ ପ୍ରିୟ !" ଏବଂ ଏ ସମ୍ବନ୍ଧରେ ଆମର ଯାହା କହିବାର, ତାହା ପୂର୍ବେ କହିଅଛୁ । ତାରପରେ ବନପର୍ବ । ବନପର୍ବରେ ତିନିଥର ମାତ୍ର କୃଷ୍ଣଙ୍କ ସାକ୍ଷାତ୍ ମିଳେ । ପ୍ରଥମ, ପାଣ୍ଡବମାନେ ବନକୁ ଯାଇଛନ୍ତି ଶୁଣି

ବୃଷ୍ଣି ଭୋଜମାନେ ସମସ୍ତେ ସେମାନଙ୍କୁ ଦେଖିବାକୁ ଆସିଥିଲେ କୃଷ୍ଣମଧ୍ୟ ତାଙ୍କ ସଙ୍ଗେ ଆସିଥିଲେ, ଏହା ସମ୍ଭବ। କିନ୍ତୁ ଯେଉଁ ଅଂଶରେ ଏହି ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି, ତାହା ମହାଭାରତର ପ୍ରଥମ ସ୍ତରଗତର ନୁହେଁ ଦ୍ୱିତୀୟ ସ୍ତରଗତ ମଧ୍ୟ ନୁହେଁ। ରଚନାର ସାଦୃଶ୍ୟ କିଛିମାତ୍ର ନାହିଁ। ଚରିତ୍ରଗତ ସଙ୍ଗତି କିଛିମାତ୍ର ନାହିଁ। କୃଷ୍ଣଙ୍କୁ ଆଉ କେଉଁଠି ରାଗିବା ଦେଖା ଯାଇ ନାହିଁ,' କିନ୍ତୁ ଏଠାରେ, ଯୁଧିଷ୍ଠିରଙ୍କ ପାଖକୁ ଆସିବା ମାତ୍ରେ କୃଷ୍ଣ ଲାଲ। କାରଣ କିଛିମାତ୍ର ନାହିଁ, କୌଣସି ଶତ୍ରୁ ଉପସ୍ଥିତ ନାହିଁ। କେହି କିଛି କହି ନାହାନ୍ତି, କେବଳ ଦୁର୍ଯ୍ୟୋଧନ ପ୍ରଭୃତିଙ୍କୁ ମାରି ପକାଇବାକୁ ହେବ, ଏହା କହି ଏତେ ରାଗ ଯେ, ଯୁଧିଷ୍ଠିର ବହୁତ ସ୍ତବ୍ ସ୍ତୁତି ମିନତି କରି ତାଙ୍କୁ ଶାନ୍ତ କଲେ। ଯେଉଁ କବି ଲେଖିଛନ୍ତି ଯେ, କୃଷ୍ଣ ପ୍ରତିଜ୍ଞା କରିଥିଲେ ଯେ, ମହାଭାରତର ଯୁଦ୍ଧରେ ସେ ଅସ୍ତ୍ରଧାରଣ କରିବେ ନାହିଁ, ଏ କଥା ସେ କବିଙ୍କ ଲେଖା ନୁହେଁ, ଏହା ନିଶ୍ଚିତ। ତାରପରେ ଏବକାର ବାହାପିଆ ମାନଙ୍କ ପରି କୃଷ୍ଣକହି ଉଠିଲେ, "ମୁଁ ଥିଲେ ଏହା କଣ ହୋଇଥାନ୍ତା। ମୁଁ ଘରେ ନଥିଲି" ତେଣୁ ଯୁଧିଷ୍ଠିର, କୃଷ୍ଣ କେଉଁଠି ଯାଇଥିଲେ, ସେ ଖବରପୁ ନେବାକୁ ଲାଗିଲେ। ତହିଁରୁ ଶାଲ୍ୱବଧ କଥାଟା ଉଠିଲା। ତାଙ୍କ ସହିତ କୃଷ୍ଣ ଯୁଦ୍ଧ କରିଥିଲେ, ସେହି ପରିଚୟ ଦେଲେ। ସେ ଏକ ଅଦ୍ଭୁତ ବ୍ୟାପାର। ସୌଭ୍ର ନାମରେ ତାଙ୍କ ରାଜଧାନୀ। ସେହି ରାଜଧାନୀ ଆକାଶ ମଧ୍ୟ ଉଡ଼ି ଉଡ଼ି ବୁଲେ, ଶାଲ୍ୱ ତାହା ଉପରେ ରହି ଯୁଦ୍ଧ କରେ। ସେହି ଅବସ୍ଥାରେ କୃଷ୍ଣଙ୍କ ସଙ୍ଗେ ଯୁଦ୍ଧ ହେଲା। ଯୁଦ୍ଧ ସମୟରେ କୃଷ୍ଣଙ୍କ ବିସ୍ତର କାନ୍ଦଣା। ଶାଲ୍ୱ ଗୋଟିଏ ମାୟା ବସୁଦେବ ଗଢ଼ି ତାକୁ କୃଷ୍ଣଙ୍କ ସମ୍ମୁଖରେ ବଧ କରିଲା ଦେଖି କୃଷ୍ଣ କାନ୍ଦି କାନ୍ଦି ମୂର୍ଚ୍ଛା ହେଲେ। ଏହା ଜଗଦୀଶ୍ୱରଙ୍କ

ଶନ ନୁହେଁ, କୌଣସି ମାନୁଷିକ ବ୍ୟାପାରର ଶନ ମଧ୍ୟ ନୁହେଁ, ଅନୁକ୍ରମଣିକାଧ୍ୟାୟରେ ଏବଂ ପର୍ବସଂଗ୍ରହାଧ୍ୟାୟରେ ଏ ସବୁ ବ୍ୟାପାରର କୌଣସି ପ୍ରସଙ୍ଗହିଁ ନାହିଁ । ଭରସା କରେ, କୌଣସି ପାଠକ ଏହି ସବୁ ଉପନ୍ୟାସର ସମାଲୋଚନାର ପ୍ରତ୍ୟାଶା କରନ୍ତି ନାହିଁ ।

ତାହାପରେ ଦୁର୍ବାସାଙ୍କ ସଶିଷ୍ୟ ଭୋଜନ । ତାହା ଘୋରତର ଅନୈସର୍ଗିକ ବ୍ୟାପାର, ଅନୁକ୍ରମଣିକାଧ୍ୟାୟରେ ସେ କଥା ଥିଲେ ମଧ୍ୟ ତାହାର କୌଣସି ଐତିହାସିକ ମୂଲ୍ୟ ନାହିଁ, ସୁତରାଂ ତାହା ଆମର ସମାଲୋଚନୀୟ ନୁହେଁ ।

ତାହାପରେ ବନପର୍ବର ଶେଷ ଆଡ଼କୁ ମାର୍କେଣ୍ଡେୟ ସମସ୍ୟା-ପର୍ବାଧ୍ୟାୟରେ ପୁଣି କୃଷ୍ଣଙ୍କ ଦେଖା ମିଳେ । ପାଣ୍ଡବମାନେ କାମ୍ୟକ ବନକୁ ଆସିଛନ୍ତି ଶୁଣି, କୃଷ୍ଣ ସେମାନଙ୍କୁ ପୁଣି ଦେଖିବାକୁ ଆସିଥିଲେ- ଏଥର ଏକା ନୁହେଁ; ସାନ ସାନ୍ତାଣୀଟି ସଙ୍ଗରେ, ମାର୍କଣ୍ଡେୟସମସ୍ୟା-ପର୍ବାଧ୍ୟାୟ ଖଣ୍ଡିଏ ବୃହତ୍ ଗ୍ରନ୍ଥ କହିଲେ ହେବ । କିନ୍ତୁ ମହାଭାରତ ସହିତ ସମ୍ବନ୍ଧ ଅଛି, ଏପରି କଥା ସେଥିରେ କିଛିମାତ୍ର ନାହିଁ । ସମସ୍ତଟା ପ୍ରକ୍ଷିପ୍ତ ବୋଲି ବୋଧହୁଏ । ପର୍ବସଂଗ୍ରହାଧ୍ୟାୟରେ ମାର୍କଣ୍ଡେୟସମାସ୍ୟା-ପର୍ବାଧ୍ୟାୟର କଥା ଅଛି ସତ୍ୟ, କିନ୍ତୁ ଅନୁକ୍ରମଣିକାଧ୍ୟାୟରେ ନାହିଁ । ମହାଭାରତର ପ୍ରଥମ ଓ ଦ୍ୱିତୀୟ ସ୍ତରର ରଚନା ସହିତ ଏହାର କୌଣସି ସାଦୃଶ୍ୟ ନାହିଁ । କିନ୍ତୁ ଏହା ମୌଳିକ ମହାଭାରତର ଅଂଶ କି ନୁହେଁ , ତାହା ଆମର ବିଚାର କରିବାର ମଧ୍ୟ କୌଣସି ପ୍ରୟୋଜନ ନାହିଁ । କାରଣ, କୃଷ୍ଣ ଏଠାରେ କିଛିହିଁ କରି ନାହାନ୍ତି । ଯୁଧିଷ୍ଠିର ଓ ଦ୍ରୌପଦୀ ପ୍ରଭୃତିଙ୍କୁ କିଛି ମଟର କଥା ଆସି କହିଲେ, ଉତ୍ତରରେ

କିଛି ମଧୁର କଥା ଶୁଣିଲେ, ତାର ପରେ କେତେଜଣ ମିଳି ଋଷି-ଠାକୁରଙ୍କ ଗାଳ୍ପଗଳ୍ପ ସବୁ ଶୁଣିବାକୁ ଲାଗିଲେ ।

ମାର୍କଣ୍ଡେୟଙ୍କ କଥା ଶେଷ ହେଲା, ଦ୍ରୌପଦୀ ସତ୍ୟଭାମାଙ୍କ ମଧ୍ୟରେ କିଛି କଥା ହେଲା । ପର୍ବସଂଗ୍ରହାଧ୍ୟାୟରେ ଦ୍ରୌପଦୀ ସତ୍ୟଭାମାଙ୍କ ସଂବାଦ ଗଣିତ ହୋଇଛି; କିନ୍ତୁ ଅନୁକ୍ରମଣିକାଧ୍ୟାୟରେ ଏହାର କୌଣସି ପ୍ରସଙ୍ଗ ନାହିଁ । ଏହା ଯେ ପ୍ରକ୍ଷିପ୍ତ, ତାହା ପୂର୍ବେ କହିଅଛି ।

ତାହାର ପରେ ବିରାଟ ପର୍ବ । ବିରାଟ ପର୍ବରେ କୃଷ୍ଣ ଦେଖା ଦେଇ ନାହାନ୍ତି-କେବଳ ଶେଷରେ ଉତ୍ତରାଙ୍କ ବିବାହରେ ଆସି ଉପସ୍ଥିତ । ଆସି ଯେଉଁସବୁ କଥାବାର୍ତ୍ତା କରିଥିଲେ ତାହା ଉଦ୍ୟୋଗ-ପର୍ବରେ ଅଛି । ଉଦ୍ୟୋଗପର୍ବରେ କୃଷ୍ଣଙ୍କ ଅନେକ କଥା ଅଛି ସେସବୁ କଥା କ୍ରମଶଃ ସମାଲୋଚନା କରିବ ।

———

# କୃଷ୍ଣ ଚରିତ୍ର

## ପଞ୍ଚମଖଣ୍ଡ

## ପ୍ରଥମ ପରିଚ୍ଛେଦ

## ମହାଭାରତ ଯୁଦ୍ଧର ସେନୋଦ୍ୟୋଗ ।

ବର୍ତ୍ତମାନ ଉଦ୍‌ଯୋଗପର୍ବର ସମାଲୋଚନାରେ ପ୍ରବୃତ୍ତ ହେବା । ସମାଜରେ ଅପରାଧୀ ଅଛନ୍ତି ; ମନୁଷ୍ୟମାନେ ପରସ୍ପର ପ୍ରତି ଅପରାଧ ସର୍ବଦା କରୁଛନ୍ତି । ସେହି ଅପରାଧର ଦମନ ସମାଜର ଗୋଟିଏ ମୁଖ୍ୟ କାର୍ଯ୍ୟ । ରାଜନୀତି ରାଜଦଣ୍ଡ ବ୍ୟବସ୍ଥାଶାସ୍ତ୍ର ଆଇନ ଅଦାଲତ ସମସ୍ତଙ୍କର ତାହାହିଁ ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ ।

ଅପରାଧୀ ପ୍ରତି କିରୂପ ବ୍ୟବହାର କରିବାକୁ ହେବ, ନୀତିଶାସ୍ତ୍ରରେ ସେ ସମ୍ବନ୍ଧରେ ଦୁଇଟି ମତ ଅଛି । ଗୋଟିଏ ମତ ଏହିଯେ—ଦଣ୍ଡ ଦ୍ୱାରା ଅର୍ଥାତ୍ ବଳପ୍ରୟୋଗ ଦ୍ୱାରା ଦୋଷ ଦମନ କରିବାକୁ ହେବ—ଆଉ ଗୋଟିଏ ମତ ଏହିଯେ, ଅପରାଧ କ୍ଷମା କରିବ । ବଳ ଏବଂ କ୍ଷମା ଦୁଇଟି ପରସ୍ପର ବିରୋଧୀ—ଅତଏବ ଦୁଇଟି ମତ ଯଥାର୍ଥ ହୋଇପାରେ ନାହିଁ । ଅଥଚ ଦୁଇଟି ମଧ୍ୟରୁ ଗୋଟିଏ ଯେ ଏକବାରେ ପରିହାର୍ଯ୍ୟ, ଏହା ମଧ୍ୟ ହୋଇପାରେ ନାହିଁ ସକଳ ଅପରାଧ କ୍ଷମା କଲେ ସମାଜର ଧ୍ୱଂସ ହୁଏ, ସକଳ ଅପରାଧ ଦଣ୍ଡିତ କଲେ ମନୁଷ୍ୟ ପଶୁତ୍ୱ ପ୍ରାପ୍ତ ହୁଏ । ଅତଏବ ବଳ ଓ କ୍ଷମାର ସାମଞ୍ଜସ୍ୟ ନୀତିଶାସ୍ତ୍ର ଭିତରେ ଗୋଟିଏ କଠିନ ତତ୍ତ୍ୱ । ଆଧୁନିକ ସୁସଭ୍ୟ ଇଉରୋପ ଏହାର ସାମଞ୍ଜସ୍ୟରେ ଅଦ୍ୟାପି ପହଞ୍ଚି ପାରି ନାହିଁ । ଇଉରୋପୀୟମାନଙ୍କ ଖ୍ରୀଷ୍ଟଧର୍ମ୍ମ କହେ, ସବୁ ଅପରାଧ କ୍ଷମା

କର, ସେମାନଙ୍କର ସ୍ୱଜନୀତ କଟିଦ, ସବୁ ଅପରାଧ ଧଣ୍ଡିତ କର । ଇଉରୋପରେ ଧର୍ମ ଅପେକ୍ଷା ରାଜନୀତି ପ୍ରବଳ, ଏଣୁ କ୍ଷମା ଇଉରୋପରେ ଲୁପ୍ତପ୍ରାୟ, ଏବଂ ବଳର ପ୍ରବଳ ପ୍ରତାପ ।

ବଳ ଓ କ୍ଷମାର ଯଥାର୍ଥ ସାମଞ୍ଜସ୍ୟ ଏହି ଉଦ୍ୟୋଗପର୍ବ ମଧ୍ୟରେ ପ୍ରଧାନ ତତ୍ତ୍ୱ । ଶ୍ରୀକୃଷ୍ଣହିଁ ତାହାର ମୀମାଂସକ, ପ୍ରଧାନତଃ ଶ୍ରୀକୃଷ୍ଣହିଁ ଉଦ୍ୟୋଗପର୍ବର ନାୟକ । ବଳ ଓ କ୍ଷମା ଉଭୟର ପ୍ରୟୋଗ ସମ୍ବନ୍ଧରେ ସେ ଯେପରି ଆଦର୍ଶ କାର୍ଯ୍ୟତଃ ପ୍ରକାଶ କରିଛନ୍ତି ତାହା ଆମେ ପୂର୍ବେ ଦେଖିଅଛୁଁ ଯେ ତାଙ୍କ ନିଜର ଅନିଷ୍ଟ କରେ, ସେ ତାକୁ କ୍ଷମା କରନ୍ତି, ଏବଂ ଯେ ଲୋକଙ୍କ ଅନିଷ୍ଟ କରେ, ସେ ବଳପ୍ରୟୋଗପୂର୍ବକ ତାହା ପ୍ରତି ଦଣ୍ଡବିଧାନ କରନ୍ତି । କିନ୍ତୁ ଏପରି ଅନେକ ସ୍ଥଳରେ ଘଟେ, ଯେଉଁଠାରେ ଠିକ୍ ଏହି ବିଧାନ ଅନୁସାରେ କାର୍ଯ୍ୟ ଚଳେ ନାହିଁ, ଅଥବା ଏହି ବିଧାନାନୁସାରେ ବଳ କିମ୍ବା କ୍ଷମା ପ୍ରଯୁଜ୍ୟ, ତାହାର ବିଚାର କଠିନ ହୋଇପଡ଼େ । ମନେ କର, କେହି ମୋର ସମ୍ପତ୍ତି ଅପହରଣ କରି ନେଇଛି । ନିଜର ସମ୍ପତ୍ତି ଉଦ୍ଧାର କରିବା ସାମାଜିକ ଧର୍ମ । ଯଦି ସମସ୍ତେ ନିଜର ସମ୍ପତ୍ତିର ଉଦ୍ଧାର କରିବାରେ ପରାଙ୍ମୁଖ ହୁଅନ୍ତି, ତେବେ ସମାଜ ଅଚିରେ ବିଧ୍ୱସ୍ତ ହୋଇ ଯାଏ, ଅତଏବ ଅପହୃତ ସମ୍ପତ୍ତିର ଉଦ୍ଧାର କରିବାକୁ ହେବ ଆଜି କାଲି ସଭ୍ୟ ସମାଜ ଆଇନ ଅଦାଲତର ସାହାଯ୍ୟରେ ଆମ୍ଭେ-ମାନେ ଆପଣା ଆପଣାର ସମ୍ପତ୍ତି ଉଦ୍ଧାର କରି ପାରୁ । କିନ୍ତୁ ଯଦି ଏପରି ହୁଏ ଯେ, ଆଇନ ଅଦାଲତର ସାହାଯ୍ୟ ପ୍ରାପ୍ୟ ନୁହେଁ ସେଠାରେ ବଳ ପ୍ରୟୋଗ ଧର୍ମସଙ୍ଗତ କି ନା ? ବଳ ଓ କ୍ଷମାର ସାମଞ୍ଜସ୍ୟ ସମ୍ବନ୍ଧରେ ଏହି ସବୁ କୂଟ ତର୍କ ଉଠି ଥାଏ । କାର୍ଯ୍ୟତଃ ପ୍ରାୟ ଦେଖା ଯାଏ ଯେ, ଯେ ବଳବାନ, ସେ ବଳପ୍ରୟୋଗ

ଆଡ଼କୁ ଯାଏ । ସେ ଦୁର୍ବଳ, ସେ କ୍ଷମା ଆଡ଼କୁ ଯାଏ । କିନ୍ତୁ ଯେ ବଳବାନ୍ ଅଥଚ କ୍ଷମାବାନ ତାର କର୍ତ୍ତବ୍ୟ କଣ ? ଅର୍ଥାତ୍ ଆଦର୍ଶ ପୁରୁଷର ଏପରି ସ୍ଥଳରେ କଣ କର୍ତ୍ତବ୍ୟ ? ତାହାର ମୀମାଂସା ଆମ୍ଭେମାନେ ଉଦ୍ୟୋଗପର୍ବର ଆରମ୍ଭରେ କୃଷ୍ଣବାକ୍ୟରେ ପାଉଅଛୁଁ । ମୋର ବିଶ୍ୱାସ ପାଠକ ମାନେ ସମସ୍ତେ ଜାଣନ୍ତି ଯେ, ପାଣ୍ଡବମାନେ ଦ୍ୟୂତକ୍ରୀଡ଼ାରେ ଶକୁନି ନିକଟରେ ହାରି ଏହି ପଣରେ ବାଧ୍ୟ ହୋଇଥିଲେ ଯେ, ନିଜର ରାଜ୍ୟ ଦୁର୍ଯ୍ୟୋଧନଙ୍କୁ ସମ୍ପ୍ରଦାନ କରି ଦ୍ୱାଦଶ ବର୍ଷ ବନବାସ କରିବେ । ତତ୍ପରେ ଏକବର୍ଷ ଅଜ୍ଞାତବାସ କରିବେ; ଯଦି ଅଜ୍ଞାତବାସର ସେହି ଏକବର୍ଷ ମଧ୍ୟରେ କେହି ସେମାନଙ୍କ ପରିଚୟ ପାନ୍ତି, ତେବେ ସେମାନେ ରାଜ୍ୟ ପୁନର୍ବାର ପ୍ରାପ୍ତ ହେବେ ନାହିଁ, ପୁନର୍ବାର ଦ୍ୱାଦଶ ବର୍ଷ ପାଇଁ ବନଗମନ କରିବେ । କିନ୍ତୁ ଯଦି କେହି ପରିଚୟ ନ ପାନ୍ତି ତେବେ ସେମାନେ ଦୁର୍ଯ୍ୟୋଧନଙ୍କ ନିକଟରୁ ନିଜର ରାଜ୍ୟ ପୁନଃ ପ୍ରାପ୍ତ ହେବେ । ବର୍ତ୍ତମାନ ସେମାନେ ଦ୍ୱାଦଶ ବର୍ଷ ବନବାସ ସମ୍ପୂର୍ଣ୍ଣ କରି ବିରାଟ ରାଜାଙ୍କ ପୁରୀମଧ୍ୟରେ ଏକ ବର୍ଷ ଅଜ୍ଞାତବାସ ସମ୍ପନ୍ନ କରିଛନ୍ତି । ସେହି ବର୍ଷକ ମଧ୍ୟରେ କେହି ତାଙ୍କ ପରିଚୟ ପାଇନାହିଁ । ଅତଏବ ସେମାନେ ଦୁର୍ଯ୍ୟୋଧନଙ୍କ ନିକଟରୁ ସେମାନଙ୍କ ରାଜ୍ୟ ପାଇବାର ନ୍ୟାୟତଃ ଓ ଧର୍ମ୍ମତଃ ଅଧିକାରୀ । କିନ୍ତୁ ଦୁର୍ଯ୍ୟୋଧନ ରାଜ୍ୟ ଫେରାଇ ଦେବ କି ? ନ ଦେବାରଇ ସମ୍ଭାବନା । ଯଦି ନ ଦିଅନ୍ତି ତେବେ କଣ ହେବ କର୍ତ୍ତବ୍ୟ ? ଯୁଦ୍ଧ କରି ସେମାନଙ୍କୁ ବଧ କରି ରାଜ୍ୟର ପୁନରୁଦ୍ଧାର କରିବା କର୍ତ୍ତବ୍ୟ ହେବ ନାହିଁ କି ?

ଅଜ୍ଞାତବାସର ବତ୍ସର ଅତୀତ ହେଲେ ପାଣ୍ଡବମାନେ ବିରାଟ

ରାଜାଙ୍କ ନିକଟରେ ପରିଚିତ ହେଲେ । ବିରାଟରାଜ ସେମାନଙ୍କ ପରିଚୟ ପାଇ ଅତ୍ୟନ୍ତ ଆନନ୍ଦିତ ହୋଇ ନିଜର କନ୍ୟା ଉତ୍ତରାକୁ ଅର୍ଜ୍ଜୁନଙ୍କ ପୁତ୍ର ଅଭିମନ୍ୟୁଙ୍କୁ ସମ୍ପ୍ରଦାନ କଲେ । ସେହି ବିବାହ ଦେବାକୁ ଅଭିମନ୍ୟୁଙ୍କ ମାତୁଳ କୃଷ୍ଣ ଓ ବଳରାମ ଓ ଅନ୍ୟାନ୍ୟ ଯାଦବମାନେ ଆସିଥିଲେ । ଏବଂ ପାଣ୍ଡବମାନଙ୍କ ଶ୍ୱଶୁର ଦ୍ରୁପଦ ଓ ଅନ୍ୟାନ୍ୟ କୁଟୁମ୍ବଗଣ ମଧ୍ୟ ଆସିଥିଲେ । ସେମାନେ ସମସ୍ତେ ବିରାଟରାଜାଙ୍କ ସଭାରେ ଆସୀନ ହେଲେ, ପାଣ୍ଡବ-ରାଜ୍ୟର ପୁନରୁଦ୍ଧାର ପ୍ରସଙ୍ଗଟା ଉତ୍‌ଥାପିତ ହେଲା । ନୃପତିମାନେ "ଶ୍ରୀକୃଷ୍ଣଙ୍କ ପ୍ରତି ଦୃଷ୍ଟିପାତ କରି ମୌନାବଲମ୍ବନ କଲେ ।" ତେଣୁ ଶ୍ରୀକୃଷ୍ଣ ରାଜାମାନଙ୍କୁ ସମ୍ବୋଧନ କରି ସବୁ ଅବସ୍ଥା ବୁଝାଇ କହିଲେ । ଯାହା ଯାହା ଘଟିଅଛି, ତାହା ବୁଝାଇ, ତାର ପରେ କହିଲେ, "ବର୍ତ୍ତମାନ କୌରବ ପାଣ୍ଡବମାନଙ୍କ ପକ୍ଷରେ ଯାହା ହିତକର ଧର୍ମ୍ମ୍ୟ, ଯଶସ୍କର ଓ ଉପଯୁକ୍ତ, ଆପଣମାନେ ତାହାହିଁ ଚିନ୍ତା କରନ୍ତୁ ।"

କୃଷ୍ଣ ଏପରି କଥା କହିଲେ ନାହିଁ ଯେ, ଯହିଁରେ ରାଜ୍ୟର ପୁନରୁଦ୍ଧାର ହୁଏ, ତାହାରି ଚେଷ୍ଟା କରନ୍ତୁ । କାରଣ ହିତ, ଧର୍ମ୍ମ, ଯଶରୁ ବଞ୍ଚିତ ଯେଉଁ ରାଜ୍ୟ ତାହା ସେ କାହାରି ପ୍ରାର୍ଥନୀୟ ବିବେଚନା କରନ୍ତି ନାହିଁ । ସେ ତେଣୁ ପୁନର୍ବାର ବୁଝାଇ କହୁଛନ୍ତି "ଧର୍ମ୍ମରାଜ ଯୁଧିଷ୍ଠିର ଅଧର୍ମ୍ମାଗତ ସୁରସାମ୍ରାଜ୍ୟ ମଧ୍ୟ କାମନା କରନ୍ତି ନାହିଁ, କିନ୍ତୁ ଧର୍ମ୍ମାର୍ଥସଂଯୁକ୍ତ ଗୋଟିଏ ଗ୍ରାମର ଆଧିପତ୍ୟରେ ବି ଅଧିକତର ଅଭିଳାଷୀ ହୋଇ ଥାଆନ୍ତି ।" ଆମ୍ଭେମାନେ ପୂର୍ବେ ବୁଝାଇଅଛୁଁ ଯେ, ଆଦର୍ଶ ମନୁଷ୍ୟ ସନ୍ନ୍ୟାସୀ ହେଲେ ଚଳିବ ନାହିଁ, ବିଷୟୀ ହେବାକୁ ହେବ । ବିଷୟୀର ଏହା ପ୍ରକୃତ ଆଦର୍ଶ, ଅଧର୍ମ୍ମାଗତ ସୁରସାମ୍ରାଜ୍ୟ ବି କାମନା କରିବ ନାହିଁ, କିନ୍ତୁ ଧର୍ମ୍ମତଃ ମୁଁ ଯାହାର ଅଧିକାରୀ, ତାହାର ଏକ ତିଳ ସୁଦ୍ଧା ବଞ୍ଚକକୁ ଛାଡ଼ି ଦେବ

ନାହିଁ; ଗୁଡ଼ିଲେ କେବଳ ମୁଁ ଏକା ଦୁଃଖୀ ହେବ ତାହା ନୁହେଁ, ମୁଁ ଦୁଖୀ ନହୋଇ ବି ପାରେ କିନ୍ତୁ ସମାଜ ବିଧ୍ୱଂସର ପ୍ରଥାବଲମ୍ୱନରୂପ ପାପ ମତିକୁ ସ୍ପର୍ଶ କରିବ ।

ତାରପରେ କୃଷ୍ଣ କୌରବମାନଙ୍କ ଲୋଭ ଓ ଶଠତା, ଯୁଧିଷ୍ଠିରଙ୍କ ଧାର୍ମିକତା ଏବଂ ଏମାନଙ୍କର ପରସ୍ପର ସମ୍ବନ୍ଧ ବିବେଚନାପୂର୍ବକ ଇତିକର୍ତ୍ତବ୍ୟତା ଅବଧାରଣ କରିବା ନିମିତ୍ତ ରାଜାମାନଙ୍କୁ ଅନୁରୋଧ କଲେ । ନିଜର ଅଭିପ୍ରାୟ ମଧ୍ୟ କିଛି ବ୍ୟକ୍ତ କଲେ । କହିଲେ, ଯେପରି ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କୁ ରାଜ୍ୟାର୍ଦ୍ଧ ପ୍ରଦାନ କରନ୍ତି—ଏହିପରି ସନ୍ଧି ନିମିତ୍ତ କୌଣସିଧାର୍ମିକ ପୁରୁଷ ଦୂତ ହୋଇ ତାଙ୍କ ନିକଟକୁ ଗମନ କରନ୍ତୁ । କୃଷ୍ଣଙ୍କ ଅଭିପ୍ରାୟ ଯୁଦ୍ଧ ନୁହେଁ ସନ୍ଧି । ସେ ଏତେଦୂର ଯୁଦ୍ଧର ବିରୁଦ୍ଧରେ ଯେ, ଅର୍ଦ୍ଧରାଜ୍ୟ ମାତ୍ର ପ୍ରାପ୍ତିରେ ସନ୍ତୁଷ୍ଟ ଥାଇ ସନ୍ଧି ସ୍ଥାପନ କରିବାକୁ ପରାମର୍ଶ ଦେଲେ ଏବଂ ଶେଷରେ ଯେତେବେଳେ ଯୁଦ୍ଧ ଅଲଙ୍ଘନୀୟ ହୋଇ ଉଠିଲା, ସେତେବେଳେ ସେ ପ୍ରତିଜ୍ଞା କଲେ ଯେ, ସେ ଯୁଦ୍ଧରେ ସ୍ୱୟଂ ଅସ୍ତ୍ରଧାରଣ କରି ନରଶୋଣିତସ୍ରୋତ ବୃଦ୍ଧି କରିବେ ନାହିଁ ।

କୃଷ୍ଣଙ୍କ ବାକ୍ୟାବସାନରେ ବଳଦେବ ତାଙ୍କ ବାକ୍ୟର ଅନୁମୋଦନ କଲେ, ଯୁଧିଷ୍ଠିରଙ୍କୁ ଦ୍ୟୂତନୀତି ନିମିତ୍ତ କିଛି ନିନ୍ଦା କଲେ, ଏବଂ ଶେଷରେ କହିଲେ ଯେ ସନ୍ଧି ଦ୍ୱାରା ସମ୍ପାଦିତ ଅର୍ଥ ହିଁ ଅର୍ଥକର ହୋଇଥାଏ, କିନ୍ତୁ ଯେଉଁ ଅର୍ଥ ସଂଗ୍ରାମ ଦ୍ୱାରା ଉପାର୍ଜିତ ତାହା ଅର୍ଥ ନୁହେଁ । ସୁରାପାୟୀ ବଳଦେବଙ୍କ ଏହି କଥା ଗୁଡ଼ିକ ସୁବର୍ଣ୍ଣ ଅକ୍ଷରରେ ଲେଖି ଇଉରୋପର ଘରେ ଘରେ ରଖିଲେ ମନୁଷ୍ୟଜାତିର କିଛି ମଙ୍ଗଳ ହୋଇ ପାରେ ।

ବଳଦେବଙ୍କ କଥା ସମାପ୍ତ ହେଲେ ସାତ୍ୟକି ଗାତ୍ରୋତ୍ଥାନ

କର (ପାଠକ ଦେଖିବେ ସେ କାଳରେ ବି " Parliamentary Procedure ମହାସଭା ସମ୍ବନ୍ଧୀୟ କାର୍ଯ୍ୟ-ପ୍ରଣାଳୀ ଥିଲ) ପ୍ରତି ବକ୍ତୃତା କଲେ । ସାତ୍ୟକି ନିଜେ ମହାବଳବାନ୍ ବୀରପୁରୁଷ, ସେ କୃଷ୍ଣଙ୍କ ଶିଷ୍ୟ ଏବଂ ମହାଭାରତ ଯୁଦ୍ଧରେ ପାଣ୍ଡବପକ୍ଷୀୟ ବୀରମାନଙ୍କ ମଧ୍ୟରେ ଅର୍ଜୁନ ଓ ଅଭିମନ୍ୟୁଙ୍କ ପରେ ତାଙ୍କର ପ୍ରଶଂସା ଦେଖା ଯାଏ । କୃଷ୍ଣ ସନ୍ଧିର ପ୍ରସ୍ତାବ କରିବାରୁ ସାତ୍ୟକି କିଛି କହିବାକୁ ସାହସ କରି ନାହାନ୍ତି, ବଳଦେବଙ୍କ ମୁହଁରୁ ସେହି କଥା ଶୁଣି ସାତ୍ୟକି କ୍ରୁଦ୍ଧ ହୋଇ ବଳଦେବଙ୍କୁ କ୍ଳୀବ କାପୁରୁଷ ଇତ୍ୟାଦି ବାକ୍ୟରେ ଅପମାନିତ କଲେ । ଦ୍ୟୁତକ୍ରୀଡ଼ା ନିମିତ୍ତ ବଳ-ଦେବ ଯୁଧିଷ୍ଠିରଙ୍କୁ ଯେଉଁ ଟିକିଏ ଦୋଷ ଦେଇଥିଲେ ସାତ୍ୟକି ତାହାର ପ୍ରତିବାଦ କଲେ ଏବଂ ନିଜର ଅଭିପ୍ରାୟ ଏହା ପ୍ରକାଶ କଲେ ଯେ ଯଦି କୌରବମାନେ ପାଣ୍ଡବମାନଙ୍କୁ ତାଙ୍କର ପୈତୃକ ରାଜ୍ୟ ସମସ୍ତ ପ୍ରତ୍ୟର୍ପଣ ନ କରନ୍ତି, ତେବେ କୌରବମାନଙ୍କୁ ସମୂଳେ ନିର୍ମୂଳ କରିବାହିଁ କର୍ତ୍ତବ୍ୟ । ତାରପରେ ବୃଦ୍ଧ ଦ୍ରୁପଦଙ୍କ ବକ୍ତୃତା । ଦ୍ରୁପଦ ମଧ୍ୟ ସାତ୍ୟକିଙ୍କ ମତାବଲମ୍ବୀ । ସେ ଯୁଦ୍ଧାର୍ଥ ଉଦ୍ୟୋଗ କରିବାକୁ ସୈନ୍ୟ ସଂଗ୍ରହ କରିବାକୁ ଏବଂ ମିତ୍ରରାଜଗଣଙ୍କ ନିକଟକୁ ଦୂତ ପ୍ରେରଣକରିବାକୁ ପାଣ୍ଡବମାନଙ୍କୁ ପରାମର୍ଶ ଦେଲେ । ତେବେ ସେ ଏହାମଧ୍ୟ କହିଲେ ଯେ ଦୁର୍ଯ୍ୟୋଧନଙ୍କ ନିକଟକୁ ମଧ୍ୟ ଦୂତ ପ୍ରେରଣ କରାଯାଉ ।

ପରିଶେଷରେ କୃଷ୍ଣ ପୁନରାୟ ବକ୍ତୃତା କଲେ । ଦ୍ରୁପଦ ପ୍ରାଚୀନ ଏବଂ ସମ୍ବନ୍ଧରେ ଗୁରୁ ସ୍ଥାନୀୟ, ଏଣୁ କୃଷ୍ଣ ସ୍ପଷ୍ଟତଃ ତାଙ୍କ କଥାରବିରୋଧ କଲେ ନାହିଁ । କିନ୍ତୁ ଏପରି ଅଭିପ୍ରାୟ ବ୍ୟକ୍ତ କଲେ ଯେ ଯୁଦ୍ଧ ଉପସ୍ଥିତ ହେଲେ ସେ ସ୍ୱୟଂ ସେ ଯୁଦ୍ଧରେ ନିର୍ଲିପ୍ତ ରହି-ବାକୁ ଇଚ୍ଛା କରନ୍ତି । ସେ କହିଲେ "କୁରୁ ଓ ପାଣ୍ଡବମାନଙ୍କ ସହିତ

ଆମ୍ଭମାନଙ୍କର ତୁଲ୍ୟ ସମ୍ବନ୍ଧ । ସେମାନେ କଦାପି ମର୍ଯ୍ୟାଦାଲଙ୍ଘନ ପୂର୍ବକ ଆମ୍ଭମାନଙ୍କ ସହିତ ଅଶିଷ୍ଟ ବ୍ୟବହାର କରି ନାହାନ୍ତି । ଆମ୍ଭେମାନେ ବିବାହରେ ନିମନ୍ତ୍ରିତ ହୋଇ ଏଠାକୁ ଆସିଅଛୁଁ, ଏବଂ ଆପଣ ମଧ୍ୟ ସେଥି ନିମିତ୍ତ ଆସିଛନ୍ତି । ବର୍ତ୍ତମାନ ବିବାହ ସମ୍ପନ୍ନ ହୋଇଅଛି, ଆମ୍ଭେମାନେ ପରମାହ୍ଲାଦରେ ନିଜ ନିଜ ଘରକୁ ପ୍ରତିଗମନ କରିବା ।” ଗୁରୁଜନଙ୍କୁ ଏହାପରେ ଆଉ କିଏ ଭର୍ତ୍ସନା କରି ପାଇ ପାରେ ? କୃଷ୍ଣ ଆଉ ମଧ୍ୟ କହିଲେ ଯେ, “ଯଦି ଦୁର୍ଯ୍ୟୋଧନ ସନ୍ଧି ନ କରନ୍ତି, ତାହାହେଲେ ଅଗ୍ରେ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କ ନିକଟକୁ ଦୂତ ପ୍ରେରଣ କରି, ପାଶ୍ଚାତ୍ ଆମ୍ଭମାନଙ୍କୁ ଆହ୍ୱାନ କରିବେ,” ଅର୍ଥାତ୍ “ଏ ଯୁଦ୍ଧରେ ଆସିବାକୁ ଆମର ସେପରି ଇଚ୍ଛା ନାହିଁ ।” ଏହିକଥା କହି କୃଷ୍ଣ ଦ୍ୱାରକା ଚାଲିଗଲେ ।

ଆମେ ଦେଖିଲୁ ଯେ, କୃଷ୍ଣ ଯୁଦ୍ଧର ନିତାନ୍ତ ବିପକ୍ଷି, ଏତେଦୂର ଯେ ସେଥି ନିମିତ୍ତ ଅର୍ଦ୍ଧରାଜ୍ୟ ପରିତ୍ୟାଗ କରିବାକୁ ମଧ୍ୟ ପାଣ୍ଡବମାନଙ୍କୁ ପରାମର୍ଶ ଦେଇଥିଲେ । ଆଉମଧ୍ୟ ଦେଖିଲୁ ଯେ, ସେ କୌରବ ପାଣ୍ଡବମାନଙ୍କ ମଧ୍ୟରେ ପକ୍ଷପାତଶୂନ୍ୟ, ଉଭୟଙ୍କ ସହିତ ତାଙ୍କ ତୁଲ୍ୟ ସମ୍ବନ୍ଧ ସ୍ୱୀକାର କରନ୍ତି । ପରେ ଯାହା ଘଟିଲା, ସେଥିରେ ଏହି ଦୁଇ କଥାର ଆହୁରି ବଳବତ୍ ପ୍ରମାଣ ମିଳୁଅଛି । ଏଣେ ଉଭୟ ପକ୍ଷର ଯୁଦ୍ଧର ଉଦ୍ୟୋଗ ହେବାକୁ ଲାଗିଲା । ସେନା ସଂଗୃହୀତ ହେବାକୁ ଲାଗିଲା । ଏବଂ ରାଜାମାନଙ୍କ ନିକଟକୁ ଦୂତ ଯିବାକୁ ଲାଗିଲେ । କୃଷ୍ଣଙ୍କୁ ଯୁଦ୍ଧରେ ବରଣ କରିବାକୁ ଅର୍ଜ୍ଜୁନ ସ୍ୱୟଂ ଦ୍ୱାରକାକୁ ଗଲେ । ଦୁର୍ଯ୍ୟୋଧନ ମଧ୍ୟ ତାହା କଲେ । ଦୁଇଜଣ ଯାକ ଏକ ଦିନରେ ଏକ ସମୟରେ କୃଷ୍ଣଙ୍କ ନିକଟରେ ଉପସ୍ଥିତ ହେଲେ । ତାହାପରେ ଯାହା ଘଟିଲା, ମହାଭାରତରୁ ତାହା

ଉଚ୍ଚାର କରୁଅଛି:—

"ବାସୁଦେବ ସେ ସମୟରେ ଶୟାନ ଓ ନିଦ୍ରାଭିଭୂତ ଥିଲେ । ପ୍ରଥମେ ରାଜା ଦୁର୍ଯ୍ୟୋଧନ ତାଙ୍କ ଶୟନ ଗୃହରେ ପ୍ରବେଶ କରି ତାଙ୍କ ମସ୍ତକସମୀପନ୍ୟସ୍ତ ପ୍ରଶସ୍ତ ଆସନରେ ଉପବେଶନ କଲେ । ଇନ୍ଦ୍ରନନ୍ଦନ ପଶ୍ଚାତ୍ ପ୍ରବେଶ ପୂର୍ବକ ବିନୀତ ଓ କୃତାଞ୍ଜଳି ହୋଇ ଯାଦବପତିଙ୍କ ପଦତଳ ସମୀପରେ ସମାସୀନ ହେଲେ । ଅନନ୍ତର ବୃଷ୍ଣିନନ୍ଦନ ଜାଗରିତ ହୋଇ ଅଗ୍ରେ ଧନଞ୍ଜୟ ପରେ ଦୁର୍ଯ୍ୟୋଧନଙ୍କୁ ନୟନଗୋଚର କରିବାମାତ୍ର ସ୍ୱାଗତ ପ୍ରଶ୍ନ ସହକାରେ ସତ୍କାର ପୂର୍ବକ ଆଗମନର ହେତୁ ଜିଜ୍ଞାସା କଲେ ।

ଦୁର୍ଯ୍ୟୋଧନ ସହାସ୍ୟବଦନରେ କହିଲେ 'ହେ ଯାଦବ ! ଏହି ଉପସ୍ଥିତ ଯୁଦ୍ଧରେ ଆପଣଙ୍କୁ ସାହାଯ୍ୟଦାନ କରିବାକୁ ହେବ । ଯଦିଚ ଆପଣଙ୍କ ସହିତ ଆମର ଉଭୟଙ୍କର ସମାନ ସମ୍ବନ୍ଧ ଓ ତୁଲ୍ୟ ସୌହୃଦ୍ୟ, ତଥାପି ମୁଁ ଅଗ୍ରେ ଆଗମନ କରିଅଛି । ସାଧୁମାନେ ପ୍ରଥମାଗତ ବ୍ୟକ୍ତିଙ୍କ ପକ୍ଷହିଁ ଅବଲମ୍ବନ କରିଥାନ୍ତି । ଆପଣ ସାଧୁମାନଙ୍କ ଶ୍ରେଷ୍ଠ ଓ ମାନନୀୟ । ଅତଏବ ଅଦ୍ୟ ସେହି ସଦାଚାର ପ୍ରତିପାଳନ କରନ୍ତୁ ।"

କୃଷ୍ଣ କହିଲେ, ହେ କୁରୁବୀର । ଆପଣ ଯେ ଅଗ୍ରେ ଆଗମନ କରି ଅଛନ୍ତି, ଏ ବିଷୟରେ ମୋର କିଛିମାତ୍ର ସଂଶୟ ନାହିଁ, କିନ୍ତୁ ମୁଁ କୁନ୍ତୀକୁମାରଙ୍କୁ ଅଗ୍ରେ ନୟନଗୋଚର କରିଅଛି, ଏଥି ନିମିତ୍ତ ମୁଁ ଆପଣଙ୍କ ଉଭୟଙ୍କୁ ସାହାଯ୍ୟ କରିବି । କିନ୍ତୁ ଏହା ପ୍ରସିଦ୍ଧ ଯେ, ଅଗ୍ରେ ବାଳକହିଁ ବରଣ କରିବ, ଅତଏବ ଅଗ୍ରେ କୁନ୍ତୀକୁମାରଙ୍କର ବରଣ କରାଯିବା ଉଚିତ । ଏହା କହି ଭଗବାନ ଯଦୁନନ୍ଦନ ଧନଞ୍ଜୟଙ୍କୁ କହିଲେ 'ହେ କୌନ୍ତେୟ ! ଅଗ୍ରେ ତୁମକୁ ବରଣ କରିବ । ମୋର ସମଯୋଦ୍ଧା ନାରାୟଣ ନାମରେ ଏକ

ଅର୍ବୁଦ ଗୋପ, ଏକ ପକ୍ଷର ସୈନିକ ପଦ ଗ୍ରହଣ କରନ୍ତୁ । ଆଉ ଅନ୍ୟ ପକ୍ଷରେ ମୁଁ ସମରପରାଙ୍ମୁଖ ଓ ନିରସ୍ତ୍ର ହୋଇ ଅବସ୍ଥାନ କରେ ଏହା ମଧ୍ୟରୁ ଯେଉଁ ପକ୍ଷ ତୁମର ହୃଦ୍ୟତର, ତାହା ଅବଲମ୍ବନ କର ।

ଧନଞ୍ଜୟ ଅରାତିମର୍ଦ୍ଦନ ଜନାର୍ଦ୍ଦନ ସମର ପରାଙ୍ମୁଖ ହେବେ, ଶ୍ରବଣ କରିମଧ୍ୟ ତାଙ୍କୁଇ ବରଣ କଲେ । ସେତେବେଳେ ରାଜା ଦୁର୍ଯ୍ୟୋଧନ ଅର୍ବୁଦ ନାରାୟଣୀ ସେନା ପ୍ରାପ୍ତ ହୋଇ କୃଷ୍ଣଙ୍କୁ ସମରରେ ପରାଙ୍ମୁଖ ବିବେଚନା କରି ପ୍ରୀତିର ପରକାଷ୍ଠା ପ୍ରାପ୍ତ ହେଲେ ।

ଉଦ୍ୟୋଗପର୍ବର ଏହି ଅଂଶ ସମାଲୋଚନା କରି ଆମେ ଏଇ କେତୋଟି କଥା ବୁଝିପାରୁ । ପ୍ରଥମ—ଯଦିଚ କୃଷ୍ଣଙ୍କ ଅଭିପ୍ରାୟ ଯେ, କାହାରି ନିଜର ଧର୍ମ୍ମାର୍ଥସଂଯୁକ୍ତ ଅଧିକାର ପରିତ୍ୟାଗ କରିବା କର୍ତ୍ତବ୍ୟ ନୁହେଁ, ତଥାପି ବଳ ଅପେକ୍ଷା କ୍ଷମା ତାଙ୍କ ବିବେଚନାରେ ଏତେଦୂର ଉତ୍କୃଷ୍ଟ ଯେ, ବଳପ୍ରୟୋଗ କରିବା ଅପେକ୍ଷା ଅର୍ଦ୍ଧେକ ଅଧିକାର ପରିତ୍ୟାଗ କରିବା ମଧ୍ୟ ଭଲ ।

ଦ୍ୱିତୀୟ—କୃଷ୍ଣ ସର୍ବତ୍ର ସମଦର୍ଶୀ । ସାଧାରଣ ବିଶ୍ୱାସ ଏହି ଯେ, ସେ ପାଣ୍ଡବମାନଙ୍କ ପକ୍ଷ, ଏବଂ କୌରବ ମାନଙ୍କ ବିପକ୍ଷ । ଉପରେ ଦେଖାଗଲା ଯେ, ସେ ଉଭୟଙ୍କ ମଧ୍ୟରେ ମଧ୍ୟସ୍ଥରୂପେ ପକ୍ଷପାତଶୂନ୍ୟ ।

ତୃତୀୟ—ସେ ସ୍ୱୟଂ ଅଦ୍ୱିତୀୟ ବୀର ହୋଇ ମଧ୍ୟ ଯୁଦ୍ଧ ପ୍ରତି ବିଶେଷ ପ୍ରକାର ବିରାଗଯୁକ୍ତ । ପ୍ରଥମରେ ଯେପରି ଯୁଦ୍ଧ ନ ହୁଏ, ସେହି ରୂପେ ପରାମର୍ଶ ଦେଲେ, ତାରପରେ ଯେତେବେଳେ ଯୁଦ୍ଧ ନିତାନ୍ତ ଉପସ୍ଥିତ ହେଲା, ଏବଂ ଅଗତ୍ୟା ତାଙ୍କୁ ଏକ ପକ୍ଷରେ

ବରଣ ହେବାକୁ ହେଲା ସେତେବେଳେ ସେ ଅସ୍ତତ୍ୟାଗରେ ପ୍ରତିଜ୍ଞାବଦ୍ଧ ହୋଇ ବରଣ ହେଲେ । ଏ ରୂପ ମହତ୍ତ୍ୱ ଆଉ କୌଣସି କ୍ଷତ୍ରିୟଙ୍କଠାରେ ଦେଖାଯାଏ ନାହିଁ, ଜିତେନ୍ଦ୍ରିୟ ଏବଂ ସର୍ବତ୍ୟାଗୀ ଖ୍ରୀଷ୍ଟଙ୍କର ମଧ୍ୟ ନୁହେଁ ।

ଆମେ ଦେଖିବା ଯେ ଯେପରି ଯୁଦ୍ଧ ନହୁଏ, ସେଥିନିମିତ୍ତ କୃଷ୍ଣ ଏହାପରେ ମଧ୍ୟ ଅନେକ ଚେଷ୍ଟା କରିଥିଲେ । ଆଶ୍ଚର୍ଯ୍ୟର ବିଷୟ ଏହିକି ଯେ, ଯେ ସମସ୍ତ କ୍ଷତ୍ରିୟଙ୍କ ମଧ୍ୟରେ ଯୁଦ୍ଧର ପ୍ରଧାନ ଶତ୍ରୁ, ଏବଂ ଯେ ଏକା କେବଳ ସର୍ବତ୍ର ସମଦର୍ଶୀ, ଲୋକେ ତାଙ୍କୁ ଏହି ଯୁଦ୍ଧର ପ୍ରଧାନ ପରାମର୍ଶଦାତା, ଅନୁଷ୍ଠାତା ଏବଂ ପାଣ୍ଡବପକ୍ଷର ପ୍ରଧାନ କୁଚକ୍ରୀ ବୋଲି ସ୍ଥିର କରି ଅଛନ୍ତି । ଏଣୁ ଏବେ ସବିସ୍ତାରରେ କୃଷ୍ଣଚରିତ୍ର ଆଲୋଚନାର ପ୍ରୟୋଜନ ହୋଇଅଛି ।

ତାରପରେ, ନିରସ୍ତ୍ର କୃଷ୍ଣଙ୍କୁ ନେଇ ଅର୍ଜୁନ ଯୁଦ୍ଧର କେଉଁ କାର୍ଯ୍ୟରେ ନିଯୁକ୍ତ କରିବେ, ଏହା ଚିନ୍ତା କରି କୃଷ୍ଣଙ୍କୁ ତାଙ୍କ ସାରଥ୍ୟ କରିବାକୁ ଅନୁରୋଧ କଲେ । କ୍ଷତ୍ରିୟ ପକ୍ଷରେ ସାରଥ୍ୟ ଅତି ହେୟ କାର୍ଯ୍ୟ । ଯେତେବେଳେ ମଦ୍ରରାଜ ଶଲ୍ୟ କର୍ଣ୍ଣଙ୍କ ସାରଥ୍ୟ କରିବାପାଇଁ ଅନୁରୁଦ୍ଧ ହୋଇଥିଲେ, ସେତେବେଳେ ସେ ବଡ ରାଗ କରିଥିଲେ । କିନ୍ତୁ ଆଦର୍ଶ ପୁରୁଷ ଅହଙ୍କାର ଶୂନ୍ୟ, ଅତଏବ କୃଷ୍ଣ ଅର୍ଜୁନଙ୍କ ସାରଥ୍ୟ ତତ୍‌କ୍ଷଣାତ୍ ସ୍ୱୀକାର କଲେ । ସେ ସର୍ବଦୋଷଶୂନ୍ୟ ଏବଂ ସର୍ବଗୁଣାନ୍ୱିତ ।

# ଦ୍ୱିତୀୟ ପରିଚ୍ଛେଦ ।

## ସଞ୍ଜୟଯାନ ।

ଉଭୟ ପକ୍ଷରେ ଯୁଦ୍ଧର ଉଦ୍‌ଯୋଗ ହେଉ ଥାଏ । ଏଣେ ଦ୍ରୁପଦଙ୍କ ପରାମର୍ଶାନୁସାରେ ଯୁଧିଷ୍ଠିରାଦି ଦ୍ରୁପଦଙ୍କ ପୁରୋହିତଙ୍କୁ ଧୃତରାଷ୍ଟ୍ରଙ୍କ ସଭାକୁ ସନ୍ଧିସ୍ଥାପନ ଉଦ୍ଦେଶ୍ୟରେ ପ୍ରେରଣ କଲେ । କିନ୍ତୁ ପୁରୋହିତ ମହାଶୟ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । କାରଣ, ବିନାଯୁଦ୍ଧରେ ସୂଚ୍ୟଗ୍ର ବେଧ ଭୂମି ସୁଦ୍ଧା ପ୍ରତ୍ୟର୍ପଣ କରିବା ଦୁର୍ଯ୍ୟୋଧନାଦିଙ୍କ ଅଭିପ୍ରାୟ ନୁହେଁ । ପୁଣି ଏଣେ ଯୁଦ୍ଧରେ ଭୀମାର୍ଜ୍ଜୁନ ଓ କୃଷ୍ଣଙ୍କୁ * ଧୃତରାଷ୍ଟ୍ରଙ୍କ ବଡ଼ ଭୟ; ଅତଏବ

---

* ବିପକ୍ଷମାନେ ବି ଯେ ଏସମୟରେ କୃଷ୍ଣଙ୍କ ସର୍ବପ୍ରାଧାନ୍ୟ ସ୍ୱୀକାର କରୁଥିଲେ, ତାହାର ଅନେକ ପ୍ରମାଣ ଉଦ୍‌ଯୋଗପର୍ବରେ ଦେଖାଯାଏ । ଧୃତରାଷ୍ଟ୍ର ପାଣ୍ଡବମାନଙ୍କର ଅନ୍ୟାନ୍ୟ ସହାୟମାନଙ୍କ ନାମୋଲ୍ଲେଖ କରି ପରିଶେଷରେ କହିଥିଲେ "କୃଷ୍ଣସହିତ କୃଷ୍ଣଯେଉଁମାନଙ୍କର ସହାୟ ସେମାନଙ୍କ ପ୍ରତାପ ସହ୍ୟ କରିବା କାହାର ସାଧ୍ୟ ? (୨୧ ଅଧ୍ୟାୟ) ପୁନଶ୍ଚ କହୁଛନ୍ତି, "ସେଇ କୃଷ୍ଣ ବର୍ତ୍ତମାନ ପାଣ୍ଡବମାନଙ୍କୁ ରକ୍ଷା କରୁଛନ୍ତି । କେଉଁ ଶତ୍ରୁ ବିଜୟାଭିଳାଷୀ ହୋଇ ଦ୍ୱୈରଥଯୁଦ୍ଧରେ ତାଙ୍କ ସମ୍ମୁଖୀନ ହେବ ? ହେ ସଞ୍ଜୟ ! କୃଷ୍ଣ ପାଣ୍ଡବାର୍ଥ ଯେଉଁ ପରାକ୍ରମ ପ୍ରକାଶ କରନ୍ତି, ତାହା ମୁଁ ଶ୍ରବଣ କରିଅଛି । ତାଙ୍କ କାର୍ଯ୍ୟ ଅନୁକ୍ଷଣ ସ୍ମରଣ କରି ମୁଁ ଶାନ୍ତି ଲାଭରୁ ବଞ୍ଚିତ ହୋଇଅଛି । କୃଷ୍ଣ ଯେଉଁମାନଙ୍କ ଅଗ୍ରଣୀ କେଉଁ ବ୍ୟକ୍ତି ସେମାନଙ୍କ ପ୍ରତାପ ସହ୍ୟ କରିବାକୁ ସମର୍ଥ ହେବ ? କୃଷ୍ଣ ଅର୍ଜ୍ଜୁନଙ୍କ ସାରଥ୍ୟ ସ୍ୱୀକାର କରିଅଛନ୍ତି ଶୁଣି ଭୟରେ ମୋର ହୃଦୟ କମ୍ପିତ ହେଉଅଛି ।" ଆଉ ଏକ

ଯେପରି ପାଣ୍ଡବମାନେ ଯୁଦ୍ଧ ନ କରନ୍ତି, ଏପରି ପରାମର୍ଶ ଦେବା ନିମିତ୍ତ ଧୃତରାଷ୍ଟ୍ର ନିଜର ଅମାତ୍ୟ ସଞ୍ଜୟଙ୍କୁ ପାଣ୍ଡବମାନଙ୍କ ନିକଟକୁ ପ୍ରେରଣ କଲେ । "ତୁମ୍ଭମାନଙ୍କର ରାଜ୍ୟ ବି ଆମେ ଅଧର୍ମ କରି କାଢ଼ି ନେବୁ; କିନ୍ତୁ ତୁମ୍ଭେମାନେ ସେଥିପାଇଁ ଯୁଦ୍ଧ କରି ନାହିଁ । ସେ କାମଟା ଭଲ ନୁହେଁ," ଏ ରୂପ ଅସଙ୍ଗତ କଥା ବିଶେଷ ନିର୍ଲଜ୍ଜ ବ୍ୟକ୍ତି ନ ହେଲେ କେହି ମୁହଁ ଖୋଲି କହି ପାରିବ ନାହିଁ । କିନ୍ତୁ ଦୂତର ଲଜ୍ଜା ନାହିଁ । ଅତଏବ ସଞ୍ଜୟ ପାଣ୍ଡବସଭାରେ ଆସି ଧର୍ମ ବକ୍ତୃତା କଲେ । ବକ୍ତୃତାର ସ୍ଥୂଳ ମର୍ମ ଏହି ଯେ, "ଯୁଦ୍ଧ ବଡ଼ ଗୁରୁତର ଅଧର୍ମ, ତୁମ୍ଭେମାନେ ସେଇ ଅଧର୍ମରେ ପ୍ରବୃତ୍ତ ହୋଇଅଛ, ଅତଏବ ତୁମେ ବଡ଼ ଅଧାର୍ମିକ !" ଯୁଧିଷ୍ଠିର, ତଦୁତ୍ତରରେ ଅନେକ କଥା କହିଲେ, ତନ୍ମଧ୍ୟରୁ ଆମର ଯେତିକି ପ୍ରୟୋଜନୀୟ, ତାହା ଉଦ୍ଧୃତ କରୁଅଛୁ ।

"ହେ ସଞ୍ଜୟ ! ଏହି ପୃଥିବୀରେ ଦେବଗଣଙ୍କ ବି ପ୍ରାର୍ଥନୀୟ ଯେଉଁ ସମସ୍ତ ଧନ ସମ୍ପତ୍ତି ଅଛି, ତତ୍ସମୁଦାୟ ଏବଂ ପ୍ରାଜାପତ୍ୟ ସ୍ୱର୍ଗ ଏବଂ ବ୍ରହ୍ମଲୋକ ଏହି ସମୁଦାୟ ମଧ୍ୟ ଅଧର୍ମତଃ ଲାଭ କରିବାକୁ ମୋର ବାସନା ନାହିଁ । ଯାହା ହେଉ, ମହାତ୍ମା କୃଷ୍ଣ ଧର୍ମପ୍ରଦାତା, ନୀତିସମ୍ପନ୍ନ ଓ ବ୍ରାହ୍ମଣମାନଙ୍କ ଉପାସକ । ସେ କୌରବ ଏବଂ ପାଣ୍ଡବ ଉଭୟ କୁଳର ମଧ୍ୟ ହିତୈଷୀ ଏବଂ ବହୁ ସଂଖ୍ୟକ ମହାବଳପରାକ୍ରାନ୍ତ ଭୂପତିମାନଙ୍କୁ

---

ଶାସନରେ ଧୃତରାଷ୍ଟ୍ର କରୁଛନ୍ତି କିନ୍ତୁ କେଶବ ମଧ୍ୟ ଅଧୃଷ୍ୟ, ଲୋକତ୍ରୟର ଅଧିପତି ଏବଂ ମହାତ୍ମା । ସେ ସର୍ବଲୋକରେ ଏକମାତ୍ର ବରେଣ୍ୟ କେଉଁ ମନୁଷ୍ୟ ତାଙ୍କ ସମ୍ମୁଖରେ ଅବସ୍ଥାନ କରିବ ?" ଏହି ରୂପେ ଅନେକ କଥା ଅଛି ।

ଶାସନ କରିଥାନ୍ତି । ବର୍ତ୍ତମାନ ସେହି କହନ୍ତୁ ଯେ, ଯଦି ମୁଁ ସନ୍ଧିପଥ ପରିତ୍ୟାଗ କରେ, ତାହା ହେଲେ ନିନ୍ଦନୀୟ ହେବ । ଆଜ ଯଦି ଯୁଦ୍ଧରୁ ନିବୃତ୍ତ ହେବ ତାହା ହେଲେ ମୋର ସ୍ୱଧର୍ମ ପରିତ୍ୟାଗ କରି ହେବ, ଏପରି ସ୍ଥଳରେ କଣ କର୍ତ୍ତବ୍ୟ । ମହାପ୍ରଭାବ ଶିନିଙ୍କ ନପ୍ତା ଏବଂ ଚେଦି, ଅନ୍ଧକ, ବୃଷ୍ଣି, ଭୋଜ, କୁକୁର ଓ ସଞ୍ଜୟବଂଶୀୟ ମାନେ ବାସୁଦେବଙ୍କ ବୁଦ୍ଧି ପ୍ରଭାବରେହିଁ ଶତ୍ରୁ ଦମନପୂର୍ବକ ସୁହୃଦ୍‌ଗଣଙ୍କୁ ଆନନ୍ଦିତ କରୁଛନ୍ତି । ଇନ୍ଦ୍ରକଳ୍ପ ଉଗ୍ରସେନ ପ୍ରଭୃତି ବୀରମାନେ ଏବଂ ମହାବଳପରାକ୍ରାନ୍ତ ମନସ୍ୱୀ ସତ୍ୟପରାୟଣ ଯାଦବଗଣ କୃଷ୍ଣ କର୍ତ୍ତୃକ ସତତ ଉପଦିଷ୍ଟ ହୋଇ ଥାନ୍ତି । କୃଷ୍ଣ ଭ୍ରାତା ଓ କର୍ତ୍ତା ବୋଲି କାଶୀଶ୍ୱର ବଭ୍ରୁ ଉତ୍ତମ ଶ୍ରୀ ପ୍ରାପ୍ତ ହୋଇଛନ୍ତି । ଗ୍ରୀଷ୍ମାବସାନରେ ଜଳଦଜାଳ ଯେପରି ପ୍ରଜାମାନଙ୍କୁ ବାରିଦାନ କରେ, ତଦ୍ରୂପ ବାସୁଦେବ କାଶୀଶ୍ୱରଙ୍କୁ ସମୁଦାୟ ଅଭିଳଷିତ ଦ୍ରବ୍ୟ ପ୍ରଦାନ କରି ଥାନ୍ତି । କର୍ମନିଷ୍ଠଙ୍କ କେଶବ ଈଦୃଶ ଗୁଣସମ୍ପନ୍ନ, ଇଏ ଆମର ନିତାନ୍ତ ପ୍ରିୟ ଓ ସାଧୁତମ, ମୁଁ କଦାପି ଏହାଙ୍କ କଥାର ଅନ୍ୟଥାଚରଣ କରିବି ନାହିଁ ।”

ବାସୁଦେବ କହିଲେ, ହେ ସଞ୍ଜୟ ! ମୁଁ ନିରନ୍ତର ପାଣ୍ଡବମାନଙ୍କର ଅବିନାଶ, ସମୃଦ୍ଧି ଓ ହିତ ଏବଂ ସପୁତ୍ର ରାଜା ଧୃତରାଷ୍ଟ୍ରଙ୍କର ଅଭ୍ୟୁଦୟ ବାସନା କରି ଥାଏଁ, କୌରବ ଓ ପାଣ୍ଡବମାନଙ୍କର ପରସ୍ପର ସନ୍ଧି ସଂସ୍ଥାପନ ହେଉ, ଏହା ମୋର ଅଭିପ୍ରେତ । ମୁଁ ସେମାନଙ୍କୁ ଏହା ବ୍ୟତୀତ ଆଉ କୌଣସି ପରାମର୍ଶ ପ୍ରଦାନ କରି ନାହିଁ । ଅନ୍ୟାନ୍ୟ ପାଣ୍ଡବମାନଙ୍କ ସମକ୍ଷରେ ରାଜା ଯୁଧିଷ୍ଠିରଙ୍କ ମୁଖରୁ ଅନେକ ବାର ସନ୍ଧି ସଂସ୍ଥାପନର କଥା ଶୁଣି ଅଛି । କିନ୍ତୁ ମହାରାଜ ଧୃତରାଷ୍ଟ୍ର ଓ ତାଙ୍କ

ପୁତ୍ରମାନେ ସାତିଶୟ ଅର୍ଥଲୋଭୀ, ପାଣ୍ଡବମାନଙ୍କ ସହିତ ତାଙ୍କର ସନ୍ଧି ସଂସ୍ଥାପନ ହେବା ନିତାନ୍ତ ଦୁଷ୍କର ସୁତରାଂ ବିବାଦ ଯେ, କ୍ରମଶଃ ପରିବର୍ଦ୍ଧିତ ହେବ, ତହିଁରେ ଆଶ୍ଚର୍ଯ୍ୟ କଣ ? ହେ ସଞ୍ଜୟ ! ଧର୍ମରାଜ ଯୁଧିଷ୍ଠିର ଓ ମୁଁ କଦାପି ଧର୍ମରୁ ବିଚଳିତ ହୋଇନାହୁଁ ଏହା ଜାଣିଶୁଣି ତୁମେ କି ନିମିତ୍ତ ସ୍ୱକର୍ମସାଧନୋଦ୍ୟତ ଉତ୍ସାହସମ୍ପନ୍ନ ସ୍ୱଜନ ପରିପାଳକ ରାଜା ଯୁଧିଷ୍ଠିରଙ୍କୁ ଅଧାର୍ମିକ ବୋଲି ନିର୍ଦ୍ଦେଶ କଲ ?"

ଏହି ପର୍ଯ୍ୟନ୍ତ କହି ଶ୍ରୀକୃଷ୍ଣ ଧର୍ମର ବ୍ୟାଖ୍ୟାରେ ପ୍ରବୃତ୍ତ ହେଲେ । ଏହି କଥାଟା କୃଷ୍ଣଚରିତରେ ବଡ଼ ପ୍ରୟୋଜନୀୟ । ଆମେ କହିଅଛୁଁ, ତାଙ୍କ ଜୀବନର କାର୍ଯ୍ୟ ଦୁଇଟି—ଧର୍ମରାଜ୍ୟ-ସଂସ୍ଥାପନ ଏବଂ ଧର୍ମପ୍ରଚାର । ମହାଭାରତରେ ତାଙ୍କ କୃତ ଧର୍ମରାଜ୍ୟ ସଂସ୍ଥାପନ ସବିସ୍ତାର ବର୍ଣ୍ଣିତ ହୋଇଅଛି । କିନ୍ତୁ ତାଙ୍କ ପ୍ରଚାରିତ ଧର୍ମର କଥା ପ୍ରଧାନତଃ ଭୀଷ୍ମପର୍ବର ଅନ୍ତର୍ଗତ ଗୀତା-ପର୍ବାଧ୍ୟାୟରେହିଁ ଅଛି । ଏପରି ଆପତ୍ତି ଉଠି ପାରେ ଯେ, ଗୀତାରେ ଯେଉଁ ଧର୍ମ କଥିତ ହୋଇ ଅଛି, ତାହା ଗୀତାକାର କୃଷ୍ଣଙ୍କ ମୁଖରେ ବସାଇ ଦେଇଛନ୍ତି ସତ୍ୟ, କିନ୍ତୁ ସେ ଧର୍ମ ଯେ କୃଷ୍ଣ-ପ୍ରଚାରିତ କି ଗୀତାକାର-ପ୍ରଣୀତ ତାହାର ସ୍ଥିରତା କଣ ? ସୌଭାଗ୍ୟକ୍ରମେ ଆମ୍ଭେମାନେ ଗୀତା-ପର୍ବାଧ୍ୟାୟ ଭିନ୍ନ ମହାଭାରତର ଅନ୍ୟାନ୍ୟ ଅଂଶରେ ମଧ୍ୟ କୃଷ୍ଣଦତ୍ତ ଧର୍ମୋପଦେଶ ଦେଖିବାକୁ ପାଇଥାଉଁ । ଯଦି ଆମେ ଦେଖୁଁ ଯେ, ଗୀତାରେ ଯେଉଁ ଅଭିନବ ଧର୍ମ ବ୍ୟାଖ୍ୟାତ ହୋଇଅଛି ଆଉ ମହାଭାରତର ଅନ୍ୟାନ୍ୟ ଅଂଶରେ କୃଷ୍ଣ ଯେଉଁ ଧର୍ମ ବ୍ୟାଖ୍ୟାନ କରୁଛନ୍ତି, ଏହା ମଧ୍ୟରେ ଏକତା ଅଛି, ତାହା ହେଲେ ଆମେ କହି ପାରୁ ଯେ, ଏହି ଧର୍ମ କୃଷ୍ଣପ୍ରଣୀତ ଏବଂ କୃଷ୍ଣପ୍ରଚାରିତ ମଧ୍ୟ । ମହାଭାରତର

ଐତିହାସିକତା ଯଦି ସ୍ୱୀକାର କରୁ, ଆଉ ଯଦି ଦେଖୁ ଯେ, ମହାଭାରତ-କାର ଯେଉଁ ଧର୍ମବ୍ୟାଖ୍ୟା ସ୍ଥାନେ ସ୍ଥାନେ କୃଷ୍ଣଙ୍କଠାରେ ଅରୋପ କରିଛନ୍ତି, ତାହା ସର୍ବଥା ଏକ ପ୍ରକୃଷ୍ଟତରଧର୍ମ, ଯଦି ପୁନଶ୍ଚ ଦେଖୁ ଯେ, ସେହି ଧର୍ମ ପ୍ରଚଳିତ ଧର୍ମରୁ ଭିନ୍ନ ପ୍ରକୃଷ୍ଟତର ଧର୍ମ; ତେବେ କହିବି ଏହି ଧର୍ମ କୃଷ୍ଣଙ୍କରହିଁ ପ୍ରବର୍ତ୍ତିତ । ପୁଣି ଯଦି ଦେଖୁ ଯେ, ଗୀତାରେ ଯେଉଁ ଧର୍ମ ସବିସ୍ତାରରେ ଏବଂ ପୂର୍ଣ୍ଣତାର ସହିତ ବ୍ୟାଖ୍ୟାତ ହୋଇଅଛି, ତାହା ସହିତ ସେହି କୃଷ୍ଣ ପ୍ରବର୍ତ୍ତିତ ଧର୍ମସଙ୍ଗେ ଐକ୍ୟ ଅଛି, ତାହା ତାହାର ଆଂଶିକ ବ୍ୟାଖ୍ୟା ମାତ୍ର, ତେବେ କହିବି ଯେ, ଗୀତୋକ୍ତ ଧର୍ମ ଯଥାର୍ଥରେ କୃଷ୍ଣ-ପ୍ରଣୀତ ମଧ୍ୟ ।

ବର୍ତ୍ତମାନ ଦେଖାଯାଉ କୃଷ୍ଣ ଏଠାରେ ସଞ୍ଜୟଙ୍କୁ କଣ କହୁଛନ୍ତି ।

"ଶୁଚି ଓ କୁଟୁମ୍ବପରିପାଳକ ହୋଇ ବେଦାଧ୍ୟୟନ କରି ଜୀବନଯାପନ କରିବେ, ଏହିରୂପ ଶାସ୍ତ୍ର ନିର୍ଦ୍ଦିଷ୍ଟ ବିଧି ବିଦ୍ୟମାନ ଥିଲେ ସୁଦ୍ଧା ବ୍ରାହ୍ମଣମାନଙ୍କର ନାନାପ୍ରକାର ବୁଦ୍ଧି ଜନ୍ମିଥାଏ । କେହି କର୍ମବଶତଃ କେହିବା କର୍ମ ପରିତ୍ୟାଗ କରି ଏକମାତ୍ର ବେଦଜ୍ଞାନ ଦ୍ୱାରା ମୋକ୍ଷ ଲାଭ ହୁଏ ଏହିରୂପ ସ୍ୱୀକାର କରିଥାନ୍ତି, କିନ୍ତୁ ଯେପରି ଭୋଜନ ନ କଲେ ତୃପ୍ତିଲାଭ ହୁଏ ନାହିଁ, ତଦ୍ରୂପ କର୍ମାନୁଷ୍ଠାନ ନ କରି କେବଳ ବେଦଜ୍ଞ ହେଲେ ବ୍ରାହ୍ମଣମାନଙ୍କର କଦାପି ମୋକ୍ଷ ଲାଭ ହୁଏ ନାହିଁ । ଯେଉଁ ସମସ୍ତ ବିଦ୍ୟାଦ୍ୱାରା କର୍ମ ସମାଧାନ ହୋଇଥାଏ, ତାହାହିଁ ଫଳବତୀ, ଯହିଁରେ କୌଣସି କର୍ମାନୁଷ୍ଠାନର ବିଧି ନାହିଁ, ସେ ବିଦ୍ୟା ନିତାନ୍ତ ନିଷ୍ଫଳ ଅତଏବ ଯେପରି ପିପାସାର୍ତ୍ତ ବ୍ୟକ୍ତିର ଜଳପାନ କରିବାମାତ୍ରେ ପିପାସାର ଶାନ୍ତି ହୁଏ ତଦ୍ରୂପ ଇହକାଳରେ ଯେଉଁ ସମସ୍ତ

କର୍ମର ଫଳ ପ୍ରତ୍ୟକ୍ଷ ହୋଇଥାଏ ତାହାର ଅନୁଷ୍ଠାନ କରିବା ହେଉଛି କର୍ତ୍ତବ୍ୟ । ହେ ସଞ୍ଜୟ ! କର୍ମବଶତଃହିଁ ଏହିରୂପ ବିଧି ବନ୍ଦିତ ହୋଇଅଛି । ସୁତରାଂ କର୍ମ ସର୍ବପ୍ରଧାନ । ଯେଉଁ ବ୍ୟକ୍ତି କର୍ମ ଅପେକ୍ଷା ଅନ୍ୟ କୌଣସି ବିଷୟକୁ ଉତ୍କୃଷ୍ଟ ବିବେଚନା କରି ଥାଏ, ତାହାର ସମସ୍ତ କର୍ମ ନିଷ୍ଫଳ ହୁଏ ।

"ଦେଖ, ଦେବତାମାନେ କର୍ମବଳରେ ପ୍ରଭାବସମ୍ପନ୍ନ ହୋଇଅଛନ୍ତି, ସମୀରଣ କର୍ମବଳରେ ସତତ ସଞ୍ଚରଣ କରୁଅଛନ୍ତି ଦିବାକର କର୍ମବଳରେ ଆଳସ୍ୟଶୂନ୍ୟ ହୋଇ ଅହୋରାତ୍ର ପରିଭ୍ରମଣ କରୁଛନ୍ତି , ଚନ୍ଦ୍ରମା କର୍ମବଳରେ ନକ୍ଷତ୍ରମଣ୍ଡଳ-ପରିବୃତ ହୋଇ ମାସାର୍ଦ୍ଧ ଉଦିତ ହେଉଛନ୍ତି, ହୁତାଶନ କର୍ମବଳରେ ପ୍ରଜାମାନଙ୍କ କର୍ମ ସମାଧାନ କରି ନିରବଚ୍ଛିନ୍ନ ଉତ୍ତାପ ପ୍ରଦାନ କରୁଛନ୍ତି, ପୃଥିବୀ କର୍ମବଳରେ ନିତାନ୍ତ ଦୁର୍ଭର ଭାର ଅନାୟାସରେ ବହନ କରୁଛନ୍ତି, ସ୍ରୋତସ୍ୱତୀ ସବୁ କର୍ମବଳରେ ପ୍ରାଣୀମାନଙ୍କ ତୃପ୍ତିସାଧନ କରି ସଲିଳରାଶି ଧାରଣ କରୁଛନ୍ତି ; ଅମିତବଳଶାଳୀ ଦେବରାଜ ଇନ୍ଦ୍ର ଦେବଗଣଙ୍କ ମଧ୍ୟରେ ପ୍ରାଧାନ୍ୟ ଲାଭ କରିବା ନିମିତ୍ତ ବ୍ରହ୍ମଚର୍ଯ୍ୟର ଅନୁଷ୍ଠାନ କରିଥିଲେ । ସେ ସେହି କର୍ମବଳରେ ଦଶଦିଗ ଓ ନଭୋମଣ୍ଡଳ ପ୍ରତିଧ୍ୱନିତ କରି ବାରିବର୍ଷଣ କରି ଥାନ୍ତି ଏବଂ ଅପ୍ରମତ୍ତଚିତ୍ତରେ ଭୋଗାଭିଳାଷ ବିସର୍ଜ୍ଜନ ଓ ପ୍ରିୟବସ୍ତୁ ସମୁଦାୟ ପରିତ୍ୟାଗ କରି ଶ୍ରେଷ୍ଠତ୍ୱ ଲାଭ ଏବଂ ଦମ, କ୍ଷମା, ସମତା, ସତ୍ୟ, ଓ ଧର୍ମ ପ୍ରତିପାଳନ ପୂର୍ବକ ଦେବରାଜ୍ୟ ଅଧିକାର କରିଛନ୍ତି । ଭଗବାନ୍ ବୃହସ୍ପତି ସମାହିତ ହୋଇ ଇନ୍ଦ୍ରିୟନିରୋଧ ପୂର୍ବକ ବ୍ରହ୍ମଚର୍ଯ୍ୟର ଅନୁଷ୍ଠାନ କରିଥିଲେ; ଏଥି ନିମିତ୍ତ ସେ ଦେବଗଣର ଆଚାର୍ଯ୍ୟପଦ ପ୍ରାପ୍ତ ହୋଇଛନ୍ତି । ରୁଦ୍ର, ଆଦିତ୍ୟ, ଯମ, କୁବେର, ଗନ୍ଧର୍ବ, ଯକ୍ଷ,

ଅପ୍ସର, ବିଶ୍ୱାବସୁ ଓ ନକ୍ଷତ୍ରଗଣ କର୍ମପ୍ରଭାବରେ ବିରାଜିତ ରହିଛନ୍ତି ; ମହର୍ଷିଗଣ ବ୍ରହ୍ମବିଦ୍ୟା, ବ୍ରହ୍ମଚର୍ଯ୍ୟ ଓ ଅନ୍ୟାନ୍ୟ କ୍ରିୟାକଳାପର ଅନୁଷ୍ଠାନ କରି ଶ୍ରେଷ୍ଠତ୍ୱଲାଭ କରିଛନ୍ତି।"

କର୍ମବାଦ କୃଷ୍ଣଙ୍କ ପୂର୍ବେ ମଧ୍ୟ ପ୍ରଚଳିତ ଥିଲା, କିନ୍ତୁ ସେ ପ୍ରଚଳିତ ମତାନୁସାରେ ବୈଦିକ କ୍ରିୟାକାଣ୍ଡହିଁ କର୍ମ । ମନୁଷ୍ୟ ଜୀବନର ସମସ୍ତ ଅନୁଷ୍ଠେୟ କର୍ମ, ଯାହାକୁ ପାଶ୍ଚାତ୍ୟମାନେ Duty କହନ୍ତି-ସେ ଅର୍ଥରେ ସେହି ପ୍ରଚଳିତ ଧର୍ମରେ "କର୍ମ" ଶବ୍ଦ ବ୍ୟବହୃତ ହୁଅନ୍ତା ନାହିଁ । ଗୀତାରେ କେବଳ ଆମେ ଦେଖୁ କର୍ମ ଶବ୍ଦର ପୂର୍ବପ୍ରଚଳିତ ଅର୍ଥ ପରିବର୍ତ୍ତିତ ହୋଇ, ଯାହା କର୍ତ୍ତବ୍ୟ, ଯାହା ଅନୁଷ୍ଠେୟ, ଯାହା Duty, ସାଧାରଣତଃ ତାହା କର୍ମ ନାମ ପ୍ରାପ୍ତ ହୋଇଅଛି । ଆଜି ଏହିଠାରେ ଦେଖୁଅଛୁ । ଭାଷାଗତ ବିଶେଷ ପ୍ରଭେଦ ଅଛି—କିନ୍ତୁ ମର୍ମାର୍ଥ ଏକ । ଏଠାରେ ଯେ ବକ୍ତା, ଗୀତାରେ ମଧ୍ୟ ସେଇ ପ୍ରକୃତ ବକ୍ତା , ଏ କଥାରେ ସ୍ୱୀକାର କରାଯାଇ ପାରେ ।

ଅନୁଷ୍ଠେୟ କର୍ମର ଯଥା ବିହିତ ନିର୍ବାହର ଅର୍ଥାତ୍ (ଉକ୍ତି ସମ୍ପାଦନର) ନାମାନ୍ତର ସ୍ୱଧର୍ମପାଳନ । ଗୀତାରେ ପ୍ରଥମରେ ଶ୍ରୀକୃଷ୍ଣ ସ୍ୱଧର୍ମ ପାଳନରେ ଅର୍ଜୁନଙ୍କୁ ଉପଦେଷ୍ଟ କରୁଛନ୍ତି । ଏଠାରେ ମଧ୍ୟ କୃଷ୍ଣ ସେହି ସ୍ୱଧର୍ମପାଳନର ଉପଦେଶ ଦେଇଛନ୍ତି । ଯଥା,

"ହେ ସଞ୍ଜୟ ! ତୁମେ କି ନିମିତ୍ତ ବ୍ରାହ୍ମଣ, କ୍ଷତ୍ରିୟ, ଓ ବୈଶ୍ୟ ପ୍ରଭୃତି ସକଳ ଲୋକର ଧର୍ମ ସବିଶେଷ ଜ୍ଞାତ ହୋଇ ସୁଦ୍ଧା କୌରବ ମାନଙ୍କ ହିତ ସାଧନ ମାନସରେ ପାଣ୍ଡବମାନଙ୍କର ନିଗ୍ରହ ଚେଷ୍ଟା କରୁଅଛ ? ଧର୍ମରାଜ ଯୁଧିଷ୍ଠିର ବେଦଜ୍ଞ

ଅଶ୍ୱମେଧ ଓ ରାଜସୂୟ ଯଜ୍ଞର ଅନୁଷ୍ଠାନ କର୍ତ୍ତା, ଯୁଦ୍ଧବିଦ୍ୟାରେ ପାରଦର୍ଶୀ ଏବଂ ହସ୍ତ୍ୟଶ୍ୱରଥଚାଳନରେ ସୁନିପୁଣ । ବର୍ତ୍ତମାନ ଯଦି ପାଣ୍ଡବମାନେ କୌରବମାନଙ୍କ ପ୍ରାଣ ହିଂସା ନକରି ଭୀମସେନଙ୍କୁ ସାନ୍ତ୍ୱନା କରି ରାଜ୍ୟଲାଭର ଅନ୍ୟ କୌଣସି ଉପାୟ ଅବଧାରଣ କରି ପାରନ୍ତି, ତାହା ହେଲେ ଧର୍ମରକ୍ଷା ଓ ପୁଣ୍ୟ କର୍ମର ଅନୁଷ୍ଠାନ ହେବ । ଅଥବା ଏମାନେ ଯଦି କ୍ଷତ୍ରିୟଧର୍ମ ପ୍ରତିପାଳନପୂର୍ବକ ସ୍ୱକର୍ମ ସମ୍ପାଦନ କରି ଦୁରଦୃଷ୍ଟ ବଶତଃ ମୃତ୍ୟୁମୁଖରେ ନିପତିତ ହୁଅନ୍ତି, ତାହାମଧ୍ୟ ପ୍ରଶସ୍ତ । ବୋଧ ହୁଏ, ତୁମେ ସନ୍ଧି ସଂସ୍ଥାପନହିଁ ଶ୍ରେୟଃସାଧନ ବିବେଚନା କରୁଅଛ ; କିନ୍ତୁ ପଚାରେ, କ୍ଷତ୍ରିୟମାନଙ୍କର ଯୁଦ୍ଧରେ ଧର୍ମରକ୍ଷା ହୁଏ କି ଯୁଦ୍ଧ ନ କଲେ ଧର୍ମରକ୍ଷା ହୁଏ ? ଏହା ମଧ୍ୟରେ ଯାହା ଶ୍ରେଷ୍ଠ ବୋଲି ବିବେଚନା କରିବ, ମୁଁ ତାହାହିଁ ଅନୁଷ୍ଠାନ କରିବି ।”

ତାରପରେ ଶ୍ରୀକୃଷ୍ଣ ଚତୁର୍ବର୍ଣ୍ଣର ଧର୍ମକଥନରେ ପ୍ରବୃତ୍ତ ହେଲେ ଗୀତାରେ ଅଷ୍ଟାଦଶ ଅଧ୍ୟାୟରେ ବ୍ରାହ୍ମଣ, କ୍ଷତ୍ରିୟ ବୈଶ୍ୟ ଶୂଦ୍ରର ଯେପରି ଧର୍ମ କଥିତ ହୋଇଅଛି—ଏଠାରେ ମଧ୍ୟ ସେହି ରୂପ । ଏହିପରି ମହାଭାରତରେ ଅନ୍ୟତ୍ର ମଧ୍ୟ ଭୂରି ଭୂରି ପ୍ରମାଣ ମିଳେ ଯେ, ଗୀତୋକ୍ତ ଧର୍ମ ଏବଂ ମହାଭାରତରେ ଅନ୍ୟତ୍ର କଥିତ କୃଷ୍ଣୋକ୍ତ ଧର୍ମ ଏକ । ଅତଏବ ଗୀତୋକ୍ତ ଧର୍ମ ଯେ କୃଷ୍ଣଙ୍କ ଧର୍ମ- ସେ ଧର୍ମ ଯେ କେବଳ କୃଷ୍ଣଙ୍କ ନାମରେ ପରିଚିତ, ତାହା ନୁହେଁ ଯଥାର୍ଥରେ କୃଷ୍ଣପ୍ରଣୀତ ଧର୍ମ, ଏହା ଏକ ପ୍ରକାର ସିଦ୍ଧ । କୃଷ୍ଣ ସଞ୍ଜୟଙ୍କୁ ଆହୁରି ଅନେକ କଥା କହିଲେ । ତାହାର ଦୁଇଟା ଚାରୋଟାଏ ଉଦ୍ଧୃତ କରିବି ।

ଇଉରୋପୀୟମାନଙ୍କ ବିବେଚନାରେ ପରଦ୍ରବ୍ୟାପହରଣ

ଅପେକ୍ଷା ଗୌରବର କର୍ମ୍ମ କିଛି ନାହିଁ । ତାହାର ନାମ "Conquest" "Glory" "Extension of Empire" ଇତ୍ୟାଦି ଇତ୍ୟାଦି । ଯେପରି ଇଂରାଜୀରେ, ଇଉରୋପୀୟ ଅନ୍ୟାନ୍ୟ ଭାଷାରେ ମଧ୍ୟ ଠିକ ସେହିରୂପ ପରରାଜ୍ୟାପହରଣର ଗୁଣାନୁବାଦ । କେବଳ ଏହି "Glorie" ଶବ୍ଦର ମୋହରେ ମୁଗ୍ଧ ହୋଇ ପୁଣି ଆଉ ଦ୍ୱିତୀୟ ଫ୍ରେଡ୍ରୀକ ତିନିଥର ଇଉରୋପରେ ସମରାନଳ ଜାଳି ଲକ୍ଷ ଲକ୍ଷ ମନୁଷ୍ୟର ସର୍ବନାଶର କାରଣ ହୋଇଥିଲେ । ଈଦୃଶ ରୁଧିରପିପାସୁ ରାକ୍ଷସଭିନ୍ନ ଅନ୍ୟ ବ୍ୟକ୍ତିର ସହଜରେ ଏହା ବୋଧ ହୁଏ ଯେ, ଏହିରୂପ "Glorie" ଓ ତସ୍କରତାର ଆଉ ପ୍ରଭେଦ କିଛିମାତ୍ର ନାହିଁ—କେବଳ ପରରାଜ୍ୟାପହାରକ ବଡ଼ ଚୋର, ଅନ୍ୟ ଚୋର ଛୋଟ ଚୋର * କିନ୍ତୁ ଏ କଥାଟା କହିବା ବଡ଼ ମୁସ୍‌କିଲ, କାରଣ, ଦିଗ୍‌ବିଜୟର ଏପରି ଗୋଟାଏ ମୋହ ଅଛି ଯେ, ଆର୍ଯ୍ୟ ଋଷିମାନେ ମଧ୍ୟ ମୁଗ୍ଧ ହୋଇ ଅନେକ ସମୟରେ ଧର୍ମ୍ମାଧର୍ମ୍ମ ଭୁଲି ଯାଉଥିଲେ । ଇଉରୋପରେ କେବଳ "Diogenes" ମହାବୀର ଆଲେକ୍‌ଜାଣ୍ଡରଙ୍କୁ କହିଥିଲେ "ତୁମେ ଜଣେ ବଡ଼ ଦସ୍ୟୁ ମାତ୍ର ।" ଭାରତବର୍ଷରେ ବି ଶ୍ରୀକୃଷ୍ଣ ପରରାଜ୍ୟ ଲୋଲୁପ ରାଜାମାନଙ୍କୁ ତାହାହିଁ କହୁଛନ୍ତି—ତାଙ୍କ ମତରେ ଛୋଟ ଚୋର ଲୁଚି ଚୋରି କରେ, ବଡ଼ ଚୋର ପ୍ରକାଶ୍ୟରେ ଚୋରି କରେ, ସେ କହୁଛନ୍ତି, "ତସ୍କର ଦୃଶ୍ୟ ବା ଅଦୃଶ୍ୟ ହୋଇ ହଠାତ୍ ଯେ ସର୍ବସ୍ୱ ଅପହରଣ କରେ, ଉଭୟ ମଧ୍ୟ ନିନ୍ଦନୀୟ । ସୁତରାଂ

---

* ତେବେ ଯେଉଁ ଠାରେ କେବଳ ପରୋପକାରାର୍ଥ ପରର ରାଜ୍ୟ ହସ୍ତଗତ କରା ହୁଏ, ସେଠାରେ ନା କଣ ଭିନ୍ନ କଥା ହୋଇପାରେ ସେରୂପ କାର୍ଯ୍ୟର ବିଚାରରେ ମୁଁ ସକ୍ଷମ ନୁହେଁ—କାରଣ, ରାଜନୀତିଜ୍ଞ ନୁହେଁ ।

ଦୁର୍ଯ୍ୟୋଧନଙ୍କ କାର୍ଯ୍ୟ ମଧ୍ୟ ଏକପ୍ରକାର ତସ୍କରକାର୍ଯ୍ୟ ବୋଲି ପ୍ରତିପନ୍ନ କରାଯାଇ ପାରେ ।"

ଏହି ତସ୍କର ମାନଙ୍କ ହାତରୁ ନିଜସ୍ୱ ରକ୍ଷା କରିବାକୁ କୃଷ୍ଣ ପରମଧର୍ମ ବୋଲି ବିବେଚନା କରନ୍ତି । ଆଧୁନିକ ପଣ୍ଡିତମାନଙ୍କର ମଧ୍ୟ ସେହି ମତ । ଗ୍ରେଟ ଚୋର ହାତରୁ ନିଜସ୍ୱ ରକ୍ଷା କରିବାର ଇଂରାଜି ନାମ Justice; ବଡ଼ ଚୋର ହାତରୁ ନିଜସ୍ୱ ରକ୍ଷାର ନାମ Patristism । ଉଭୟରିଇ ଦେଶୀୟ ନାମ ସ୍ୱଧର୍ମ ପାଳନ । କୃଷ୍ଣ କହୁଛନ୍ତି, "ଏଇ ବିଷୟ ନିମିତ୍ତ ପ୍ରାଣ ପର୍ଯ୍ୟନ୍ତ ପରିତ୍ୟାଗ କରିବାକୁ ଯଦି ହୁଏ, ତାହା ବି ଶ୍ଲାଘନୀୟ, ତଥାପି ପୈତୃକ ରାଜ୍ୟର ପୁନରୁଦ୍ଧାରରେ ବିମୁଖ ହେବା କୌଣସି ମତେ ଉଚିତ ନୁହେଁ ।"

କୃଷ୍ଣ ସଞ୍ଜୟଙ୍କ ଧର୍ମର ଭଣ୍ଡାମି ଶୁଣି ସଞ୍ଜୟଙ୍କୁ କିଛି ସଙ୍ଗତ ତିରସ୍କାର ମଧ୍ୟ କଲେ । କହିଲେ, "ତୁମେ ବର୍ତ୍ତମାନ ରାଜା ଯୁଧିଷ୍ଠିରଙ୍କୁ ଧର୍ମୋପଦେଶ ପ୍ରଦାନ କରିବାକୁ ଅଭିଳାଷୀ ହୋଇଅଛ, କିନ୍ତୁ ସେ ସମୟରେ (ଯେଉଁବେଳେ ଦୁଃଶାସନ ସଭାମଧ୍ୟରେ ଦ୍ରୌପଦୀଙ୍କ ଉପରେ ଅଶ୍ରାବ୍ୟ ଅତ୍ୟାଚାର କରେ) ସଭାମଧ୍ୟରେ ଦୁଃଶାସନକୁ ଧର୍ମୋପଦେଶ ପ୍ରଦାନ କରି ନାହିଁ ।" କୃଷ୍ଣ ସଚରାଚର ପ୍ରିୟବାଦୀ, କିନ୍ତୁ ଯଥାର୍ଥ ଦୋଷକୀର୍ତ୍ତନକାଳରେ ବଡ଼ ସ୍ପଷ୍ଟବକ୍ତା । ସତ୍ୟନିଷ୍ଠ ସବୁକାଳରେ ତାଙ୍କ ନିକଟରେ ପ୍ରିୟ ।

ସଞ୍ଜୟଙ୍କୁ ତିରସ୍କାର କରି, କୃଷ୍ଣ ପ୍ରକାଶ କଲେ ଯେ ଉଭୟ ପକ୍ଷରେ ହିତ ସାଧନାର୍ଥ ସ୍ୱୟଂ ହସ୍ତିନା ନଗରକୁ ଗମନ କରିବେ । କହିଲେ, "ଯହିଁରେ ପାଣ୍ଡବମାନଙ୍କ ଅର୍ଥହାନି ନ ହୁଏ, ଏବଂ କୌରବମାନେ ମଧ୍ୟ ସନ୍ଧି ସଂସ୍ଥାପନରେ ସମ୍ମତ ହୁଅନ୍ତି, ବର୍ତ୍ତମାନ ତଦ୍ ବିଷୟରେ ବିଶେଷ ଯତ୍ନ କରିବାକୁ ହେବ । ତାହା ହେଲେ,

ସୁମହତ୍ ପୁଣ୍ୟକର୍ମର ଅନୁଷ୍ଠାନ ହୁଏ, ଏବଂ କୌରବମାନେମଧ୍ୟ ମୃତ୍ୟୁପାଶରୁ ବିମୁକ୍ତ ହୋଇ ପାରନ୍ତି ।"

ଲୋକର ହିତାର୍ଥ, ଅସଂଖ୍ୟ ମନୁଷ୍ୟର ପ୍ରାଣରକ୍ଷାର୍ଥ, କୌରବମାନଙ୍କର ମଧ୍ୟ ରକ୍ଷାର୍ଥ, କୃଷ୍ଣ ଏହି ଦୁଷ୍କର କର୍ମରେ ସ୍ୱୟଂ ଉପଯାଚକ ହୋଇ ପ୍ରବୃତ୍ତ ହେଲେ । ମନୁଷ୍ୟ ଶକ୍ତିରେ ଦୁଷ୍କର କର୍ମ, କାରଣ ବର୍ତ୍ତମାନ ପାଣ୍ଡବମାନେ ତାଙ୍କୁ ବରଣ କରି ଅଛନ୍ତି; ଏଥି ନିମିତ୍ତ କୌରବମାନେ ତାଙ୍କ ସଙ୍ଗେ ଶତ୍ରୁବତ୍ ବ୍ୟବହାର କରିବାର ଅଧିକାର ପ୍ରାପ୍ତ ହୋଇଛନ୍ତି । କିନ୍ତୁ ଲୋକହିତାର୍ଥ ସେ ନିରସ୍ତ୍ର ହୋଇ ଶତ୍ରୁପୁରୀମଧ୍ୟରେ ପ୍ରବେଶ କରିବାରେ ଶ୍ରେୟ ବିବେଚନା କଲେ ।

## ତୃତୀୟ ପରିଚ୍ଛେଦ
## ଯାନସନ୍ଧି

ଏହିଠାରେ ସଞ୍ଜୟଯାନ-ପର୍ବାଧ୍ୟାୟ ସମାପ୍ତ । ସଞ୍ଜୟଯାନ ପର୍ବାଧ୍ୟାୟର ଶେଷ ଭାଗରେ ଦେଖା ଯାଏ ଯେ କୃଷ୍ଣ ହସ୍ତିନା ଯିବାକୁ ପ୍ରସ୍ତୁତ ହୋଇଥିଲେ ଏବଂ ବାସ୍ତବିକ ଠିକ୍ ତାହା ପରେ ସେ ହସ୍ତିନାକୁ ଗମନ କରିଥିଲେ । କିନ୍ତୁ ସଞ୍ଜୟଯାନ-ପର୍ବାଧ୍ୟାୟ ଓ ଭଗବଦ୍‌ଯାନ-ପର୍ବାଧ୍ୟାୟ ମଧ୍ୟରେ ଆଉ ତିନୋଟି ପର୍ବାଧ୍ୟାୟ ଅଛି;

"ପ୍ରଜାଗର," "ସନତ୍ସୁଜାତ," ଏବଂ "ଯାନସନ୍ଧି" ପ୍ରଥମ ଦୁଇଟି ପ୍ରକ୍ଷିପ୍ତ, ସେଥିରେ କୌଣସି ସନ୍ଦେହ ନାହିଁ । ସେଥିରେ ମହାଭାରତର କଥା କିଛିନାହିଁ – ଅତି ଉତ୍କୃଷ୍ଟ ଧର୍ମ ଓ ନୀତିକଥା ଅଛି । କୃଷ୍ଣଙ୍କ କୌଣସି କଥା ବି ନାହିଁ, ସୁତରାଂ ଏହି ଦୁଇ ପର୍ବାଧ୍ୟାୟରେ ଆମର କୌଣସି ପ୍ରୟୋଜନ ନାହିଁ ।

ଯାନସନ୍ଧି ପର୍ବାଧ୍ୟାୟରେ ସଞ୍ଜୟ ହସ୍ତିନାକୁ ଫେରିଆସି ଧୃତରାଷ୍ଟ୍ରଙ୍କୁ ଯାହା ଯାହା କହିଲେ, ଏବଂ ତାହା ଶୁଣି ଧୃତରାଷ୍ଟ୍ର, ଦୁର୍ଯ୍ୟୋଧନ ଏବଂ ଅନ୍ୟାନ୍ୟ କୌରବମାନଙ୍କ ମଧ୍ୟରେ ଯେଉଁ ବାଦାନୁବାଦ ହେଲା, ତାହାହିଁ କଥିତ ଅଛି, ବକ୍ତୃତାସବୁ ଅତି ଦୀର୍ଘ, ପୁନରୁକ୍ତିର ଅତ୍ୟନ୍ତ ବାହୁଲ୍ୟବିଶିଷ୍ଟ ଏବଂ ଅନେକ ସମୟରେ ନିଷ୍ପ୍ରୟୋଜନୀୟ । କୃଷ୍ଣଙ୍କ ପ୍ରସଙ୍ଗ, ଏହାର ଦୁଇ ସ୍ଥାନରେ ଅଛି ।

ପ୍ରଥମ, ଅଷ୍ଟପଞ୍ଚାଶତ୍ତମ ଅଧ୍ୟାୟରେ । ଧୃତରାଷ୍ଟ୍ର ଅତିବିସ୍ତାରିତ ଭାବରେ ଅର୍ଜୁନବାକ୍ୟ ସଞ୍ଜୟ ମୁଖରୁ ଶୁଣି, ପୁନର୍ବାର ହଠାତ୍ ସଞ୍ଜୟଙ୍କୁ ପଚାରୁଛନ୍ତି, "ବାସୁଦେବ ଓ ଧନଞ୍ଜୟ ଯାହା କହୁଛନ୍ତି, ତାହା ଶ୍ରବଣ କରିବା ନିମିତ୍ତ ଉତ୍ସୁକ ହୋଇଅଛି, ଅତଏବ ତାହାହିଁ କୀର୍ତ୍ତନ କର ।"

ତଦୁତ୍ତରରେ ସଞ୍ଜୟ, ସଭାରେ ଯେଉଁ ସବୁ କଥାବାର୍ତ୍ତା ହୋଇଥିଲା, ତାହାର କିଛିମାତ୍ର ନକହି, ଗୋଟାଏ କଳ୍ପିତ ଗଳ୍ପ ଆରମ୍ଭ କଲେ । କହିଲେ ଯେ, ସେ ପାଦ ଚିପି ଚିପି—ଅର୍ଥାତ୍ ଚୋରର ଚାଲି, ପାଣ୍ଡବମାନଙ୍କ ଅନ୍ତଃପୁର ମଧ୍ୟରେ, ଅଭିମନ୍ୟୁ ପ୍ରଭୃତିଙ୍କର ମଧ୍ୟ ଅଗମ୍ୟ ସ୍ଥାନକୁ ଗମନ କରି କୃଷ୍ଣାର୍ଜୁନଙ୍କ ସାକ୍ଷାତ୍‌କାର ଲାଭ କଲେ । ଦେଖିଲେ, କୃଷ୍ଣାର୍ଜୁନ ମଦ ପିଇ ଉନ୍ମତ୍ତ, ଅର୍ଜୁନ ଦ୍ରୌପଦୀ ଓ ସତ୍ୟଭାମାଙ୍କ ଗୋଡ଼ ଉପରେ ଗୋଡ଼ ଦେଇ ବସିଛନ୍ତି । କଥାବାର୍ତ୍ତା ନୂଆ କିଛି ହେଲା ନାହିଁ । କୃଷ୍ଣ କେବଳ କିଛି ଦମ୍ଭର କଥା କହିଲେ, କହିଲେ ମୁଁ ଯେତେବେଳେ ସହାୟ, ସେତେବେଳେ ଅର୍ଜୁନ ସମସ୍ତଙ୍କୁ ମାରି ପକାଇବ ।

ତାରପରେ ଅର୍ଜୁନ କଣ କହିଲେ, ସେ କଥା ଏଠାରେ କିଛି ନାହିଁ, ଅଥଚ ଧୃତରାଷ୍ଟ୍ର ତାହା ଶୁଣିବାକୁ ଚାହିଁଥିଲେ ।

ଅଷ୍ଟପଞ୍ଚାଶତ୍ତମ ଅଧ୍ୟାୟର ଶେଷରେ ଅଛି, "ଅନନ୍ତର ମହାବୀର କର୍ଣ୍ଣ ତାଙ୍କ (କୃଷ୍ଣଙ୍କ) ବାକ୍ୟ ସବୁ ଶୁଣି ଲୋମହର୍ଷଣ ବଚନ ପ୍ରୟୋଗ କରିବାକୁ ଲାଗିଲେ," ଏଇ କଥାରେ ପାଠକଙ୍କର ଏପରି ମନେ ହେବ ଯେ, ବୋଧହୁଏ ଊନଷଷ୍ଟିତମ ଅଧ୍ୟାୟରେ ଅର୍ଜୁନ ଯାହା କହିଥିଲେ, ତାହା କଥିତ ହୋଇଅଛି । ସେ ବାଗ ତେଇ ଊନଷଷ୍ଟିତମ ଅଧ୍ୟାୟ ଯାଇ ନାହିଁ । ଊନଷଷ୍ଟିତମ ଅଧ୍ୟାୟରେ ଧୃତରାଷ୍ଟ୍ର ଦୁର୍ଯ୍ୟୋଧନଙ୍କୁ କହି ଅନୁଯୋଗ କରି ସନ୍ଧି ସ୍ଥାପନ କରିବାକୁ କହିଲେ । ଷଷ୍ଟିତମ ଅଧ୍ୟାୟରେ ଦୁର୍ଯ୍ୟୋଧନ ପ୍ରତ୍ୟୁତ୍ତରରେ ବାପକୁ କେତେ କଡ଼ା କଡ଼ା କଥା ଶୁଣାଇ ଦେଲେ । ଏକଷଷ୍ଟିତମ ଅଧ୍ୟାୟରେ କର୍ଣ୍ଣ ଆସି ମଝିରେ ପଡ଼ି ବକ୍ତୃତା କଲେ । ଭୀଷ୍ମ ତାଙ୍କୁ ଉତ୍ତମ ମଧ୍ୟମ ରକମ ଶୁଣାଇଲେ । କର୍ଣ୍ଣ ଭୀଷ୍ମଙ୍କ ମଧ୍ୟରେ ଲାଗିଗଲା । ଦ୍ୱିଷଷ୍ଟିତମରେ ଦୁର୍ଯ୍ୟୋଧନ ଭୀଷ୍ମଙ୍କ ମଧ୍ୟରେ ଲାଗିଲା । ତ୍ରିଷଷ୍ଟିତମରେ ଭୀଷ୍ମଙ୍କ ବକ୍ତୃତା । ଚତୁଃଷଷ୍ଟିତମରେ ବାପ ପୁଅଙ୍କ ଭିତରେ ପୁଣି ଲାଗିଲା । ପରେ ଏତେ କାଳ ପରେ ପୁଣି ଧୃତରାଷ୍ଟ୍ର ହଠାତ୍ ପଚାରିଲେ ଯେ, ଅର୍ଜୁନ କଣ କହିଲେ ? ସେତେବେଳେ ସଞ୍ଜୟ ସେଇ ଅଷ୍ଟପଞ୍ଚାଶତ୍ତମ ଅଧ୍ୟାୟର ଛିନ୍ନ ସୂତ୍ର ଯୋଡ଼ା ଦେଇ ଅର୍ଜୁନବାକ୍ୟ କହିବାକୁ ଲାଗିଲେ । ବୋଧହୁଏ, କୌଣସି ପାଠକଙ୍କର ବର୍ତ୍ତମାନ ସଂଶୟ ନାହିଁ ଯେ, ୫୯ । ୬୦ । ୬୧ । ୬୨।୬୩। ୬୪ ଅଧ୍ୟାୟ ଗୁଡ଼ିକ ପ୍ରକ୍ଷିପ୍ତ । ଏହି କେତେ ଅଧ୍ୟାୟରେ ମହାଭାରତର କିଛି ଏକ ପଦମଧ୍ୟ ଅଗ୍ରସର ହୋଇ ନାହିଁ । ଏହି ଅଧ୍ୟାୟ ଗୁଡ଼ିକ ବଡ଼ ସ୍ପଷ୍ଟତଃ ପ୍ରକ୍ଷିପ୍ତବୋଲି ଏହାର ଉଲ୍ଲେଖ କଲି,

ଯେଉଁ ସବୁ କାରଣରୁ ଏହି ଛ ଅଧ୍ୟାୟକୁ ପ୍ରକ୍ଷିପ୍ତ ବୋଲି କୁହା ଯାଏ, ଅଷ୍ଟପଞ୍ଚାଶତ୍ତମ ଅଧ୍ୟାୟକୁ ମଧ୍ୟ ସେହି

କାରଣରୁ ପ୍ରକ୍ଷିପ୍ତ କୁହା ଯାଇ ପାରେ—ପରବର୍ତ୍ତୀ ଏକ୍ଟି ଅଧ୍ୟାୟ ଗୃଢ଼କ ପ୍ରକ୍ଷିପ୍ତ ଉପରେ ପ୍ରକ୍ଷିପ୍ତ। ଅଷ୍ଟମପଞ୍ଚାଶତ୍ତମ ଅଧ୍ୟାୟ ସମ୍ବନ୍ଧରେ ଆଉ ମଧ୍ୟ କୁହା ଯାଇ ପାରେ। ଏହା ଯେ କେବଳ ଅପ୍ରାସଙ୍ଗିକ ଏବଂ ଅସଲଗ୍ନ ଏପରି ନୁହେ, ପୂର୍ବୋକ୍ତ କୃଷ୍ଣ-ବାକ୍ୟରେ ସମ୍ପୂର୍ଣ୍ଣ ବିରୋଧୀ। ଏହି ସବୁ ବୃତ୍ତାନ୍ତର କିଛି ମାତ୍ର ପ୍ରସଙ୍ଗ ଅନୁକ୍ରମଣିକାଧ୍ୟାୟରେ ବା ପର୍ବସଂଗ୍ରହାଧ୍ୟାୟରେ ନାହିଁ। ବୋଧ ହୁଏ, କୌଣସି ରସିକ ଲେଖକ, ଅସୁରନିପାତନ ଶୌରି ଏବଂ ସୁରନିପାତିନୀ ସୁରା, ଉଭୟଙ୍କରି ଉକ୍ତ; ଏକତ୍ର ଉଭୟ ଉପାସ୍ୟଙ୍କୁ ଦେଖିବା ନିମିତ୍ତ ଅଷ୍ଟପଞ୍ଚାଶତ୍ତମ ଅଧ୍ୟାୟଟି ପ୍ରକ୍ଷିପ୍ତ କରିଛନ୍ତି।

ଯାନସନ୍ଧି—ପର୍ବାଧ୍ୟାୟରେ ଏହା କେବଳ କୃଷ୍ଣ ସମ୍ବନ୍ଧୀୟ ପ୍ରଥମ ପ୍ରସଙ୍ଗ। ଦ୍ୱିତୀୟ ପ୍ରସଙ୍ଗ, ସପ୍ତଷଷ୍ଟିତମରୁ ସପ୍ତତିତମ ପର୍ଯ୍ୟନ୍ତ ଚାରି ଅଧ୍ୟାୟ। ଏଠାରେ ସଞ୍ଜୟ ଧୃତରାଷ୍ଟ୍ରଙ୍କ ପରିଚର୍ବା ଅନୁଯାୟୀ କୃଷ୍ଣଙ୍କ ମହିମା କୀର୍ତ୍ତନ କରୁଛନ୍ତି। ସଞ୍ଜୟ ଏଠାରେ ପୂର୍ବେ ଯାହାଙ୍କୁ ମଦ୍ୟପାନରେ ଉନ୍ମତ୍ତ ବୋଲି ବର୍ଣ୍ଣନା କରିଥିଲେ, ବର୍ତ୍ତମାନ ତାହାଙ୍କୁଇ ଜଗଦୀଶ୍ୱର ବୋଲି ବର୍ଣ୍ଣନା କରୁଛନ୍ତି। ବୋଧ ହୁଏ, ଏହା ମଧ୍ୟ ପ୍ରକ୍ଷିପ୍ତ। ପ୍ରକ୍ଷିପ୍ତ ହେଉ ବା ନ ହେଉ ଏଥିରେ ଆମର କିଛି ପ୍ରୟୋଜନ ନାହିଁ, ଯଦି ଅନ୍ୟ କାରଣରୁ କୃଷ୍ଣଙ୍କ ଈଶ୍ୱରତ୍ୱରେ ଆମର ବିଶ୍ୱାସ ଥାଏ, ତେବେ ସଞ୍ଜୟ ବାକ୍ୟରେ ଆମର ପ୍ରୟୋଜନ କଣ? ଆଉ ଯଦି ସେ ବିଶ୍ୱାସ ନ ଥାଏ, ତେବେ ସଞ୍ଜୟବାକ୍ୟରେ ଏପରି କିଛି ନାହିଁ ଯେ, ତାହା ବଳରେ ଆମର ବିଶ୍ୱାସ ହୋଇ ପାରେ। ଅତଏବ ସଞ୍ଜୟବାକ୍ୟର ସମାଲୋଚନା ଆମର ନିଷ୍ପ୍ରୟୋଜନୀୟ କୃଷ୍ଣଙ୍କ ମନୁଷ୍ୟ-ଚରିତ୍ରର କୌଣସି ହେଲେ କଥା

ଆମେ ସେଥିରେ ପାଉ ନାହିଁ । ତାହାହିଁ ଆମର ସମାଲୋଚ୍ୟ ।

ଏହିଠାରେ ଯାନସନ୍ଧି – ପର୍ବାଧ୍ୟାୟ ସମାପ୍ତ ହେଲା ।

## ଚତୁର୍ଥ ପରିଚ୍ଛେଦ

## ଶ୍ରୀକୃଷ୍ଣଙ୍କ ହସ୍ତିନା—ଯାତ୍ରାର ପ୍ରସ୍ତାବ ।

ଶ୍ରୀକୃଷ୍ଣ, ପୂର୍ବକୃତ ଅଙ୍ଗୀକାରାନୁସାରେ ସନ୍ଧି ସ୍ଥାପନାର୍ଥ କୌରବମାନଙ୍କ ନିକଟକୁ ଯିବାକୁ ପ୍ରସ୍ତୁତ ହେଲେ । ଗମନକାଳରେ ପାଣ୍ଡବମାନେ ଓ ଦ୍ରୌପଦୀ, ସମସ୍ତେ ତାଙ୍କୁ କିଛି କିଛି କହିଲେ । ଶ୍ରୀକୃଷ୍ଣ ମଧ୍ୟ ସେମାନଙ୍କ କଥାର ଉତ୍ତର ଦେଲେ । ଏହି ସବୁ କଥୋପକଥନ ଅବଶ୍ୟ ଐତିହାସିକ ବୋଲି ଗ୍ରହଣ କରି ଯାଏ ନାହିଁ । ତେବେ କବି ଏ ଇତିହାସବେତ୍ତା ଯେଉଁ ସବୁ କଥା କୃଷ୍ଣଙ୍କ ମୁହଁରେ ବସାଇଛନ୍ତି, ତହିଁରୁ ବୁଝା ଯାଏ ଯେ, କୃଷ୍ଣଙ୍କ କିରୂପ ପରିଚୟ ସେ ଅବଗତ ଥିଲେ । ସେହି ସବୁ ବକ୍ତୃତାରୁ ଆମେ କିଛି କିଛି ଉଦ୍ଧୃତ କରିବା ।

ଯୁଧିଷ୍ଠିରଙ୍କ କଥାର ଉତ୍ତରରେ କୃଷ୍ଣ ଏକ ସ୍ଥାନରେ କହୁଛନ୍ତି, "ହେ ମହାରାଜ, ବ୍ରହ୍ମଚର୍ଯ୍ୟାଦି କ୍ଷତ୍ରିୟ ପକ୍ଷରେ ବିଧେୟ ନୁହେଁ । ସମୁଦାୟ ଆଶ୍ରମୀମାନେ କ୍ଷତ୍ରିୟର ଭୈକ୍ଷାଚରଣ ନିଷେଧ କରି ଥାନ୍ତି । ବିଧାତା ସଂଗ୍ରାମରେ ଜୟଲାଭ ବା ପ୍ରାଣପରିତ୍ୟାଗ କ୍ଷତ୍ରିୟର ନିତ୍ୟଧର୍ମ ବୋଲି ନିର୍ଦ୍ଦେଶ କରିଛନ୍ତି ; ଅତଏବ ଦୀନତା କ୍ଷତ୍ରିୟ ପକ୍ଷରେ ନିତାନ୍ତ ନିନ୍ଦନୀୟ । ହେ ଅରାତିନିପାତନ ଯୁଧିଷ୍ଠିର ! ଆପଣ ଦୀନତା ଅବଲମ୍ବନ କଲେ, କେବେହେଁ ସ୍ୱୀୟ ଅଂଶ ଲାଭ କରି ପାରିବେ ନାହିଁ । ଅତଏବ ବିକ୍ରମ ପ୍ରକାଶ କରି ଶତ୍ରୁମାନଙ୍କୁ ବିନାଶ କରନ୍ତୁ ।"

ଗୀତାରେ ମଧ୍ୟ କୃଷ୍ଣ ଅର୍ଜ୍ଜୁନଙ୍କୁ ଏହିପରି କଥା କହିବାର ଦେଖା ଯାଏ । ଏଥିରୁ ଯେଉଁ ସିଦ୍ଧାନ୍ତରେ ଉପସ୍ଥିତ ହେବାକୁ ହୁଏ, ତାହା ପୂର୍ବେ ବୁଝାଇ ଦିଆ ହୋଇଅଛି । ପୁନଶ୍ଚ ଭୀମଙ୍କ କଥାର ଉତ୍ତରରେ କହୁଛନ୍ତି, "ମନୁଷ୍ୟ ପୁରୁଷକାର ପରିତ୍ୟାଗପୂର୍ବକ କେବଳ ଦୈବ ବା ଦୈବ ପରିତ୍ୟାଗପୂର୍ବକ କେବଳ ପୁରୁଷକାର ଅବଲମ୍ବନ କରି ଜୀବନ ଧାରଣ କରି ପାରେ ନାହିଁ । ଯେଉଁ ବ୍ୟକ୍ତି ଏହିରୂପ କୃତନିଶ୍ଚୟ ହୋଇ କର୍ମ୍ମରେ ପ୍ରବୃତ୍ତ ହୁଏ, ସେ କର୍ମ୍ମ ସିଦ୍ଧ ନହେଲେ ବ୍ୟଥିତ ବା କର୍ମ୍ମ ସିଦ୍ଧ ହେଲେ ସନ୍ତୁଷ୍ଟ ହୁଏ ନାହିଁ ।" ଗୀତାରେ ମଧ୍ୟ ଏହିରୂପ ଉକ୍ତି ଅଛି । *ଅର୍ଜ୍ଜୁନଙ୍କ କଥାର ଉତ୍ତରରେ କୃଷ୍ଣ କହୁଛନ୍ତି,

"ଉର୍ବର କ୍ଷେତ୍ରରେ ଯଥାନିୟମ ହଳକର୍ଷଣ ବୀଜବପନାଦି କଲେ ମଧ୍ୟ ବର୍ଷା ବ୍ୟତୀତ କେବେହେଁ ଫଳୋତ୍ପତ୍ତି ହୁଏ ନାହିଁ । ପୁରୁଷ ଯଦି ପୁରୁଷକାର ସହକାରେ ସେଥିରେ ଜଳସେଚନ କରେ, ତଥାପି ଦୈବ ପ୍ରଭାବରେ ତାହା ଶୁଷ୍କ ହୋଇ ପାରେ । ଅତଏବ ପ୍ରାଚୀନ ମହାତ୍ମାମାନେ ଦୈବ ଓ ପୁରୁଷକାର ଉଭୟ ଏକତ୍ର ମିଳିତ ନ ହେଲେ କାର୍ଯ୍ୟସିଦ୍ଧି ହୁଏ ନାହିଁ ବୋଲି ସ୍ଥିର କରିଛନ୍ତି । ମୁଁ ଯଥାସାଧ୍ୟ ପୁରୁଷକାର ପ୍ରକାଶ କରି ପାରେ ; କିନ୍ତୁ ଦୈବ କର୍ମ୍ମର ଅନୁଷ୍ଠାନରେ ମୋର କିଛିମାତ୍ର କ୍ଷମତା ନାହିଁ ।"

ଏ କଥାର ଉଲ୍ଲେଖ ଆମେ ପୂର୍ବେ କରିଅଛୁଁ । କୃଷ୍ଣ ଏଠାରେ ଦେବତ୍ୱ ଏକବାରେ ଅସ୍ୱୀକାର କଲେ, କାରଣ ସେ ମାନୁଷୀ ଶକ୍ତି ଦ୍ୱାରା କର୍ମ୍ମ ସାଧନରେ ପ୍ରବୃତ୍ତ । ଐଶୀ ଶକ୍ତି ଦ୍ୱାରା କର୍ମ୍ମ

---

*ସିଦ୍ଧାସିଦ୍ଧ୍ୟୋଃ ସମୋ ଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ ॥ ୨। ୪୮

ସାଧନ ଈଶ୍ବରଙ୍କ ଅଭିପ୍ରେତ ହେଲେ, ଅବତାରର କୌଣସି ପ୍ରୟୋଜନ ନଥାଏ ।

ଅନାନ୍ୟ ବକ୍ତାଙ୍କ କଥା ସମାପ୍ତ ହେଲେ, ଦ୍ରୌପଦୀ କୃଷ୍ଣଙ୍କୁ କିଛି କହିଥିଲେ । ତାଙ୍କ ବକ୍ତୃତାରେ ଏପରି ଗୋଟାଏ କଥା ଅଛି ଯେ, ସ୍ତ୍ରୀଲୋକ ମୁଖରେ ତାହା ଅତି ବିସ୍ମୟକର ସେ କହିଲେ—"ଅବୋଧ୍ୟ ବ୍ୟକ୍ତିକୁ ବଧ କଲେ ଯେଉଁ ପାପ ହୁଏ, ବଧ୍ୟ ବ୍ୟକ୍ତିକୁ ବଧ ନ କଲେ ମଧ୍ୟ ସେହି ପାପ ହୋଇ ଥାଏ ।"

ଏହି ଉକ୍ତି ସ୍ତ୍ରୀଲୋକ ମୁଖରେ ବିସ୍ମୟକର ହେଲେ ସୁଦ୍ଧା ସ୍ବୀକାର କରିବାକୁ ହେବ ଯେ, ବନ୍ଧୁବର୍ଗ ପୂର୍ବେ ବଙ୍ଗଦର୍ଶନରେ ମୁଁ ଦ୍ରୌପଦୀଚରିତ୍ରର ଯେଉଁ ପରିଚୟ ଦେଇଥିଲି, ତାହା ସହିତ ଏହି ବାକ୍ୟର ଅତ୍ୟନ୍ତ ସୁସଙ୍ଗତି ଅଛି, ଆଉ ସ୍ତ୍ରୀଲୋକ ମୁଖରେ ଭଲ ଶୁଣା ଯାଉ ବା ନ ଯାଉ, ଏହା ଯେ ପ୍ରକୃତ ଧର୍ମ, ଏବଂ କୃଷ୍ଣର ବି ଯେ ଏହି ମତ, ଏହା ମଧ୍ୟ ଆମେ ଜରାସନ୍ଧବଧର ସମାଲୋଚନା ସମୟରେ ଓ ଅନ୍ୟ ସମୟରେ ବୁଝାଇ ଅଛୁଁ ।

ଦ୍ରୌପଦୀଙ୍କ ଏଇ ବକ୍ତୃତାର ଉପସଂହାର କାଳରେ ଏକ ଅପୂର୍ବ କବିତ୍ବ—କୌଶଳ ଅଛି । ତାହା ଉଦ୍ଧୃତ କରା ଯାଉ ଅଛି ।

"ଅସିତାପାଙ୍ଗୀ ଦ୍ରୁପଦନନ୍ଦିନୀ ଏହି କଥା ଶୁଣି କୁଟିଳାଗ୍ର, ପରମ ରମଣୀୟ, ସର୍ବଗନ୍ଧାଧିବାସିତ, ସର୍ବଲକ୍ଷଣସମ୍ପନ୍ନ, ମହାଭୁଜଗସଦୃଶ କେଶକଳାପ ଧାରଣ କରି ଅଶ୍ରୁପୂର୍ଣ୍ଣଲୋଚନରେ ଦୀନନୟନରେ ପୁନର୍ବାର କୃଷ୍ଣଙ୍କୁ କହିବାକୁ ଲାଗିଲେ, ହେ ଜନାର୍ଦ୍ଦନ ! ଦୁରାତ୍ମା ଦୁଃଶାସନ ମୋର ଏଇ କେଶ ଆକର୍ଷଣ

କରିଥିଲ । ଶତ୍ରୁଗଣ ସନ୍ଧିସ୍ଥାପନର ମତ ପ୍ରକାଶ କଲେ ତୁମେ ଏହି କେଶ କଳାପ ସ୍ମରଣ କରିବ । ଧନଞ୍ଜୟ ଅର୍ଜ୍ଜୁନ ଓ ଭୀମସେନ ଯଦି ସନ୍ଧି ସ୍ଥାପନରେ କୃତ ସଂକଳ୍ପ ହୋଇ ଅଛନ୍ତି, ସେଥିରେ ମୋର କିଛି ମାତ୍ର କ୍ଷତି ନାହିଁ, ମୋର ବୃଦ୍ଧପିତା ମହାରଥ ଧୃଷ୍ଟଦ୍ୟୁମ୍ନ ସମଭିବ୍ୟାହାରରେ ଶତ୍ରୁମାନଙ୍କ ସହିତ ସମର କରିବେ, ମୋର ମହାବଳ ପରାକ୍ରାନ୍ତ ପଞ୍ଚପୁତ୍ର ଅଭିମନ୍ୟୁଙ୍କୁ ପୁରସ୍କୃତ କରି କୌରବମାନଙ୍କୁ ସଂହାର କରିବେ । ହାୟ! ଦୁଃଶାସନର ଶ୍ୟାମଳ ବାହୁ ଛିନ୍ନ, ଧରାତଳେ ନିପତିତ ଓ ପାଂଶୁଲୁଣ୍ଠିତ ନ ଦେଖିଲେ ମୋର ଶାନ୍ତିଲାଭର ସମ୍ଭାବନା ନାହିଁ ? ମୁଁ ହୃଦୟ କ୍ଷେତ୍ରରେ ପ୍ରଦୀପ୍ତ ପାବକ ତୁଲ୍ୟ କ୍ରୋଧ ସ୍ଥାପନପୂର୍ବକ ତ୍ରୟୋଦଶ ବର୍ଷ ପ୍ରତୀକ୍ଷା କରିଅଛି, ବର୍ତ୍ତମାନ ସେହି ତ୍ରୟୋଦଶ ବର୍ଷ ଅତିକ୍ରାନ୍ତ ହୋଇଅଛି, ତଥାପି ତାହା ଉପଶମିତ ହେବାର କିଛିମାତ୍ର ଉପାୟ ଦେଖୁ ନାହିଁ; ଆଜ ପୁଣି ଧର୍ମ୍ମପ୍ରଥାମୂଳମ୍ବୀ ବୃକୋଦରଙ୍କ ବାକ୍ୟଶଲ୍ୟରେ ମୋର ହୃଦୟ ବିଦୀର୍ଣ୍ଣ ହେଉଅଛି ।

"ନିତମ୍ବନିଚିତାମ୍ବିନୀ ଆୟତଲୋଚନା କୃଷ୍ଣା ଏହି କଥା କହି ବାଷ୍ପଗଦ୍‌ଗଦ ସ୍ୱରରେ କମ୍ପିତ କଳେବରରେ କ୍ରନ୍ଦନ କରିବାକୁ ଲାଗିଲେ । ଦ୍ରବୀଭୂତହୁତାଶନ ନ୍ୟାୟ ଅତ୍ୟୁଷ୍ଣ ନେତ୍ର ଜଳରେ ତାଙ୍କ ସ୍ତନ ଯୁଗଳ ଅଭିଷିକ୍ତ ହେବାକୁ ଲାଗିଲା । ସେତେବେଳେ ମହାବାହୁ ବାସୁଦେବ ତାଙ୍କୁ ସାନ୍ତ୍ୱନା କରି କହିବାକୁ ଲାଗିଲେ, ହେ କୃଷ୍ଣେ ! ତୁମେ ଅତି ଅଳ୍ପ ଦିନ ମଧ୍ୟରେ କୌରବ ମହିଳା ଗଣଙ୍କୁ ରୋଦନ କରିବାର ଦେଖିବ । ତୁମେ ଯେପରି ରୋଦନ କରୁଅଛ, କୁରୁକୁଳ କାମିନୀ ମାନେ ମଧ୍ୟ ସେମାନଙ୍କ ଜ୍ଞାତି ବାନ୍ଧବଗଣ ନିହତ ହେଲେ ଏଇରୂପ ରୋଦନ କରିବେ । ମୁଁ ଯୁଧିଷ୍ଠିରଙ୍କ ନିୟୋଗାନୁସାରେ ଅର୍ଜ୍ଜୁନ ନକୁଳ ସହଦେବ ସମଭିବ୍ୟାହାରରେ

କୌରବମାନଙ୍କ ବଧ ସାଧନରେ ପ୍ରବୃତ୍ତ ହେବ । ଧୃତରାଷ୍ଟ୍ରତନୟ-ମାନେ କାଳପ୍ରେରିତ ପରି ମୋର ବାକ୍ୟରେ ଅନାଦର ପ୍ରକାଶ କଲେ ଅଚିରାତ୍ ନିହତ ଓ ଶୃଗାଳ କୁକ୍କୁରର ଭକ୍ଷ୍ୟ ହୋଇ ଧରା-ତଳରେ ଶୟନ କରିବେ । ଯଦ୍ୟପି ହିମବାନ୍ ପ୍ରଚଳିତ, ମେଦିନୀ ଉତ୍-କ୍ଷିପ୍ତ ଓ ଆକାଶମଣ୍ଡଳ ନକ୍ଷତ୍ର ସମୂହସହିତ ନିପତିତ ହୁଏ, ତଥାପି ମୋର ବାକ୍ୟ ମିଥ୍ୟା ହେବ ନାହିଁ । ହେ କୃଷ୍ଣେ ! ବାଷ୍ପ ସମ୍ବରଣ କର, ମୁଁ ତୁମକୁ ଯଥାର୍ଥ କହୁଅଛି ତୁମେ ଅଚିରକାଳ ମଧ୍ୟରେ ସ୍ୱୀୟ ପତିମାନଙ୍କୁ ଶତ୍ରୁ ସଂହାର କରି ରାଜ୍ୟଲାଭ କରିବାର ଦେଖିବ ।”

ଏହି ଉକ୍ତି ଶୋଣିତପିପାସୁର ହିଂସା ପ୍ରବୃତ୍ତିଜନିତ ବା ସ୍ୱାର୍ଥର କ୍ରୋଧାଭିବ୍ୟକ୍ତି ନୁହେଁ । ସେ ସର୍ବତ୍ରଗାମୀ ସର୍ବକାଳବ୍ୟାପୀ ବୁଦ୍ଧିର ପ୍ରଭାବରେ, ଭବିଷ୍ୟତରେ ଯାହା ହେବ, ତାହା ସ୍ପଷ୍ଟ ଦେଖିବାକୁ ପାଉଥିଲେ, ତାଙ୍କର ଭବିଷ୍ୟଦୁକ୍ତି ମାତ୍ର । କୃଷ୍ଣ ବିଲକ୍ଷଣ ଜାଣୁଥିଲେ ଯେ, ଦୁର୍ଯୋଧନ ରାଜ୍ୟାଂଶ ପ୍ରତ୍ୟର୍ପଣ ପୂର୍ବକ ସନ୍ଧି ସ୍ଥାପନ କରିବାକୁ କଦାପି ସମ୍ମତ ହେବେ ନାହିଁ । ଏହା ଜାଣି ସୁଦ୍ଧା ଯେ ସେ ସନ୍ଧିସ୍ଥାପନାର୍ଥ କୌରବ ସଭାକୁ ଯିବା ନିମିତ୍ତ ଉଦ୍ୟୋଗୀ, ତାହାର କାରଣ ଏହି ଯେ, ଯାହା ଅନୁଷ୍ଠେୟ, ତାହା ସିଦ୍ଧ ହେଉ ବା ନ ହେଉ, କରିବାକୁ ହେବ । ସିଦ୍ଧ ଓ ଅସିଦ୍ଧି ତୁଲ୍ୟ ଜ୍ଞାନ କରିବାକୁ ହେବ । ଏହାହିଁ ତାଙ୍କ ମୁଖନିର୍ଗତ ଗୀତୋକ୍ତ ଅମୃତମୟ ଧର୍ମ ।

ସେ ନିଜେ ମଧ୍ୟ ଅର୍ଜ୍ଜୁନଙ୍କୁ ଶିଖାଇଛନ୍ତି ଯେ,

“ସିଦ୍ଧ୍ୟସିଦ୍ଧ୍ୟୋଃସମୋ ଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ ।”

ସେହି ମତର ବଶବର୍ତ୍ତୀ ହୋଇ, ଆଦର୍ଶଯୋଗୀ,

ଭବିଷ୍ୟତ୍ ଜାଣି ମୃଢା ସନ୍ଧିସ୍ଥାପନର ଚେଷ୍ଟାରେ କୌରବ ସଭାକୁ ଯାଇଥିଲେ ,

## ପଞ୍ଚମ ପରିଚ୍ଛେଦ

### ଯାତ୍ରା

ଯାତ୍ରାକାଳରେ ଶ୍ରୀକୃଷ୍ଣଙ୍କର ସମସ୍ତ ବ୍ୟବହାର ଥିଲା ସମୟୋପଯୋଗୀ ଏବଂ କାଳୋଚିତ । "ସେ ରେବତୀ ନକ୍ଷତ୍ରଯୁକ୍ତ କାର୍ତ୍ତିକମାସୀୟ ଦିନଟିର ମୈତ୍ର ମୁହୂର୍ତ୍ତରେ କୌରବ ସଭାକୁ ଗମନ କରିବା ବାସନାରେ ସୁବିଶ୍ୱସ୍ତ ବ୍ରାହ୍ମଣ ଗଣଙ୍କ ମାଙ୍ଗଲ୍ୟ ପୁଣ୍ୟନିର୍ଘୋଷ ଶ୍ରବଣ ଓ ପ୍ରାତଃକୃତ୍ୟ ସମାପନ ପୂର୍ବକ ସ୍ନାନ ଓ ବସନଭୂଷଣ ପରିଧାନ କରି ସୂର୍ଯ୍ୟ ଓ ବହ୍ନିର ଉପାସନା କଲେ; ଏବଂ ବୃଷଲାଙ୍ଗୁଳ ଦର୍ଶନ, ବ୍ରାହ୍ମଣମାନଙ୍କୁ ଅଭିବାଦନ, ଅଗ୍ନି ପ୍ରଦକ୍ଷିଣ ଓ କଲ୍ୟାଣକର ଦ୍ରବ୍ୟ ସବୁ ସନ୍ଦର୍ଶନ ପୂର୍ବକ" ଯାତ୍ରା କଲେ ।

ଶ୍ରୀକୃଷ୍ଣ ଗୀତାରେ ଯେଉଁ ଧର୍ମ ପ୍ରଚାର କରିଅଛନ୍ତି, ତହିଁରେ ତତ୍କାଳରେ ପ୍ରଚଳିତ ପ୍ରବଳ କାମ୍ୟକର୍ମ ପରାୟଣ ଯେ ବୈଦିକ ଧର୍ମ, ତାହାର ନିନ୍ଦାବାଦ ଅଛି, କିନ୍ତୁ ତାହା ବୋଲି ସେ ବେଦପରାୟଣ ବ୍ରାହ୍ମଣମାନଙ୍କୁ କଦାପି ଅବମାନନା କରୁ ନ ଥିଲେ । ସେ ଆଦର୍ଶ ମନୁଷ୍ୟ, ଏଥି ପାଇଁ ତତ୍କାଳରେ ବ୍ରାହ୍ମଣମାନଙ୍କ ପ୍ରତି ଯେଉଁ ବ୍ୟବହାର ଉଚିତ ଥିଲା, ସେ ତାହା କରୁ ଥିଲେ । ସେ ସମୟରେ ବ୍ରାହ୍ମଣମାନେ ବିଦ୍ୱାନ, ଜ୍ଞାନବାନ, ଧର୍ମାତ୍ମା, ଏବଂ ଅସ୍ୱାର୍ଥପର ହୋଇ ସମାଜର ମଙ୍ଗଳସାଧନରେ ନିରତ ଥିଲେ, ଏଣୁ ଅନ୍ୟ ବର୍ଣ୍ଣ ନିକଟରୁ ପୂଜା ତାଙ୍କର ନ୍ୟାଯ୍ୟ ପ୍ରାପ୍ୟ । କୃଷ୍ଣ ମଧ୍ୟ ସେଥି ପାଇଁ ସେମାନଙ୍କୁ

ଉପଯୁକ୍ତ ରୂପେ ପୂଜା କରୁଥିଲେ । ଉଦାହରଣସ୍ୱରୂପ ପଥମଧ୍ୟରେ ଋଷିମାନଙ୍କ ସମାଗମର ବର୍ଣ୍ଣନା ଉଦ୍ଧୃତ କରୁଅଛୁ ।

"ମହାବାହୁ କେଶବ ଏହିରୂପେ କିୟଦ୍ଦୂର ଗମନ କରି ପଥର ଉଭୟ ପାର୍ଶ୍ୱରେ ବ୍ରହ୍ମତେଜରେ ଜାଜ୍ୱଲ୍ୟମାନ କତିପୟ ମହର୍ଷିଙ୍କୁ ସନ୍ଦର୍ଶନ କଲେ, ସେ ସେମାନଙ୍କୁ ଦେଖିବାମାତ୍ର ଅତିମାତ୍ର ବ୍ୟଗ୍ରତା ସହକାରେ ରଥରୁ ଅବତୀର୍ଣ୍ଣ ହୋଇ ଅଭିବାଦନପୂର୍ବକ ପଚାରିଲେ, ହେ ମହର୍ଷିଗଣ ! ସମୁଦାୟ ଲୋକର କୁଶଳତ ? ଧର୍ମ ଉତ୍ତମରୂପେ ଅନୁଷ୍ଠିତ ହେଉଅଛି ? କ୍ଷତ୍ରିୟାଦି ବର୍ଣ୍ଣତ୍ରୟ ବ୍ରାହ୍ମଣମାନଙ୍କ ଶାସନରେ ଅବସ୍ଥାନ କରୁଛନ୍ତି ? ଆପଣମାନେ କେଉଁଠାରେ ସିଦ୍ଧ ହୋଇଛନ୍ତି ? କେଉଁଠାକୁ ଯିବାକୁ ବାସନା କରୁଛନ୍ତି ? ଆପଣମାନଙ୍କର ପ୍ରୟୋଜନ କଣ ? ମତେ ଆପଣମାନଙ୍କର କୌଣସି କାର୍ଯ୍ୟ ଅନୁଷ୍ଠାନ କରିବାକୁ ହେବ ? ଏବଂ ଆପଣମାନେ କି ନିମିତ୍ତ ଧରଣୀତଳରେ ଅବତୀର୍ଣ୍ଣ ହୋଇ ଅଛନ୍ତି ?

"ସେତେବେଳେ ମହାଭାଗ ଜାମଦଗ୍ନ୍ୟ କୃଷ୍ଣଙ୍କୁ ଆଲିଙ୍ଗନ କରି କହିଲେ, ହେ ମଧୁସୂଦନ ! ଆମ୍ଭମାନଙ୍କ ମଧ୍ୟରେ କେହି କେହି ଦେବର୍ଷି, କେହି କେହି ବହୁଶ୍ରୁତ ବ୍ରାହ୍ମଣ, କେହି କେହି ରାଜର୍ଷି ଏବଂ କେହି କେହି ତପସ୍ୱୀ । ଆମେ ଅନେକବାର ଦେବାସୁରଙ୍କ ସମାଗମ ଦେଖିଅଛୁ; ବର୍ତ୍ତମାନ ସମୁଦାୟ କ୍ଷତ୍ରିୟ, ସଭାସଦ ଭୂପତି ଓ ଆପଣଙ୍କୁ ଅବଲୋକନ କରିବା ବାସନାରେ ଯାଉଅଛୁ । ଆମେ କୌରବସଭା ମଧ୍ୟରେ ଆପଣଙ୍କ ମୁଖବିନିର୍ଗତ ଧର୍ମାର୍ଥଯୁକ୍ତ ବାକ୍ୟ ଶ୍ରବଣ କରିବାକୁ ଅଭିଳାଷୀ ହୋଇଅଛୁଁ । ହେ ଯାଦବ ଶ୍ରେଷ୍ଠ ! ଭୀଷ୍ମ, ଦ୍ରୋଣ, ବିଦୁର ପ୍ରଭୃତି ମହାତ୍ମାଗଣ ଏବଂ ଆପଣ ଯେଉଁ ସତ୍ୟ ଓ

ହିତକର ବାକ୍ୟ କହିବେ, ଆମ୍ଭେମାନେ ସେହି ସକଳ ବାକ୍ୟ ଶ୍ରବଣ କରିବାକୁ ନିତାନ୍ତ କୌତୂହଳାକ୍ରାନ୍ତ ହୋଇଅଛୁଁ ।

"ବର୍ତ୍ତମାନ ଆପଣ ସତ୍ୱର କୁରୁରାଜ୍ୟକୁ ଗମନ କରନ୍ତୁ ; ଆମ୍ଭେମାନେ ସେଠାରେ ଆପଣଙ୍କୁ ସଭାମଣ୍ଡପରେ ଦିବ୍ୟ ଆସନରେ ଆସୀନ ଓ ତେଜଃପ୍ରଦୀପ୍ତ ଦେଖି ପୁନରାୟ ଆପଣଙ୍କ ସହିତ କଥୋପକଥନ କରିବୁ ।"

ଏଠାରେ ଏହାମଧ୍ୟ ବକ୍ତବ୍ୟ ଯେ, ଏହି ଜାମଦଗ୍ନ୍ୟ ପରଶୁରାମ କୃଷ୍ଣଙ୍କ ସମସାମୟିକ ବୋଲି ବର୍ଣ୍ଣିତ ହୋଇ ଅଛନ୍ତି । ରାମାୟଣରେ ପୁଣି ସେ ରାମଚନ୍ଦ୍ରଙ୍କ ସମସାମୟିକ ବୋଲି ବର୍ଣ୍ଣିତ ହୋଇଛନ୍ତି । ଅଥଚ ପୁରାଣରେ ସେ ରାମ କୃଷ୍ଣ ଉଭୟଙ୍କର ପୂର୍ବଗାମୀ ବିଷ୍ଣୁଙ୍କର ଅବତାରଙ୍କର ବୋଲି ଖ୍ୟାତ । ପୁରାଣର ଦଶାବତାରବାଦ କେତଦୂର ସଙ୍ଗତ, ତାହା ଆମ୍ଭେ ଗ୍ରନ୍ଥାନ୍ତରରେ ବିଚାର କରିବୁ ।

ଏହି ହସ୍ତିନାଯାତ୍ରା ବର୍ଣ୍ଣନାରେ ଜଣା ଯାଏ ଯେ, କୃଷ୍ଣ ନିଜେ ବି ସାଧାରଣ ପ୍ରଜାଙ୍କନିକଟରେ ମଧ୍ୟ ପୂଜ୍ୟ ଥିଲେ । ହସ୍ତିନାଯାତ୍ରାର ବର୍ଣ୍ଣନା ଆହୁରି କିଛି ଉଦ୍ଧୃତ କଲି । "ଦେବକୀନନ୍ଦନ ସର୍ବଶସ୍ୟପରିପୂର୍ଣ୍ଣ ଅତି ରମ୍ୟ ସୁଖପ୍ରଦ ପରମ ପବିତ୍ରଶାଳିଭବନ ଏବଂ ଅତି ମନୋହର ଓ ହୃଦୟ-ତୋଷଣ ବହୁବିଧ ଗ୍ରାମ୍ୟପଶୁ ସନ୍ଦର୍ଶନ କରି ବିବିଧ ପୁର ଓ ରାଜ୍ୟ ଅତିକ୍ରମ କଲେ । କୁରୁକୁଳ ସୁରକ୍ଷିତ ନିତ୍ୟପ୍ରହୃଷ୍ଟ ଅନୁଦ୍‌ବିଗ୍ନ ବ୍ୟସନରହିତ ପୁରବାସୀଗଣ କୃଷ୍ଣଙ୍କୁ ଦର୍ଶନ କରିବା ମାନସରେ ଉପପ୍ଳବ୍ୟ ନଗରରୁ ପଥମଧ୍ୟକୁ ଆଗମନ କରି ତାଙ୍କ ପଥ ପ୍ରତୀକ୍ଷା କରିବାକୁ ଲାଗିଲେ । କିୟତ୍‌କ୍ଷଣ ପରେ ମହାତ୍ମା

ବାସୁଦେବ ସମାଗତ ହେଲେ ସେମାନେ ବିଧାନାନୁସାରେ ତାଙ୍କ ପୂଜା କରିବାକୁ ଲାଗିଲେ ।

"ଏଣେ ଭଗବାନ ମରୀଚମାଳୀ ସ୍ୱୀୟ କିରଣଜାଳ ପରିତ୍ୟାଗ କରି ଲୋହିତ କଳେବର ଧାରଣ କଲେ, ଅବନ୍ତିନିପାତନ ମଧୁସୂଦନ ଭୂକସ୍ଥଳରେ ସମୁପସ୍ଥିତ ହୋଇ ସତ୍ୱରେ ରଥରୁ ଅବତରଣପୂର୍ବକ ଯଥାବିଧି ଶୌଚ ସମାପନାନ୍ତେ ରଥାଶ୍ୱମୋଚନର ଆଦେଶ କରି ସନ୍ଧ୍ୟାର ଉପାସନା କରିବାକୁ ଲାଗିଲେ । ଦାରୁକ କୃଷ୍ଣଙ୍କ ଆଜ୍ଞାନୁସାରେ ଅଶ୍ୱଗଣଙ୍କୁ ରଥରୁ ମୁକ୍ତ କରି ଶାସ୍ତ୍ରାନୁସାରେ ସେମାନଙ୍କର ପରିଚର୍ଯ୍ୟା ଓ ଦେହରୁ ସମୁଦାୟ ଯୋକ୍ତ୍ରାଦି ମୋଚନ କରି ସେମାନଙ୍କୁ ପରିତ୍ୟାଗ କଲେ । ମହାତ୍ମା ମଧୁସୂଦନ ସନ୍ଧ୍ୟା ସମାପନାନ୍ତେ ସ୍ୱୀୟ ସମଭିବ୍ୟାହାରୀ ଜନଗଣଙ୍କୁ କହିଲେ, ହେ ପରିଚାରକବର୍ଗ ! ଅଦ୍ୟ ଯୁଧିଷ୍ଠିରଙ୍କ କାର୍ଯ୍ୟାନୁରୋଧରେ ଏହି ସ୍ଥାନରେ ରଜନୀ ଅତିବାହିତ କରିବାକୁ ହେବ ! ତାହାଶୁଣି ପରିଚାରକଗଣ, ତାଙ୍କ ଅଭିପ୍ରାୟ ଅବଗତ ହୋଇ କ୍ଷଣକାଳମଧ୍ୟରେ ପଟମଣ୍ଡପ ନିର୍ମାଣ ଓ ବିବିଧ ସୁମିଷ୍ଟ ଅନ୍ନପାନ ପ୍ରସ୍ତୁତ କଲେ । ଅନନ୍ତର ସେହି ଗ୍ରାମସ୍ଥ ସ୍ୱଧର୍ମାବଲମ୍ବୀ ଆର୍ଯ୍ୟ କୁଳୀନ ବ୍ରାହ୍ମଣ ସମୁଦାୟ ଅରାତିକୁଳକାଳାନ୍ତକ ମହାତ୍ମା ହୃଷୀକେଶଙ୍କ ସମୀପକୁ ଆଗମନପୂର୍ବକ ବିଧାନାନୁସାରେ ତାଙ୍କୁ ପୂଜା ଓ ଆଶୀର୍ବାଦ କରି ସ୍ୱ ସ୍ୱ ଭବନକୁ ଆନୟନ କରିବାକୁ ବାସନା କଲେ । ଭଗବାନ ମଧୁସୂଦନ ସେମାନଙ୍କ ଅଭିପ୍ରାୟରେ ସମ୍ମତ ହେଲେ ଏବଂ ସେମାନଙ୍କୁ ଅର୍ଚ୍ଚନପୂର୍ବକ ସେମାନଙ୍କ ଭବନକୁ ଗମନ କରି ସେମାନଙ୍କ ସମଭିବ୍ୟାହାରରେ ପୁନର୍ବାର ସ୍ୱୀୟ ପଟମଣ୍ଡପକୁ ଆଗମନ କଲେ । ପରେ ସେହି ସମୁଦାୟ ବ୍ରାହ୍ମଣଗଣଙ୍କ ସମଭିବ୍ୟାହାରରେ ସୁମିଷ୍ଟ ଦ୍ରବ୍ୟଜାତ

ଭୋଜନ କରି ପରମ ସୁଖରେ ଯାମିନୀ ଯାପନ କଲେ ।"

ଏହା ନିତାନ୍ତ ମନୁଷ୍ୟ ଚରିତ, କିନ୍ତୁ ଆଦର୍ଶ ମନୁଷ୍ୟ ଚରିତ । ଦେଖା ଯାଉଅଛି ଯେ, ଦେବତା ବୋଲି କେହି ତାଙ୍କୁ ପୂଜା କରୁନାହାନ୍ତି, ଏପରି କଥା ନାହିଁ । ତେବେ ଶ୍ରେଷ୍ଠ ମନୁଷ୍ୟ ଯେରୂପ ପୂଜା ପାଇବାର ସମ୍ଭାବନା, ତାହାହିଁ ସେ ପାଉଛନ୍ତି, ଏବଂ ଆଦର୍ଶ ମନୁଷ୍ୟର ଲୋକଙ୍କ ସଙ୍ଗେ ଯେରୂପ ବ୍ୟବହାର କରିପିବା ସମ୍ଭବ, ସେ ତାହାହିଁ କରୁଛନ୍ତି ।

## ଷଷ୍ଠ ପରିଚ୍ଛେଦ

## ହସ୍ତିନାରେ ପ୍ରଥମ ଦିବସ

କୃଷ୍ଣ ଆସୁଛନ୍ତି ଶୁଣି, ବୃଦ୍ଧ ଧୃତରାଷ୍ଟ୍ର ତାଙ୍କ ଅଭ୍ୟର୍ଥନା ଓ ସମ୍ମାନ ନିମିତ୍ତ ବଡ଼ ବେଶୀ ରକମର ଉଦ୍ୟୋଗ ଆରମ୍ଭ କଲେ, ନାନାରତ୍ନସମାକୀର୍ଣ୍ଣ ସଭା ସବୁ ନିର୍ମାଣ କରାଇଲେ, ଏବଂ ତାଙ୍କୁ ଉପଢ଼ୌକନ ଦେବା ନିମିତ୍ତ ଅନେକ ହସ୍ତ୍ୟଶ୍ୱରଥ, ଦାସ, "ଅଜାତାପତ୍ୟ ଶତସଂଖ୍ୟକ ଦାସୀ," ମେଷ, ଅଶ୍ୱତରୀ, ମଣିମାଣିକ୍ୟ ଇତ୍ୟାଦି ସଂଗ୍ରହ କରିବାକୁ ଲାଗିଲେ,

ବିଦୁର ଦେଖି ଶୁଣି କହିଲେ, "ଭଲ ଭଲ । ତୁମେ ଯେପରି ଧାର୍ମିକ, ସେହିପରି ମଧ୍ୟ ବୁଦ୍ଧିମାନ । କିନ୍ତୁ ରତ୍ନାଦି ଦେଇ କୃଷ୍ଣଙ୍କୁ ଠକାଇ ପାରିବ ନାହିଁ । ସେ ଯେ ନିମିତ୍ତ ଆସୁଛନ୍ତି; ତାହା ସମ୍ପାଦନ କର; ତାହା ହେଲେ ସେ ସନ୍ତୁଷ୍ଟ ହେବେ – ଅର୍ଥପ୍ରଲୋଭିତ ହୋଇ ତୁମର ବଶ ହେବେ ନାହିଁ ।

ଧୃତରାଷ୍ଟ୍ର ଧୂର୍ତ୍ତ, ଏବଂ ବିଦୁର ସରଳ; ଦୁର୍ଯ୍ୟୋଧନ ଦୁଷ୍ଟ । ସେ କହିଲେ, "କୃଷ୍ଣ ପୂଜନୀୟ ସତ୍ୟ, କିନ୍ତୁ ତାଙ୍କର ପୂଜା କରି ହେବ ନାହିଁ । ଯୁଦ୍ଧତ ଛାଡ଼ିବି ନାହିଁ; ତେବେ ତାଙ୍କ ସମାଦରରେ କାମ କଣ ? ଲୋକେ ମନେ କରିବେ, ଆମେ ବା ଭୟରେ ତାଙ୍କ ଖୋସାମୋଦ କରୁଅଛୁଁ । ମୁଁ ତଦପେକ୍ଷା ସତ୍ ପରାମର୍ଶ ସ୍ଥିର କରିଛି । ଆମେ ତାଙ୍କୁ ବାନ୍ଧି ରଖିବୁ । ପାଣ୍ଡବମାନଙ୍କ ବଳ ବୁଦ୍ଧି କୃଷ୍ଣ, କୃଷ୍ଣ ଅଟକ ଥିଲେ ପାଣ୍ଡବମାନେ ମୋର ବଶୀଭୂତ ରହିବେ ।"

ଏ କଥା ଶୁଣି ଧୃତରାଷ୍ଟ୍ର ମଧ୍ୟ ପୁତ୍ରକୁ ତିରସ୍କାର କରିବାକୁ ବାଧ୍ୟ ହେଲେ । କାରଣ, କୃଷ୍ଣ ଦୂତ ହୋଇ ଆସିଛନ୍ତି । କୃଷ୍ଣଭକ୍ତ ଭୀଷ୍ମ ଦୁର୍ଯ୍ୟୋଧନକୁ କେତେଗୁଡ଼ାଏ କଟୂକ୍ତି କରି ସଭାରୁ ଉଠିଗଲେ ।

ନାଗରିକମାନେ, ଏବଂ କୌରବମାନେ ବହୁ ସମ୍ମାନର ସହିତ କୃଷ୍ଣଙ୍କୁ କୁରୁସଭାକୁ ଆନୀତ କଲେ । ତାଙ୍କ ନିମିତ୍ତ ଯେଉଁ ସବୁ ସଭା ନିର୍ମିତ ଓ ରତ୍ନଜାତ ରକ୍ଷିତ ହୋଇଥିଲା, ସେ ତତ୍ପ୍ରତି ଦୃଷ୍ଟିପାତ ସୁଦ୍ଧା କଲେ ନାହିଁ । ସେ ଧୃତରାଷ୍ଟ୍ର ଭବନକୁ ଗମନକରି କୁରୁସଭାରେ ଉପବେଶନପୂର୍ବକ, ଯେ ଯେପରି ଯୋଗ୍ୟ, ତାଙ୍କ ସହିତ ସେହିରୂପ ସତ୍ସମ୍ଭାଷଣ କଲେ । ପରେ ସେହି ରାଜପ୍ରାସାଦ ପରିତ୍ୟାଗ କରି, ଦୀନବନ୍ଧୁ ଏକ ଦୀନଭବନକୁ ଚଳିଲେ ।

ବିଦୁର ଧୃତରାଷ୍ଟ୍ରଙ୍କର ଏକ ପ୍ରକାର ଭାଇ । ଉଭୟଙ୍କର ବ୍ୟାସଦେବଙ୍କ ଔରସରେ ଜନ୍ମ । କିନ୍ତୁ ଧୃତରାଷ୍ଟ୍ର ରାଜା ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରଜ ପୁତ୍ର ; ବିଦୁର ତାହା ନୁହନ୍ତି । ସେ ବିଚିତ୍ରବୀର୍ଯ୍ୟଙ୍କ ଜଣେ ଦାସୀ ବୈଶ୍ୟାର ଗର୍ଭରେ ଜନ୍ମିଥିଲେ

ତାଙ୍କୁ ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରଜ ଧରିଲେ ବି, ତାଙ୍କ ଜାତି ନିର୍ଣ୍ଣୟ ହୁଏ ନାହିଁ । କାରଣ ବ୍ରାହ୍ମଣର ଔରସରେ, କ୍ଷତ୍ରିୟର କ୍ଷେତ୍ରରେ, ବୈଶ୍ୟାର ଗର୍ଭରେ ତାଙ୍କ ଜନ୍ମ । * ସେ ସାମାନ୍ୟ ବ୍ୟକ୍ତି, କିନ୍ତୁ ପରମ ଧାର୍ମିକ । କୃଷ୍ଣ ରାଜପ୍ରାସାଦ ତ୍ୟାଗ କରି ତାଙ୍କ ଘରକୁ ଯାଇ, ତାଙ୍କ ନିକଟରୁ ଆତିଥ୍ୟ ଗ୍ରହଣ କଲେ । ସେଥି ପାଇଁ ଆଜି ସୁଦ୍ଧା ଏ ଦେଶରେ "ବିଦୁରର ଖୁଦ," ଏହି ବାକ୍ୟ ପ୍ରଚଳିତ ଅଛି । ପାଣ୍ଡବମାତା କୁନ୍ତୀ, କୃଷ୍ଣଙ୍କ ପିତୃଷ୍ୱସା ସେହିଠାରେ ବାସ କରୁଥିଲେ । ବନଗମନସମୟରେ ପାଣ୍ଡବମାନେ ତାଙ୍କୁ ସେଠାରେ ରଖିଥିଲେ

---

* ମହାଭାରତୀୟ ନାୟକମାନଙ୍କ ସମସ୍ତଙ୍କରହିଁ ଜାତି ସମ୍ବନ୍ଧରେ ଏହିରୂପ ଗୋଳମାଳ । ପାଣ୍ଡବମାନଙ୍କ ସମ୍ବନ୍ଧରେ ଏହିରୂପ ଗୋଳମାଳ । ପାଣ୍ଡବମାନଙ୍କ ପ୍ରପିତାମହୀ ସତ୍ୟବତୀ, ଦାସକନ୍ୟା ଭୀଷ୍ମଙ୍କ ମାତାଙ୍କର ଜାତିକୁ ଲୁଚାଇବାର ବୋଧହୁଏ ବିଶେଷ ପ୍ରୟୋଜନ ଥିଲା, ସେଥି ନିମିତ୍ତ ସେ ଗଙ୍ଗାନନ୍ଦନ । ଧୃତରାଷ୍ଟ୍ର ଓ ପାଣ୍ଡୁ ବ୍ରାହ୍ମଣର ଔରସରେ, କ୍ଷତ୍ରିୟାର ଗର୍ଭଜାତ । ବ୍ୟାସ ନିଜେ ସେଇ ଧୀବରନନ୍ଦିନୀଙ୍କ କାନୀନପୁତ୍ର । ଅତଏବ ପାଣ୍ଡୁ ଓ ଧୃତରାଷ୍ଟ୍ରଙ୍କ ଜାତି ସମ୍ବନ୍ଧରେ ଏତେ ଗୋଳମାଳ ଯେ, ଏବକାର ଦିନରେ, ସେମାନେ ସବୁଜାତିର ଅପାଂକ୍ତେୟ ହୁଅନ୍ତେ ପାଣ୍ଡୁଙ୍କ ପୁତ୍ରମାନେ କୁନ୍ତୀଙ୍କ ଗର୍ଭଜାତ ଠିକ୍, କିନ୍ତୁ ବାପର ପୁଅ ନୁହନ୍ତି ; ପାଣ୍ଡୁ ନିଜେ ପୁତ୍ରଉତ୍ପାଦନରେ ଅକ୍ଷମ । ସେମାନେ ଇନ୍ଦ୍ରାଦିଙ୍କ ଔରସ ପୁତ୍ର ବୋଲି ପରିଚିତ । ଏଣେ, ଦ୍ରୋଣାଚାର୍ଯ୍ୟଙ୍କ ପିତା ଭରଦ୍ୱାଜ ଋଷି, କିନ୍ତୁ ମା ଗୋଟାଏ କଳସୀ ; କଳସୀର ଗର୍ଭଧାରଣ ଯେଉଁମାନଙ୍କର ବିଶ୍ୱାସ ନ ହେବ, ସେମାନେ ଦ୍ରୋଣଙ୍କ ମାତୃକୁଳ ସମ୍ବନ୍ଧରେ ବିଶେଷ ସନ୍ଦିହାନ ହେବେ ।

କୃଷ୍ଣ କୁନ୍ତୀକୁ ପ୍ରଣାମ କରିବାକୁ ଗଲେ। କୁନ୍ତୀ ପୁତ୍ରଗଣ ଓ ପୁତ୍ରବଧୂଙ୍କ ଦୁଃଖର ବିବରଣ ସ୍ମରଣ କରି କୃଷ୍ଣଙ୍କ ନିକଟରେ ଅନେକ କନ୍ଦାକଟା କଲେ। ଉତ୍ତରରେ କୃଷ୍ଣ ଯାହା ତାଙ୍କୁ କହିଲେ, ତାହା ଅମୂଲ୍ୟ। ଯେଉଁ ବ୍ୟକ୍ତି ମନୁଷ୍ୟ—ଚରିତ୍ରର ସର୍ବପ୍ରଦେଶ ସମ୍ପୂର୍ଣ୍ଣରୂପେ ଅବଗତ ହୋଇଅଛନ୍ତି, ତାଙ୍କ ଭିନ୍ନ ଅନ୍ୟ କେହି ସେ କଥାର ଅମୂଲ୍ୟତ୍ୱ ବୁଝିବେ ନାହିଁ। ମୂର୍ଖର ତ କଥାଇ ନାହିଁ। ଶ୍ରୀକୃଷ୍ଣ କହୁଛନ୍ତି,

---

ପାଣ୍ଡବମାନଙ୍କ ପିତା ସମ୍ବନ୍ଧରେ ଯେତେ ଗୋଳମାଳ କର୍ଣ୍ଣ ସମ୍ବନ୍ଧରେ ମଧ୍ୟ ସେତେ—ବେଶୀର ଭାଗ ସେ କାନୀନ। ଦ୍ରୌପଦୀ ଓ ଧୃଷ୍ଟଦ୍ୟୁମ୍ନଙ୍କ ବାପ ମା କିଏ, କେହି କହି ପାରନ୍ତି ନାହିଁ; ସେମାନେ ଜଜ୍ଞୋଦ୍ଭୂତ।

ଏ ସମୟରେ କିନ୍ତୁ, ବିବାହ ସମ୍ବନ୍ଧରେ କୌଣସି ଗୋଳ-ମାଳ ନଥିଲା। ଅନୁଲୋମ ପ୍ରତିଲୋମ ବିବାହର କଥା କହୁ ନାହିଁ, ଅନେକ ଋଷିଙ୍କ ଧର୍ମ୍ମପତ୍ନୀ ମଧ୍ୟ କ୍ଷତ୍ରିୟ କନ୍ୟା ଥିଲେ; ଯଥା, ଅଗସ୍ତ୍ୟପତ୍ନୀ ଲୋପାମୁଦ୍ରା, ଋଷ୍ୟଶୃଙ୍ଗଙ୍କ ସ୍ତ୍ରୀ ଶାନ୍ତା, ଋଚୀକଭାର୍ଯ୍ୟା, ଯମଦଗ୍ନିଙ୍କ ଭାର୍ଯ୍ୟା (କେହି କେହି କହନ୍ତି ପରଶୁରାମଙ୍କ ଭାର୍ଯ୍ୟା) ରେଣୁକା ଇତ୍ୟାଦି। ଏପରି ମଧ୍ୟ କଥିତ ଅଛି ଯେ ପରଶୁରାମ ପୃଥିବୀ କ୍ଷତ୍ରିୟଶୂନ୍ୟ କଲାପରେ, ବ୍ରାହ୍ମଣମାନଙ୍କ ଔରସରେ ପରବର୍ତ୍ତୀ କ୍ଷତ୍ରିୟମାନେ ଜନ୍ମିଥିଲେ। ପକ୍ଷାନ୍ତରେ ବ୍ରାହ୍ମଣକନ୍ୟା ଦେବଜାନୀ, କ୍ଷତ୍ରିୟ ଯଯାତିଙ୍କ ଧର୍ମ୍ମପତ୍ନୀ। ଆହାରାଦି ସମ୍ବନ୍ଧରେ କୌଣସି ଧରାଧର ନଥିଲା, ତାହା ବି ଇତିହାସରେ ଦେଖାଯାଏ। ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ପରସ୍ପରର ଅନ୍ନ ଭୋଜନ କରୁଥିଲେ।

"ପାଣ୍ଡବମାନେ, ନିଦ୍ରା, ତନ୍ଦ୍ରା, କ୍ରୋଧ, ହର୍ଷ, କ୍ଷୁଧା, ପିପାସା, ଶ୍ରମ, ରୌଦ୍ର ପରାଜୟ କରି ବୀରୋଚିତ ସୁଖରେ ନିରତ ରହିଛନ୍ତି । ସେମାନେ ଇନ୍ଦ୍ରିୟସୁଖ ପରିତ୍ୟାଗ କରି ବୀରୋଚିତ ସୁଖରେ ସନ୍ତୁଷ୍ଟ ଅଛନ୍ତି । ସେଇ ମହାବଳପରାକ୍ରାନ୍ତ ମହୋତ୍ସାହସମ୍ପନ୍ନ ବୀରଗଣ କଦାପି ଅଳ୍ପରେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ବୀର ବ୍ୟକ୍ତିର ହୁଏ ଅତିଶୟ କ୍ଲେଶ, ନ ହେଲେ ଅତ୍ୟୁତ୍କୃଷ୍ଟ ସୁଖ ସମ୍ଭୋଗ କରିଥାନ୍ତି ।—**ଆଉ ଇନ୍ଦ୍ରିୟସୁଖାଭିଳାଷୀ ବ୍ୟକ୍ତିଗଣ ମଧ୍ୟାବସ୍ଥାରେହିଁ ସନ୍ତୁଷ୍ଟ ରହନ୍ତି; କିନ୍ତୁ ତାହା ଦୁଃଖର ଆକର; ରାଜ୍ୟଲାଭ ବା ବନବାସ ସୁଖର ନିଦାନ"** । "ରାଜ୍ୟଲାଭ ବା ବନବାସ † କଥାଟି ଆଧୁନିକ ହିନ୍ଦୁ ବୁଝେ ନାହିଁ । ବୁଝିଲେ, ଏତେ ଦୁଃଖ ଥାଆନ୍ତା ନାହିଁ, ଯେଉଁ ଦିନ ବୁଝିବେ, ସେଦିନ ଆଉ ଦୁଃଖ ରହିବ ନାହିଁ । ହିନ୍ଦୁ ପୁରାଣେତିହାସରେ ଏପରି କଥା ଥାଉଁ ଥାଉଁ ଆମେ କଣ ନା, ମେମ୍‌ସାହେବଙ୍କ ଲେଖା ନଭେଲ ପଢ଼ି ଦିନ କଟାଉଁ, ନହେଲେ ସଭା କରି, ପାଞ୍ଚଜଣ ଜୁଟି ଚଢ଼େଇ ପରି କଚିରି ମିଚିରି କରୁ ।

---

† ମିଲଟନଙ୍କ କ୍ଷୁଦ୍ରଚେତା ସଇତାନ କହିଥିଲା ଯେ, ସ୍ୱର୍ଗରେ ଦାସତ୍ୱ ଅପେକ୍ଷା ବରଂ ନରକରେ ରାଜତ୍ୱ ଶ୍ରେୟଃ । ମୁଁ ଜାଣେ ଯେ, ଆମର ଏପରି ପାଠକ ଅନେକ ଅଛନ୍ତି, ଯେଉଁମାନେ ଏଇ କ୍ଷୁଦ୍ରୋକ୍ତିର ସହିତ ଉପରଲିଖିତ ମହତି ବାଣୀର କୌଣସି ପ୍ରଭେଦ ଦେଖିବେ ନାହିଁ । ସେମାନଙ୍କ ମନୁଷ୍ୟତ୍ୱ ସମ୍ବନ୍ଧରେ ମୁଁ ସମ୍ପୂର୍ଣ୍ଣରୂପେ ଆଶାଶୂନ୍ୟ । ଲଘୁଚେତା ପରର ପ୍ରଭୁତ୍ୱ ସହ୍ୟ କରି ପାରେ ନାହିଁ । ମହାତ୍ମା, କର୍ତ୍ତବ୍ୟାନୁରୋଧରେ ତାହା

କୃଷ୍ଣ କୁନ୍ତୀଙ୍କୁ ଆଦର କହିଲେ, "ଆପଣ ସେମାନଙ୍କୁ ଶତ୍ରୁବିନାଶ କରି ସକଳ ଲୋକର ଆଧିପତ୍ୟ ଓ ଅତୁଳ ସମ୍ପତ୍ତି ଭୋଗ କରିବାର ଦେଖିବେ।"

ଅତଏବ କୃଷ୍ଣ ନିଶ୍ଚିତ ଜାଣିଥିଲେ ଯେ, ସନ୍ଧି ହେବ ନାହିଁ—ଯୁଦ୍ଧ ହେବ। ତଥାପି ସନ୍ଧି ସ୍ଥାପନ ନିମିତ୍ତ ହସ୍ତିନାକୁ ଆସିଥିଲେ; କାରଣ, ଯେଉଁ କର୍ମ ଅନୁଷ୍ଠେୟ, ତାହା ସିଦ୍ଧ ହେଉ ବା ନହେଉ, ତାହାର ଅନୁଷ୍ଠାନ କରିବାକୁ ହୁଏ, ଫଳାଫଳରେ ଅନାସକ୍ତ ହୋଇ କର୍ତ୍ତବ୍ୟ ସାଧନ କରିବାକୁ ହୁଏ ଏହାକୁହିଁ ସେ ଗୀତାଟରେ କର୍ମଯୋଗ ବୋଲି ବୁଝାଇ ଅଛନ୍ତି। ଯୁଦ୍ଧ ଅପେକ୍ଷା ସନ୍ଧି ମନୁଷ୍ୟର ହିତକର; ଏଥିନିମିତ୍ତ ସନ୍ଧିସ୍ଥାପନ ଅନୁଷ୍ଠେୟ। କିନ୍ତୁ ଯେତେବେଳେ ଯଥାସାଧ୍ୟ ଚେଷ୍ଟା କରି ସନ୍ଧିସ୍ଥାପନ କରିପାରିଲେ ନାହିଁ, ସେତେବେଳେ କୃଷ୍ଣ ମଧ୍ୟ ପୁଣି ଯୁଦ୍ଧରେ ବୀତଶ୍ରଦ୍ଧ ଅର୍ଜ୍ଜୁନଙ୍କର ପ୍ରଧାନ ଉତ୍ସାହଦାତା ଓ ସହାୟ। କାରଣ, ଯେତେବେଳେ ସନ୍ଧି ଅସାଧ୍ୟ, ସେତେବେଳେ ଯୁଦ୍ଧହିଁ ଅନୁଷ୍ଠେୟ ଧର୍ମ। ଅତଏବ ଯେଉଁ କର୍ମଯୋଗ ସେ ଗୀତାରେ ଉପଦିଷ୍ଟ କରିଛନ୍ତି, ସେ ନିଜେ ତହିଁରେ ପ୍ରଧାନ ଯୋଗୀ ତାଙ୍କ ଆଦର୍ଶ ଚରିତ୍ର ପୁଙ୍ଖାନୁପୁଙ୍ଖ ସମାଲୋଚନାଦ୍ୱାରା ଆମେ ପ୍ରକୃତ ମନୁଷ୍ୟତ୍ୱ କଣ, ତାହା ବୁଝି ପାରିବା ବୋଲି ଏତେ ପ୍ରୟାସ ପାଉଅଛୁ।

କୃଷ୍ଣ କୁନ୍ତୀଙ୍କ ନିକଟରୁ ବିଦାୟ ହୋଇ ପୁନର୍ବାର କୌରବସଭାକୁ ଗମନ କଲେ। ସେଠାକୁ ଗଲେ, ଦୁର୍ଯ୍ୟୋଧନ

---

କରିପାରନ୍ତି, କିନ୍ତୁ ମହାତ୍ମା ଜାଣନ୍ତି ଯେ, ମହାଦୁଃଖ ବା ମହାସୁଖ ବ୍ୟତୀତ ତାଙ୍କର ବହୁବର୍ଷାବକାଂକ୍ଷିଣୀ ଚିତ୍ତବୃତ୍ତି ସବୁ ସ୍ଫୁର୍ତ୍ତିପ୍ରାପ୍ତ ହୋଇ ପାରେ ନାହିଁ।

ତାଙ୍କୁ ଭୋଜନ ନିମିତ୍ତ ନିମନ୍ତ୍ରଣ କଲେ । ସେ ତାହା ଗ୍ରହଣ କଲେ ନାହିଁ । ଦୁର୍ଯ୍ୟୋଧନ ଏହାର କାରଣ ଜିଜ୍ଞାସା କଲେ । କୃଷ୍ଣ ପ୍ରଥମେ ତାଙ୍କୁ ଲୌକିକ ମିଷ୍ଟତା ସ୍ମରଣ କରାଇ ଦେଲେ କହିଲେ, "ଦୂତଗଣ କାର୍ଯ୍ୟସମାଧାନାନ୍ତେ ଭୋଜନ ଓ ପୂଜା ଗ୍ରହଣ କରିଥାନ୍ତି; ଅତଏବ ମୁଁ କୃତକାର୍ଯ୍ୟ ହେଲାପରେ ଆପଣଙ୍କ ପୂଜା ଗ୍ରହଣ କରିବ ।" ଦୁର୍ଯ୍ୟୋଧନ ତଥାପି ଛାଡନ୍ତିନାହିଁ; ପୁଣି ଜିଜ୍ଞାସା କଲେ । ସେତେବେଳେ କୃଷ୍ଣ କହିଲେ ।

"ଲୋକେ ହୁଏତ ପ୍ରୀତିପୂର୍ବକ ଅଥବା ବିପନ୍ନ ହୋଇ ଅନ୍ୟର ଅନ୍ନ ଭୋଜନ କରନ୍ତି । ଆପଣ ପ୍ରୀତି ସହକାରେ ମତେ ଭୋଜନ କରାଇବାର ବାସନା କରି ନାହାନ୍ତି ? ମୁଁ ମଧ୍ୟ ବିପଦ-ଗ୍ରସ୍ତ ହୋଇନାହିଁ, ତେବେ କି ନିମିତ୍ତ ଆପଣଙ୍କ ଅନ୍ନ ଭୋଜନ କରିବ ?"

ଭୋଜନର ନିମନ୍ତ୍ରଣ ଗ୍ରହଣ ଗୋଟିଏ ସାମାନ୍ୟ କର୍ମ; କିନ୍ତୁ ଆମର ଦୈନିକ ଜୀବନ ସଚରାଚର କେତେଗୁଡ଼ିଏ ସାମାନ୍ୟ କର୍ମର ସମବାୟ ମାତ୍ର । ସାମାନ୍ୟ କର୍ମ ନିମିତ୍ତ ଗୋଟିଏ ନୀତି ଅଛି ଅଥବା ଥିବା ଉଚିତ ! ବୃହତ୍ କର୍ମ ସକଳର ନୀତିର ଯେଉଁ ଭିତ୍ତି, କ୍ଷୁଦ୍ର କର୍ମ ସକଳର ନୀତିର ମଧ୍ୟ ସେହି ଭିତ୍ତି । ସେ ଭିତ୍ତି ଧର୍ମ । ତେବେ ଉନ୍ନତଚରିତ୍ର ମନୁଷ୍ୟ ସହିତ କ୍ଷୁଦ୍ରଚେତାର ଏହି ପ୍ରଭେଦ ଯେ । କ୍ଷୁଦ୍ରଚେତା ଧର୍ମରେ ପରାଂଙ୍ମୁଖ ନହେଲେ ବି, ସାମାନ୍ୟ ବିଷୟରେ ନୀତିର ଅନୁବର୍ତ୍ତୀ ହେବାକୁ ସକ୍ଷମ ହୁଅନ୍ତି ନାହିଁ, କାରଣ, ନୀତିର ଭିତ୍ତି ସେ ଅନୁସନ୍ଧାନ କରନ୍ତି ନାହିଁ । ଆଦର୍ଶ ମନୁଷ୍ୟ ଏହି କ୍ଷୁଦ୍ର ବିଷୟରେ ମଧ୍ୟ ନୀତିର ଭିତ୍ତି ଅନୁସନ୍ଧାନ କରେ । ଦେଖିଲେ ଯେ,

ଏହି ନିମନ୍ତ୍ରଣ ଗ୍ରହଣ ସରଳତା ଓ ସତ୍ୟର ବିରୁଦ୍ଧ ହୁଏ । ଅତଏବ ଦୁର୍ଯ୍ୟୋଧନଙ୍କୁ ସରଳ ଓ ସତ୍ୟ ଉତ୍ତର ଦେଲେ, ସ୍ପଷ୍ଟ କଥା ପରୁଷ ହେଲେ ମଧ୍ୟ ତାହା କହିବାକୁ ସଙ୍କୁଚିତ ହେଲେ ନାହିଁ । ଯେଉଁଠାରେ ଅକପଟ ବ୍ୟବହାର ଧର୍ମାନୁମତ ହୁଏ, ସେଠାରେ ବି ତାହା ପୁରୁଷ ବୋଲି ଆମେ ପରାଙ୍ମୁଖ, ଏହି ଧର୍ମବିରୁଦ୍ଧ ଲଜ୍ଜା ଅନେକ ସମୟରେ ଆମ୍ଭମାନଙ୍କୁ କ୍ଷୁଦ୍ର କ୍ଷୁଦ୍ର ଅଧର୍ମରେ ନିପାତ ମଧ୍ୟ କରେ ।

କୃଷ୍ଣ ତାରପରେ କୁରୁସଭାରୁ ଉଠି, ବିଦୁରଙ୍କ ଭବନକୁ ଗମନ କଲେ । ବିଦୁରଙ୍କ ସଙ୍ଗରେ ରାତିରେ ତାଙ୍କର ଅନେକ କଥୋପକଥନ ହେଲା । ବିଦୁର ତାଙ୍କୁ ବୁଝାଇଲେ ଯେ, ତାଙ୍କର ହସ୍ତିନା ଆସିବା ଅନୁଚିତ ହୋଇଅଛି; କାରଣ, ଦୁର୍ଯ୍ୟୋଧନ କୌଣସି ମତେ ସନ୍ଧି ସ୍ଥାପନ କରିବ ନାହିଁ । କୃଷ୍ଣଙ୍କ ଉତ୍ତରରୁ କିୟଦଂଶ ଉଦ୍ଧୃତ କରୁଅଛି ।

"ଯେ ଅଶ୍ୱକୁଞ୍ଜରରଥସମବେତ ବିପର୍ଯ୍ୟସ୍ତ ସମୁଦାୟ ପୃଥିବୀକୁ ମୃତ୍ୟୁପାଶରୁ ବିମୁକ୍ତ କରିବାକୁ ସମର୍ଥ ହୁଅନ୍ତି, ତାଙ୍କର ଉତ୍କୃଷ୍ଟ ଧର୍ମଲାଭ ହୁଏ ।"

ଇଉରୋପର ପ୍ରତି ରାଜପ୍ରାସାଦରେ ଏଇ କଥା ଗୁଡ଼ିକ ସ୍ୱର୍ଣ୍ଣାକ୍ଷରରେ ଲେଖି ରଖିବା ଉଚିତ । ସିମଲାର ରାଜପ୍ରାସାଦରେ ମଧ୍ୟ ବାଦ ନ ପଡ଼େ । କୃଷ୍ଣ ପୁନଶ୍ଚ କହୁଛନ୍ତି,

"ଯେଉଁ ବ୍ୟକ୍ତି ବ୍ୟସନଗ୍ରସ୍ତ ବାନ୍ଧବକୁ ମୁକ୍ତ କରିବା ନିମିତ୍ତ ଯଥାସାଧ୍ୟ ଯତ୍ନବାନ ନ ହୁଅନ୍ତି, ପଣ୍ଡିତମାନେ ତାଙ୍କୁ ନୃଶଂସ ବୋଲି କୀର୍ତ୍ତନ କରନ୍ତି । ପ୍ରାଜ୍ଞ ବ୍ୟକ୍ତି ମିତ୍ରର କେଶ ପର୍ଯ୍ୟନ୍ତ ଧାରଣ କରି ତାଙ୍କୁ ଅକାର୍ଯ୍ୟରୁ ନିବୃତ୍ତ କରିବାର ଚେଷ୍ଟା କରିବେ ।

× × × × ଯଦି ସେ (ଦୁର୍ଯ୍ୟୋଧନ) ମୋର ହିତକର ବାକ୍ୟ ଶ୍ରବଣ କରି ସୁଦ୍ଧା ମୋ ପ୍ରତି ଶଙ୍କା କରନ୍ତି, ସେଥିରେ ମୋର କିଛି ମାତ୍ର କ୍ଷତି ନାହିଁ; ପ୍ରତ୍ୟୁତ ଆତ୍ମୀୟଙ୍କୁ ସଦୁପଦେଶ ପ୍ରଦାନ ନିବନ୍ଧନ ପରମ ସନ୍ତୋଷ ଓ ଆନୃଣ୍ୟ ଲାଭ ହେବ । ଯେଉଁ ବ୍ୟକ୍ତି ଜ୍ଞାତିଭେଦ ସମୟରେ ସତ୍ପରାମର୍ଶ ପ୍ରଦାନ ନ କରେ, ସେ ବ୍ୟକ୍ତି କେବେହେଁ ଆତ୍ମୀୟ ନୁହେଁ ।"

ଇଉରୋପୀୟମାନଙ୍କର ବିଶ୍ୱାସ, କୃଷ୍ଣ କେବଳ ପରସ୍ତ୍ରୀଲୁବ୍ଧ ପାପିଷ୍ଠ ଗୋପ; ଏ ଦେଶର ଲୋକଙ୍କର କାହାରିବା ସେହିରୂପ ବିଶ୍ୱାସ, କାହାରିବା ବିଶ୍ୱାସ ଯେ, ସେ ମନୁଷ୍ୟହତ୍ୟା ନିମିତ୍ତ ଅବତୀର୍ଣ୍ଣ, କାହାରିବା ବିଶ୍ୱାସ ସେ "ଚକ୍ରୀ"—ଅର୍ଥାତ୍ ସ୍ୱାଭିଳା-ଷସିଦ୍ଧି ନିମିତ୍ତ କୁଚକ୍ର ଉପସ୍ଥିତ କରନ୍ତି । ସେ ଯେ ଏ ସବୁ ନୁହନ୍ତି ତା ନୁହେଁ ତତ୍ପରିବର୍ତ୍ତେ ଲୋକହିତୈଷୀର ଶ୍ରେଷ୍ଠ, ଜ୍ଞାନୀଶ୍ରେଷ୍ଠ, ଧର୍ମୋପଦେଷ୍ଟାର ଶ୍ରେଷ୍ଠ, ଆଦର୍ଶ ମନୁଷ୍ୟ--ଏହାହିଁ ବୁଝାଇବା ନିମିତ୍ତ ଏସବୁ ଉଦ୍ଧୃତ କରୁଅଛୁ ।

## ସପ୍ତମ ପରିଚ୍ଛେଦ

## ହସ୍ତିନାରେ ଦ୍ୱିତୀୟ ଦିବସ

ପରଦିନ ସକାଳେ ସ୍ୱୟଂ ଦୁର୍ଯ୍ୟୋଧନ ଓ ଶକୁନି ଆସି ଶ୍ରୀକୃଷ୍ଣଙ୍କୁ ବିଦୁରଭବନରୁ କୌରବସଭାକୁ ନେଇ ଗଲେ । ଅତି ମହତୀ ସଭା ହେଲା । ନାରଦାଦି ଦେବର୍ଷି ଏବଂ ଯମଦଗ୍ନି ପ୍ରଭୃତି ବ୍ରହ୍ମର୍ଷି ସେଠାରେ ଉପସ୍ଥିତ ହେଲେ । କୃଷ୍ଣ ପରମ ବାଗ୍ମୀତାର ସହିତ ଦୀର୍ଘ ବକ୍ତୃତାରେ ଧୃତରାଷ୍ଟ୍ରଙ୍କୁ ସନ୍ଧି ସ୍ଥାପନରେ ପ୍ରବୃତ୍ତି ଦେବାକୁ ଲାଗିଲେ, ଋଷିଗଣ ମଧ୍ୟ ସେହିରୂପ କଲେ ।

କିଛି ମାତ୍ର ହେଲା ନାହିଁ । ଧୃତରାଷ୍ଟ୍ର କହିଲେ, "ମୋର ସାଧ ନୁହେଁ, ଦୁର୍ଯ୍ୟୋଧନକୁ କୁହ ।" ଦୁର୍ଯ୍ୟୋଧନକୁ କୃଷ୍ଣ, ଭୀଷ୍ମ, ଦ୍ରୋଣ ପ୍ରଭୃତି ଅନେକ ପ୍ରକାର ବୁଝାଇଲେ । ସନ୍ଧି ସ୍ଥାପନ ଦୂରେ ଥାଉ, ଦୁର୍ଯ୍ୟୋଧନ କୃଷ୍ଣଙ୍କୁ କଡ଼ା କଡ଼ା ଶୁଣାଇ ଦେଲେ । କୃଷ୍ଣ ମଧ ତାହାର ଉପଯୁକ୍ତ ଉତ୍ତର ଦେଲେ । ଦୁର୍ଯ୍ୟୋଧନଙ୍କ ଦୁଷ୍ଟଚରିତ୍ର ଓ ପାପାଚରଣ ସବୁ ବୁଝାଇଦେଲେ । କ୍ରୁଦ୍ଧ ହୋଇ ଦୁର୍ଯ୍ୟୋଧନ ଉଠି ଚଲେ ।

ତତ୍‌ପରେ କୃଷ୍ଣ, ଯାହା ସମସ୍ତ ପୃଥିବୀର ରାଜନୀତିର ମୂଳସୂତ୍ର ତଦନୁସାରେ କାର୍ଯ୍ୟ କରିବାକୁ ଧୃତରାଷ୍ଟ୍ରଙ୍କୁ ପରାମର୍ଶ ଦେଲେ । ରାଜଶାସନର ମୂଳସୂତ୍ର ଏହି ଯେ, ପ୍ରଜାରକ୍ଷାର୍ଥ ଦୁଷ୍କୃତକାରୀକୁ ଦଣ୍ଡିତ କରିବେ । ଅର୍ଥାତ୍ ଅନେକଙ୍କ ହିତାର୍ଥ ଜଣଙ୍କର ଦଣ୍ଡ ବିଧେୟ । ସମାଜର ରକ୍ଷାର୍ଥ ହତ୍ୟାକାରୀର ବଧ ବିହିତ । ଯାହାକୁ ବଧ ନ କଲେ ତାର ପାପାଚରଣରେ ବହୁସଂଖ୍ୟକ ପ୍ରାଣୀର ପ୍ରାଣସଂହାର ହେବ, ତାକୁ ବଧକରିବା ହିଁ ଜ୍ଞାନୀର ଉପଦେଶ । ଏଣୁ ଇଉରୋପୀୟ ସମସ୍ତ ରାଜା ଓ ରାଜମନ୍ତ୍ରୀ ପରାମର୍ଶ କରି ଖ୍ରୀ୧୮୧୫ଷ୍ଟାବ୍ଦରେ ନେପୋଲିୟନଙ୍କୁ ଯାବଜ୍ଜୀବନ ଆବଦ୍ଧ କରିଥିଲେ । ଏଥି ନିମିତ୍ତ ମହାମାନ୍ତଙ୍କ କୃଷ୍ଣ ଧୃତରାଷ୍ଟ୍ରଙ୍କୁ ପରାମର୍ଶ ଦେଲେ ଯେ, ଦୁର୍ଯ୍ୟୋଧନକୁ ଆବଦ୍ଧକରି ପାଣ୍ଡବ-ମାନଙ୍କ ସହିତ ସନ୍ଧି କରନ୍ତୁ । ସେ ନିଜେ, ସମସ୍ତ ଯଦୁବଂଶର ରକ୍ଷାର୍ଥ, କଂସ ମାତୁଳ ହେଲେ ମଧ ତାଙ୍କୁ ବଧ କରିବାକୁ ବାଧ୍ୟ ହୋଇଥିଲେ । ସେ ସେ ଉଦାହରଣ ମଧ ଦେଲେ, କହିବା ବାହୁଲ୍ୟ ଯେ, ଏ ପରାମର୍ଶ ଗୃହୀତ ହେଲା ନାହିଁ,

ଏଣେ ଦୁର୍ଯ୍ୟୋଧନ ରୁଷ୍ଟ ହୋଇ କୃଷ୍ଣଙ୍କୁ ଆବଦ୍ଧ କରିବା ନିମିତ୍ତ କର୍ଣ୍ଣଙ୍କ ସହିତ ପରାମର୍ଶ କରିବାକୁ ଲାଗିଲେ ।

ସାତ୍ୟକି କୃତବର୍ମ୍ମା ପ୍ରଭୃତି କୃଷ୍ଣଙ୍କ ଜ୍ଞାତିବର୍ଗ ସଭାରେ ଉପସ୍ଥିତ ଥିଲେ । ସାତ୍ୟକି କୃଷ୍ଣଙ୍କ ଅତ୍ୟନ୍ତ ଅନୁଗତ ଓ ପ୍ରିୟ ଅସ୍ତ୍ରବିଦ୍ୟାରେ ଅର୍ଜ୍ଜୁନଙ୍କ ଶିଷ୍ୟ, ଏବଂ ପ୍ରାୟ ଅର୍ଜ୍ଜୁନତୁଲ୍ୟ ବୀର । ଇଙ୍ଗିତଜ୍ଞ ମହାବୁଦ୍ଧିମାନ ସାତ୍ୟକି ଏହି ମନ୍ତ୍ରଣା ଜାଣି ପାରିଲେ । ସେ ଅନ୍ୟତର ଯାଦବବୀର କୃତବର୍ମ୍ମାଙ୍କୁ ସସୈନ୍ୟ ପୁରଦ୍ୱାରରେ ପ୍ରସ୍ତୁତ ରହିବାକୁ କହି କୃଷ୍ଣଙ୍କୁ ଏହି ମନ୍ତ୍ରଣା ଜଣାଇଲେ ଏବଂ ସଭାମଧ୍ୟରେ ପ୍ରକାଶ୍ୟରେ ଏହା ଧୃତରାଷ୍ଟ୍ର ପ୍ରଭୃତିଙ୍କୁ ଜଣାଇଲେ । ଏହା ଶୁଣି ବିଦୁର ଧୃତରାଷ୍ଟ୍ରଙ୍କୁ କହିଲେ,

"ଯେପରି ପତଙ୍ଗଗଣ ପାବକରେ ପତିତ ହୋଇ ବିନଷ୍ଟ ହୁଅନ୍ତି, ଏମାନଙ୍କ ଦଶା କଣ ସେହିରୂପ ହେବ ନାହିଁ ? ଜନାର୍ଦ୍ଦନ ଯେପରି ଇଚ୍ଛାକଲେ ଯୁଦ୍ଧକାଳରେ ସମସ୍ତଙ୍କୁ ଶମନ-ସଦନକୁ ପ୍ରେରଣ କରିବେ ।" ଇତ୍ୟାଦି ।

ପରେ କୃଷ୍ଣ ଯାହା କହିଲେ ତାହା ଯଥାର୍ଥରେ ଆଦର୍ଶ ପୁରୁଷଙ୍କ ଉକ୍ତି । ସେ ବଳଶାଳୀ, ସୁତରାଂ କ୍ରୋଧଶୂନ୍ୟ ଏବଂ କ୍ଷମାଶୀଳ । ସେ ଧୃତରାଷ୍ଟ୍ରଙ୍କୁ କହିଲେ,

ଶୁଣୁଅଛି, ଦୁର୍ଯ୍ୟୋଧନ ପ୍ରଭୃତି ସମସ୍ତେ କ୍ରୁଦ୍ଧ ହୋଇ ମତେ ବଳପୂର୍ବକ ନିଗୃହୀତ କରିବେ । କିନ୍ତୁ ଆପଣ ଅନୁମତି କରି ଦେଖନ୍ତୁ, ମୁଁ ଏମାନଙ୍କୁ ଆକ୍ରମଣ କରେ କି ଏମାନେ ମତେ ଆକ୍ରମଣ କରନ୍ତି । ମୋର ଏପରି ସାମର୍ଥ୍ୟ ଅଛି ଯେ, ମୁଁ ଏକାକୀ ଏମାନଙ୍କୁ ସମସ୍ତଙ୍କୁ ନିଗୃହୀତ କରିପାରେ । କିନ୍ତୁ ମୁଁ କୌଣସି ପ୍ରକାରର ନିନ୍ଦିତ ପାପଜନକ କାର୍ଯ୍ୟ କରିବି ନାହିଁ ।

ଆପଣଙ୍କ ପୁତ୍ରମାନେ ପାଣ୍ଡବମାନଙ୍କ ଅର୍ଥରେ ଲୋଲୁପ ହୋଇ ସ୍ୱାର୍ଥଭ୍ରଷ୍ଟ ହେବେ । ବସ୍ତୁତଃ ଏମାନେ ମତେ ନିଗୃହୀତ କରିବାକୁ ଇଚ୍ଛା କରି ଯୁଧିଷ୍ଠିରଙ୍କ କୁତକାର୍ଯ୍ୟ କରୁଛନ୍ତି । ମୁଁ ଆଜି ହିଁ ଏମାନଙ୍କୁ ଓ ଏମାନଙ୍କ ଅନୁଚରମାନଙ୍କୁ ନିଗ୍ରହଣ କରି ପାଣ୍ଡବମାନଙ୍କୁ ପ୍ରଦାନ କରିପାରେ । ସେଥି ନିମିତ୍ତ ମତେ ପାପଭାଗୀ ହେବାକୁ ମଧ୍ୟ ହେବ ନାହିଁ । କିନ୍ତୁ ଆପଣଙ୍କ ସନ୍ନିଧାନରେ ଈଦୃଶ କ୍ରୋଧ ଓ ପାପବୁଦ୍ଧିଜନିତ ଗର୍ହିତ କାର୍ଯ୍ୟରେ ପ୍ରବୃତ୍ତ ହେବି ନାହିଁ । ମୁଁ ଅନୁଜ୍ଞା କରୁଅଛି ଯେ, ଦୁର୍ଯ୍ୟୋଧନପୁତ୍ରଗଣ ଦୁର୍ଯ୍ୟୋଧନଙ୍କ ଇଚ୍ଛାନୁସାରେ କାର୍ଯ୍ୟ କରନ୍ତୁ ।*

---

* କାଳୀ ପ୍ରସନ୍ନ ସିଂହଙ୍କ ପ୍ରକାଶିତ ଅନୁବାଦ ପ୍ରଶଂସିତ, ଏଥି ନିମିତ୍ତ ସଚରାଚର ମୂଳ ସହିତ ଅନୁବାଦ ନ ମିଳାଇ ମୁଁ ଅନୁବାଦ ଉଦ୍ଧୃତ କରିଅଛି । କିନ୍ତୁ କୃଷ୍ଣଙ୍କ ଏହି ଉକ୍ତିରେ କିଛି ଅସଙ୍ଗତ ସେହି ଅନୁବାଦରେ ଦେଖାଯାଏ, ଯଥା, ଯେଉଁ କାର୍ଯ୍ୟ ଲାଗି ପାପଭାଗୀ ହେବାକୁ ହୁଏ ନାହିଁ ବୋଲି ଏକ-ସ୍ଥାନରେ କହିଛନ୍ତି, ସେହି କାର୍ଯ୍ୟକୁ କେତେ ଧାଡି ପରେ ପାପବୁଦ୍ଧିଜନିତ କହୁଛନ୍ତି । ଏଥି ପାଇଁ ମୂଳ ସହିତ ମିଳାଇ ଦେଖିଲି । ମୂଳରେ ସେପରି ଅସଙ୍ଗତ ଦେଖା ଯାଏ ନାହିଁ । ମୂଳ ଉଦ୍ଧୃତ କରୁଅଛି—

ସଂଯନ୍ତେତ୍ୟ ପଦ ହ୍ୟଦ୍ୟ ମାଂ ନିଗୃହ୍ଣୀତୁମୋଜସା ।
ଏତେ ବା ମାମହଂ ବୈନାନ୍ ଜାନୀହି ପାର୍ଥିବ ॥
ଏତାନ୍ ହି ସର୍ବାନ୍ ସଂରବ୍ଧାନ୍ ନିୟନ୍ତୁମହମୁତ୍ସହେ ।
ନ ତ୍ୱହଂ ନିନ୍ଦିତଂ କର୍ମ କୁର୍ଯ୍ୟାଂ ପାପଂ କଥଞ୍ଚନ ॥

ଏଇ କଥାପରେ, ଧୃତରାଷ୍ଟ୍ର ଦୁର୍ଯ୍ୟୋଧନଙ୍କୁ ଡ଼କାଇ ଅଣାଇଲେ ଏବଂ ତାଙ୍କୁ ଅତିଶୟ କଠୋକ୍ତି କରି ଭର୍ତ୍ସନା କଲେ । କହିଲେ,

"ତୁମେ ଅତି ନୃଶଂସ, ପାପାତ୍ମା ଓ ମାୟାତ୍ମ ; ଏଥି ନିମିତ୍ତ ଅସାଧ୍ୟ, ଅଯଶସ୍କର, ସାଧୁବିଗର୍ହିତ, ପାପାଚରଣରେ ସମୁଦ୍ୟୁକ୍ତ ହୋଇ ଅଛ । କୁଳ ପାଂଶୁଳ ମୂଢ଼ ଏବ ଦୁରାତ୍ମା-ମାନଙ୍କ ସହିତ ମିଳିତ ହୋଇ ନିତାନ୍ତ ଦୁର୍ଦ୍ଧର୍ଷ ଜନାର୍ଦ୍ଦନଙ୍କୁ ନିଗ୍ରହ କରିବାକୁ ଇଚ୍ଛା କରୁଅଛ । ଯେପରି ବାଳକ ଚନ୍ଦ୍ରମାଙ୍କୁ ଗ୍ରହଣ କରିବାକୁ ଉଦ୍ୟୁକ୍ତ ହୁଏ, ତୁମେ ମଧ୍ୟ ସେହିପରି ଇନ୍ଦ୍ରାଦିଦେବଗଣଙ୍କ ଦୁରାସଦ୍ୟ କେଶବଙ୍କୁ ଗ୍ରହଣ କରିବାର ବାସନା କରୁଅଛ । ଦେବ, ମନୁଷ୍ୟ, ଗନ୍ଧର୍ବ, ଅସୁର ଓ ଉରଗଗଣ ଯାହାଙ୍କ ସଂଗ୍ରାମ ସହ୍ୟ କରିବାକୁ ସମର୍ଥ ହୁଅନ୍ତି ନାହିଁ; ତୁମେ କଣ,

---

ପାଣ୍ଡବାର୍ଥେ ହି ଲୁଭ୍ୟନ୍ତଃ ସ୍ୱାର୍ଥାନ୍ ହାସ୍ୟନ୍ତି ତେ ସୁତାଃ ।
ଏତେ ତେଦେବମିଚ୍ଛନ୍ତି କୃତକାର୍ଯ୍ୟା ଯୁଧିଷ୍ଠିରଃ ॥
ଅଦ୍ୟୈବହ୍ୟହମେନାଂଶ୍ଚ ଯେ ଚୈନାନନୁଗାରତ ।
ନିଗୃହ୍ୟ ରାଜନ୍ ପାର୍ଥେଭ୍ୟୋ ଦଦ୍ୟାଂ କିଂ ଦୁଷ୍କୃତଂ ଭବେତ୍ ॥
ଇଦନ୍ତୁ ନ ପ୍ରବର୍ତ୍ତେୟଂ ନିନ୍ଦିତଂ କର୍ମ୍ମ ଭାରତ ।
ସନ୍ନିଧୌ ତେ ମହାରାଜ କ୍ରୋଧଜଂ ପାପବୁଦ୍ଧିଜମ୍ ॥
ଏଷ ଦୁର୍ଯ୍ୟୋଧନୋ ରାଜନ୍ ଯଥେଚ୍ଛତି ତଥାସ୍ତୁ ତତ୍ ।
ଅହନ୍ତୁ ସର୍ବାଂସ୍ତନୟାନନୁଜାନାମି ତେ ନୃପ ॥

"କିଂ ଦୁଷ୍କୃତଂ ଭବେତ୍" ଇତି ବାକ୍ୟର ଅର୍ଥ ଠିକ୍ "ପାପଭାଗୀ ହେବାକୁ ହୁଏ ନାହିଁ," ଏହା ନୁହେ । କଥାର ଭାବରୁ ଏପରି ବୁଝାଯାଉ ଅଛି ଯେ, "ଦୁର୍ଯ୍ୟୋଧନ ମତରେ ବନ୍ଧ କରି-

ସେହି କେଶବଙ୍କ ପରିଚୟ ପାଇ ନାହଁ ? ବତ୍ସ ! ହସ୍ତଦ୍ୱାରା କେବେହେଁ ବାୟୁ ଗ୍ରହଣ କରାଯାଏ ନାହିଁ ; ପାଣିତଳଦ୍ୱାରା କେବେହେଁ ପାବକ ସ୍ପର୍ଶ କରାଯାଏ ନାହିଁ ; ମସ୍ତକଦ୍ୱାରା କେବେହେଁ ମେଦିନୀ ଧାରଣ କରାଯାଏ ନାହିଁ ; ଏବଂ ବଳଦ୍ୱାରା ମଧ୍ୟ କେବେହେଁ କେଶବଙ୍କୁ ଗ୍ରହଣ କରାଯାଏ ନାହିଁ ।"

ତାରପରେ ବିଦୁର ମଧ୍ୟ ଦୁର୍ଯ୍ୟୋଧନଙ୍କୁ ସେହିରୂପ ଭର୍ତ୍ସନା କଲେ । ବିଦୁରଙ୍କ ବାକ୍ୟାବସାନ ପରେ, ବାସୁଦେବ ଉଚ୍ଚ-ହାସ୍ୟ କଲେ, ପରେ ସାତ୍ୟକି ଓ କୃତବର୍ମାଙ୍କ ହସ୍ତ ଧାରଣ-ପୂର୍ବକ କୁରୁସଭାରୁ ନିଷ୍କ୍ରାନ୍ତ ହେଲେ ।

ଏ ପର୍ଯ୍ୟନ୍ତ ମହାଭାରତରେ ଆଖ୍ୟାତ ଭଗବଦ୍‌ଯାନ ବୃତ୍ତାନ୍ତ, ସୁସଙ୍ଗତ ଓ ସ୍ୱାଭାବିକ ; କୌଣସି ଗୋଳମାଳ ନାହିଁ

---

ବାକୁ ଚେଷ୍ଟା କରୁଅଛୁ । ମୁଁ ଯଦି ତାଙ୍କୁ ବର୍ତ୍ତମାନ ବାନ୍ଧି ନେଇ ଯାଏ, ତାହା ହେଲେ କଣ କିଛି ମନ୍ଦ କାର୍ଯ୍ୟ ହେବ ?" ଦୁର୍ଯ୍ୟୋଧନଙ୍କୁ ବଦ୍ଧ କରିବା ମନ୍ଦ କାର୍ଯ୍ୟ ହୁଏ ନାହିଁ, କାରଣ, ଅନେକଙ୍କ ହିତ ନିମିତ୍ତ ଜଣକୁ ପରିତ୍ୟାଗ କରିବା ଶ୍ରେୟ ବୋଲି କୃଷ୍ଣ ସ୍ୱୟଂ ଧୃତରାଷ୍ଟ୍ରଙ୍କୁ ପରାମର୍ଶ ଦେଇଛନ୍ତି ଯେ, ଏହାଙ୍କୁ ବଦ୍ଧ କର । ତେବେ କୃଷ୍ଣ ଏକ୍ଷଣି ସ୍ୱୟଂ ଏ କାମ କଲେ କ୍ରୋଧବଶତଃର ସେ ଏହା କରୁଛନ୍ତି, ଏହା ବୁଝାଇବ । କାରଣ, ଏପର୍ଯ୍ୟନ୍ତ ସେ ନିଜେ ତାଙ୍କୁ ବଦ୍ଧ କରିବାର ଅଭିପ୍ରାୟ କରି ନାହାନ୍ତି । କ୍ରୋଧ ଯହିଁରେ ପ୍ରବର୍ତ୍ତିତ କରେ ତାହା ପାପବୁଦ୍ଧିଜନିତ, ସୁତରାଂ ଆଦର୍ଶ ପୁରୁଷ ପକ୍ଷରେ ନିନ୍ଦିତ ଓ ପରିହାର୍ଯ୍ୟ କର୍ମ ।

ଅଦ୍ଭୁତ କଛି ହିଁ ନାହିଁ ଓ ଅବିଶ୍ୱାସର କାରଣ ମଧ୍ୟ କଛି ନାହିଁ, କନ୍ତୁ ଆଗନ୍ତୁକ କଣ୍ଟିପୂନ ନିପୀଡିତ ପ୍ରକ୍ଷିପ୍ତକାରୀଙ୍କ ଜ୍ଞାତ ଗୋଷ୍ଠୀ ଏହା କଦାପି ସହ୍ୟ କରି ପାରନ୍ତି ନାହିଁ । ଏପରି ଗୋଟିଏ ମହଦ୍‌ବ୍ୟାପାର ଭିତରେ ଗୋଟାଏ ଅନୈସର୍ଗିକ ଅଦ୍ଭୁତ କାଣ୍ଡ ପ୍ରବିଷ୍ଟ ନ କରାଇଲେ କୃଷ୍ଣଙ୍କ ଈଶ୍ୱରତ୍ୱ ରକ୍ଷା ହେବ କପରି ? ବୋଧ ହୁଏ,ଏହିପରି ଭାବ ଶମ୍ଭ ସେମାନେ କୃଷ୍ଣଙ୍କ ହାସ୍ୟ ଓ ନିଷ୍କ୍ରାନ୍ତ ମଧ୍ୟରେ ଗୋଟିଏ ବିଶ୍ୱରୂପ ପ୍ରକାଶ ପ୍ରକ୍ଷିପ୍ତ କରିଅଛନ୍ତି ଏଇ ମହାଭାରତରେ ଭୀଷ୍ମପର୍ବର ଭଗବଦ୍‌ଗୀତା ପର୍ବାଧ୍ୟାୟରେ (ତାହା ପ୍ରକ୍ଷିପ୍ତ ହେଉ ବା ନ ହେଉ) ଆଉ ଥରେ ବିଶ୍ୱରୂପ ପ୍ରଦର୍ଶନ ବର୍ଣ୍ଣିତ ଅଛି । ସେଇ ବିଶ୍ୱରୂପବର୍ଣ୍ଣନାରେ ଆଉ ଏଇ ବର୍ଣ୍ଣନାରେ କି ବିସ୍ମୟକର ପ୍ରଭେଦ ! ଗୀତାର ଏକାଦଶର ବିଶ୍ୱରୂପ ବର୍ଣ୍ଣନା ପ୍ରଥମ ଶ୍ରେଣୀ କବିଙ୍କ ରଚନା; ସାହିତ୍ୟ ଜଗତ୍‌ଖୋଜି ବୁଲିଲେ ସେପରି ଆଉକଛି ପାଇବା ଦୁର୍ଲ୍ଲଭ । ଆଉ ଭଗବଦ୍‌ଯାନ ପର୍ବାଧ୍ୟାୟରେ ଏଇ ବିଶ୍ୱରୂପବର୍ଣ୍ଣନା ଯାହାଙ୍କ ରଚିତ, କାବ୍ୟରଚନା ତାଙ୍କ ପକ୍ଷରେ ବିଡ଼ମ୍ବନା ମାତ୍ର । ଭଗବଦ୍‌ଗୀତାର ଏକାଦଶରେ ପଢ଼ୁଁ ଯେ, ଭଗବାନ ଅର୍ଜ୍ଜୁନଙ୍କୁ କହୁଛନ୍ତି, "ତୁମ ଛଡ଼ା ଆଉ କେହିହେଲେ ଏହା ପୂର୍ବେ ନିରୀକ୍ଷଣ କରି ନାହିଁ ।" କନ୍ତୁ ତତ୍‌ପୂର୍ବେ ଏଠାରେ ଦୁର୍ଯ୍ୟୋଧନାଦି କୌରବସଭାସ୍ଥ ସମସ୍ତ ଲୋକମାନେ ବିଶ୍ୱରୂପ ନିରୀକ୍ଷଣ କଲେ । ଭଗବାନ୍ ଗୀତାର ଏକାଦଶରେ ଅଧିକ କହୁଛନ୍ତି, "ତୁମ ଛଡ଼ା ମନୁଷ୍ୟଲୋକରେ ଆଉ କେହି ବେଦାଧ୍ୟୟନ, ଯଜ୍ଞାନୁଷ୍ଠାନ, ଦାନ, କ୍ରିୟାକଳାପ, ଲୟ ଓ ଅତି କଠୋର ତପସ୍ୟା ଦ୍ୱାରା ମୋର ଈଦୃଶ ରୂପ ଅବଲୋକନ କରିବାକୁ ସମର୍ଥ ହୁଏ ନାହିଁ ।" କନ୍ତୁ କୁରୁକଙ୍କ ହାତରେ

ପଡ଼, ଏଠାରେ ବିଶ୍ୱରୂପ ଯାହା ତାହା ପ୍ରତ୍ୟକ୍ଷୀଭୂତ ହେଲା । ଗୀତାରେ ଆଜ ମଧ୍ୟ କଥିତ ହୋଇ ଅଛି, "ଅନନ୍ୟସାଧାରଣ ଭକ୍ତି ପ୍ରଦର୍ଶନ କଲେହିଁ ମତେ ଏଇରୂପେ ଜ୍ଞାତ ହୋଇ ପାରିପାଏ, ଏବଂ ମତେ ଦର୍ଶନ ଏବଂ ମୋଠାରେ ପ୍ରବେଶ କରିବାକୁ ସମର୍ଥ ହୁଏ ।" କିନ୍ତୁ ଏଠାରେ ଦୁଷ୍କୃତକାରୀ ପାପାତ୍ମା ଭକ୍ତିଶୂନ୍ୟ ଶତ୍ରୁଗଣମଧ୍ୟ ତାହା ନିରୀକ୍ଷଣ କଲେ ।

ନିଷ୍ପ୍ରୟୋଜନରେ କୌଣସି କର୍ମ ମୂର୍ଖମଧ୍ୟ କରେ ନାହିଁ, ଯେ ବିଶ୍ୱରୂପୀ, ତାଙ୍କର ତ କଥାହିଁ ନାହିଁ, ଏଠାରେ ବିଶ୍ୱରୂପ ପ୍ରକାଶର କିଛି ମାତ୍ର ପ୍ରୟୋଜନ ହୋଇ ନାହିଁ । ଦୁର୍ଯ୍ୟୋଧନାଦି ବଳପ୍ରୟୋଗର ପରାମର୍ଶ କରୁଥିଲେ, ବଳପ୍ର-ୟୋଗର କୌଣସି ଉଦ୍ୟମ କରି ନାହାନ୍ତି । ପିତା ଓ ପିତୃବ୍ୟ କର୍ତ୍ତୃକ ତିରସ୍କୃତ ହୋଇ ଦୁର୍ଯ୍ୟୋଧନ ନିରୁତ୍ତର ହୋଇଥିଲେ । ବଳପ୍ରକାଶର କୌଣସି ଉଦ୍ୟମ କଲେ ମଧ୍ୟ, ସେ ବଳ ନିଶ୍ଚିତ ବ୍ୟର୍ଥ ହୁଅନ୍ତା, ଏହା କୃଷ୍ଣଙ୍କୁ ଅଗୋଚର ନଥିଲା । ସେ ନିଜେ ଏତାଦୃଶ ବଳଶାଳୀ ଯେ, ବଳଦ୍ୱାରା କେହି ତାଙ୍କ ନିଗ୍ରହ କରି ପାରେ ନାହିଁ । ଧୃତରାଷ୍ଟ୍ର ଏହା କହିଲେ, ବିଦୁର କହିଲେ, ଏବଂ କୃଷ୍ଣ ନିଜେ ମଧ୍ୟ କହିଲେ । କୃଷ୍ଣଙ୍କ ନିଜ ବଳ ଆତ୍ମ ରକ୍ଷା-ପକ୍ଷେ ପ୍ରଚୁର ନ ହୋଇ ଥିଲେ ସୁଦ୍ଧ କୌଣସି ଶଙ୍କା ନଥିଲା, କାରଣ ସାତ୍ୟକି କୃତବର୍ମା ପ୍ରଭୃତି ମହାବଳପରାକ୍ରାନ୍ତ ବୃଷ୍ଣିବଂଶୀୟମାନେ ତାଙ୍କ ସାହାଯ୍ୟ ନିମିତ୍ତ ଉପସ୍ଥିତ ଥିଲେ । ସେମାନଙ୍କ ସୈନ୍ୟ ମଧ୍ୟ ରାଜଦ୍ୱାରରେ ନିୟୋଜିତ ଥିଲେ । ଦୁର୍ଯ୍ୟୋଧନଙ୍କ ସୈନ୍ୟ ଉପସ୍ଥିତ ଥିବା କଥା କିଛି ଦେଖା ଯାଏ ନାହିଁ । ଅତଏବ ବଳଦ୍ୱାରା ନିଗ୍ରହର ଚେଷ୍ଟା ଫଳବତୀ

ହେବାର କୌଣସି ସମ୍ଭାବନା ନଥିଲା, ସମ୍ଭାବନାର ଅଭାବରେ ସୁଦ୍ଧା ଭୀତ ହେବେ, କୃଷ୍ଣ ଏପରି କାପୁରୁଷ ନୁହନ୍ତି। ଯେ ବିଶ୍ୱରୂପ, ତାଙ୍କର ଏପରି ଭୟର ସମ୍ଭବନା ନାହିଁ। ଅତଏବ ବିଶ୍ୱରୂପ ପ୍ରକାଶର କୌଣସି କାରଣନଥିଲା। ଏ ଅବସ୍ଥାରେ ଶୁଦ୍ଧ ବା ଧାର୍ମିକ ବ୍ୟକ୍ତି ଭିନ୍ନ ଶତ୍ରୁକୁ ଭୟ ଦେଖାଇବାର କେହି ଚେଷ୍ଟା କରେ ନାହିଁ, ଯେ ବିଶ୍ୱରୂପ, ସେ କ୍ରୋଧଶୂନ୍ୟ ଏବଂ ଦମ୍ଭଶୂନ୍ୟ।

ଅତଏବ ଏଠାରେ ବିଶ୍ୱରୂପର କଥାଟା କୁକବିଙ୍କ ପ୍ରଣୀତ ଅଳୀକ ଉପନ୍ୟାସ ବୋଲି ତ୍ୟାଗ କରିବାର ବିଧେୟ। ମୁଁ ପୁନଃ ପୁନଃ ଦେଖାଇ ଅଛି, ମାନୁଷୀ ଶକ୍ତି ଅବଲମ୍ବନ କରି କୃଷ୍ଣ କର୍ମ କରନ୍ତି, ଐଶୀ ଶକ୍ତି ଦ୍ୱାରା ନୁହେଁ। ଏଠାରେ ତାହାର ଅତିକ୍ରମ ହୋଇଥିଲା, ଏରୂପ ବିବେଚନା କରିବାର କୌଣସି କାରଣ ନାହିଁ।

କୁରୁସଭାରୁ କୃଷ୍ଣ କୁନ୍ତୀସମ୍ଭାଷଣରେ ଗଲେ। ସେଠାରୁ ସେ ଉପପ୍ଳବ୍ୟ ନଗରକୁ, ଯେଉଁଠାରେ ପାଣ୍ଡବମାନେ ଅବସ୍ଥାନ କରୁଥିଲେ, ସେଠାକୁ ଯାତ୍ରା କଲେ। ଯାତ୍ରାକାଳରେ କର୍ଣ୍ଣଙ୍କୁ ନିଜ ରଥରେ ଉଠାଇ ନେଲେ।

ଯେଉଁମାନେ କୃଷ୍ଣଙ୍କୁ ନିଗ୍ରହ କରିବା ନିମିତ୍ତ ପରାମର୍ଶ କରୁଥିଲେ, କର୍ଣ୍ଣ ସେମାନଙ୍କ ମଧ୍ୟରେ ଜଣେ; ତେବେ କର୍ଣ୍ଣଙ୍କୁ କୃଷ୍ଣ ସ୍ୱରଥରେ ଆରୋହଣ କରାଇ ଗଲେ, କାହିଁକି ତାହାପର ପରିଚ୍ଛେଦରେ କହିବି। ସେ କଥାରେ କୃଷ୍ଣଚରିତ୍ର ପରିସ୍ଫୁଟ ହୁଏ। ସାମ ଓ ଦଣ୍ଡନୀତିରେ କୃଷ୍ଣଙ୍କ ନୀତିଜ୍ଞତା ଦେଖିଅଛୁଁ। ବର୍ତ୍ତମାନ ଭେଦନୀତିରେ ତାଙ୍କ ପାରଦର୍ଶିତା ଦେଖିବା। ସେଥି ସଙ୍ଗେ ଏହାବି ଦେଖିବ। ଯେ; କୃଷ୍ଣ ଆଦର୍ଶ

ପୁରୁଷ କାରଣ, ତାଙ୍କ ଦୟା, ଜୀବର ହିତକାମନା, ଏବଂ ବୁଦ୍ଧି ସମସ୍ତଙ୍କ ଲୋକାତୀତ ।

## ଅଷ୍ଟମ ପରିଚ୍ଛେଦ ।

## କୃଷ୍ଣ କର୍ଣ୍ଣ-ସଂବାଦ

କୃଷ୍ଣ ସର୍ବଭୂତରେ ଦୟାମୟ । ଏହି ମହାଯୁଦ୍ଧଜନିତ ଯେ ଅସଂଖ୍ୟ ପ୍ରାଣୀକ୍ଷୟ ହେବ, ସେଥିରେ ଆଉ କୌଣସି କ୍ଷତ୍ରିୟ ବ୍ୟଥିତ ନୁହନ୍ତି, କେବଳ କୃଷ୍ଣଙ୍କ ବ୍ୟଥିତ । ଯେତେବେଳେ ପ୍ରଥମେ ବିରାଟ ନଗରରେ ଯୁଦ୍ଧର ପ୍ରସ୍ତାବ ହୁଏ, ସେତେବେଳେ କୃଷ୍ଣ ଯୁଦ୍ଧର ବିରୁଦ୍ଧରେ ମତ ଦେଇଥିଲେ । ଅର୍ଜୁନ ତାଙ୍କୁ ଯୁଦ୍ଧରେ ବରଣ କରିବାକୁ ଗଲେ କୃଷ୍ଣ ଏ ଯୁଦ୍ଧରେ ଅସ୍ତ୍ର ଧରିବେ ନାହିଁ ଓ ଯୁଦ୍ଧ କରିବେ ନାହିଁ ବୋଲି ପ୍ରତିଜ୍ଞା କଲେ କିନ୍ତୁ ସେଥିରେ ମଧ୍ୟ ଯୁଦ୍ଧ ବନ୍ଦ ହେଲା ନାହିଁ । ଅତଏବ ଉପାୟାନ୍ତର ନ ଦେଖି ଭରସାଶୂନ୍ୟ ହୋଇ ମଧ୍ୟ, ସନ୍ଧି ସ୍ଥାପନ ନିମିତ୍ତ ଧୃତରାଷ୍ଟ୍ର-ସଭାକୁ ଗଲେ । ସେଥିରେ ମଧ୍ୟ କିଛି ହେଲା ନାହିଁ, ପ୍ରାଣୀହିଂସା ନିବାରଣ ହେଉନାହିଁ । ସେତେବେଳେ ରାଜନୀତିଜ୍ଞ କୃଷ୍ଣ ଜନସମୂହର ରକ୍ଷାର୍ଥ ଉପାୟାନ୍ତର ଉଦ୍ଭାବନରେ ପ୍ରବୃତ୍ତ ହେଲେ ।

କର୍ଣ୍ଣ ମହାବୀର ପୁରୁଷ । ସେ ଅର୍ଜୁନଙ୍କ ସମକକ୍ଷ ରଥୀ । ତାଙ୍କ ବାହୁବଳରେହିଁ ଦୁର୍ଯୋଧନ ନିଜକୁ ବଳବାନ୍ ମନେ କରନ୍ତି । ତାଙ୍କର ବଳ ଉପରେ ନିର୍ଭର କରି ପ୍ରଧାନତଃ ସେ ପାଣ୍ଡବମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ପ୍ରବୃତ୍ତ । କର୍ଣ୍ଣଙ୍କ ସାହାଯ୍ୟ ନପାଇଲେ ସେ କଦାପି ଯୁଦ୍ଧରେ ପ୍ରବୃତ୍ତ ହେବେ ନାହିଁ ।

କର୍ଣ୍ଣଙ୍କୁ ତାଙ୍କ ଶତ୍ରୁପକ୍ଷର ସାହାଯ୍ୟରେ ପ୍ରବୃତ୍ତ ଦେଖିଲା ମାତ୍ରେ ଅବଶ୍ୟ ସେ ଯୁଦ୍ଧରୁ ନିବୃତ୍ତ ହେବେ । ସେ ଯେପରି ତାହା ଘଟେ ତାହା କରିବା ନିମିତ୍ତ କର୍ଣ୍ଣଙ୍କୁ ନିଜ ରଥରେ ଉଠାଇ ନେଲେ । କର୍ଣ୍ଣଙ୍କ ସହିତ ବିରଳରେ କଥୋପକଥନ ଆବଶ୍ୟକ । କୃଷ୍ଣଙ୍କ ଏହି ଅଭିପ୍ରାୟ ସିଦ୍ଧିର ଉପଯୋଗୀ ଅନ୍ୟର ଅଜ୍ଞାତ ସହଜ ଉପାୟ ମଧ୍ୟ ଥିଲା ।

କର୍ଣ୍ଣ ଅଧିରଥ ନାମକ ସୂତର ପୁତ୍ର ବୋଲି ପରିଚିତ ବସ୍ତୁତଃ ସେ ଅଧିରଥଙ୍କ ପୁତ୍ର ନୁହନ୍ତି—ପାଳିତ ପୁତ୍ର ମାତ୍ର । ତାହା ସେ ଜାଣନ୍ତେ ନାହିଁ । ତାଙ୍କ ନିଜ ଜନ୍ମ ବୃତ୍ତାନ୍ତ ସେ ଅବଗ-ତ ନଥିଲେ । ସେ ସୂତପତ୍ନୀ ରାଧାଙ୍କ ଗର୍ଭଜାତ ନ ହୋଇ, କୁନ୍ତୀଙ୍କ ଗର୍ଭଜାତ ସୂର୍ଯ୍ୟଙ୍କ ଔରସରେ ତାଙ୍କ ଜନ୍ମ । ତେବେ କୁନ୍ତୀଙ୍କ କନ୍ୟାକାଳରେ ତାଙ୍କ ଜନ୍ମ ହୋଇଥିଲା ବୋଲି, କୁନ୍ତୀ, ପୁତ୍ର ଭୂମିଷ୍ଠ ହେବା ପରେ ପରେ ତାଙ୍କୁ ପରିତ୍ୟାଗ କରିଥିଲେ । ବସ୍ତୁତଃ ସେ ଯୁଧିଷ୍ଠିରାଦି ପାଣ୍ଡବମାନଙ୍କ ସହୋଦର ଓ ଜ୍ୟେଷ୍ଠ ଭ୍ରାତା । ଏ କଥା କୁନ୍ତୀ ଭିନ୍ନ ଆଉ କେହି ଜାଣନ୍ତି ନାହିଁ । ଆଉ କୃଷ୍ଣ ଜାଣିଥିଲେ; ତାଙ୍କର ଅଲୌକିକ ବୁଦ୍ଧି ନିକଟରେ ସମସ୍ତ କଥା ସହଜରେ ପ୍ରତିଭାତ ହେଉଥିଲା । କୁନ୍ତୀ ତାଙ୍କ ପିତୃଷ୍ୱସା; ଭୋଜବଂଶଗୃହରେ ଏ ଘଟନା ହୁଏ, ଅତଏବ କୃଷ୍ଣ ମନୁଷ୍ୟବୁଦ୍ଧିରେହିଁ ଏହା ଜାଣି ପାରିବା ଅସମ୍ଭବ ନୁହେଁ ।

କୃଷ୍ଣ ଏହି କଥା ବର୍ତ୍ତମାନ ରଥାରୂଢ଼ କର୍ଣ୍ଣଙ୍କୁ ଶୁଣାଇଲେ । କହିଲେ, "ଶାସ୍ତ୍ରଜ୍ଞମାନେ କହନ୍ତି, ଯେ ଯେଉଁ କନ୍ୟାର ପ୍ରଣିଗ୍ରହଣ କରନ୍ତି, ସେହି ସେହି କନ୍ୟାର ସହୋଢ଼ ଓ କାନୀନପୁତ୍ରର ପିତା ହେ କର୍ଣ୍ଣ ! ତୁମେ ବି ତୁମ ଜନନୀର କନ୍ୟାବସ୍ଥାରେ ସମୁ-ତ୍ପନ୍ନ ହୋଇଅଛ, ତନ୍ନିମିତ୍ତ ତୁମେ ଧର୍ମତଃ ପୁତ୍ର; ଅତଏବ

ଡଲ, ଧର୍ମଶାସ୍ତ୍ରର ବିରୁଦ୍ଧରେ ସୁଦ୍ଧା * ତୁମେ ରାଜ୍ୟେଶ୍ୱର ହେବ।" ସେ କର୍ଣ୍ଣଙ୍କୁ ବୁଝାଇ ଦେଲେ ଯେ, ସେ ଜ୍ୟେଷ୍ଠ, ଏ ନିମିତ୍ତ ସେଇ ରାଜା ହେବେ, ଅପର ପଞ୍ଚପାଣ୍ଡବ ତାଙ୍କ ଆଜ୍ଞାନୁବର୍ତ୍ତୀ ହୋଇ ତାଙ୍କ ପରିଚର୍ଯ୍ୟାରେ ନିଯୁକ୍ତ ରହିବେ।

କୃଷ୍ଣଙ୍କ ଏହି ପରାମର୍ଶ ସର୍ବଜନର ଧର୍ମବୃଦ୍ଧିକର ଓ ହିତକର। ପ୍ରଥମତଃ କର୍ଣ୍ଣଙ୍କ ପକ୍ଷେ ହିତକର, କାରଣ, ସେ ରାଜ୍ୟେଶ୍ୱର ହେବେ, ଏବଂ ତାଙ୍କ ପକ୍ଷରେ ଧର୍ମାନୁଗତ, କାରଣ ଭ୍ରାତୃଗଣଙ୍କ ପ୍ରତି ଶତ୍ରୁଭାବ ପରିତ୍ୟାଗ କରି ମିତ୍ର ଭାବ ଅବଲମ୍ବନ କରିବେ। ଏହା ଦୁର୍ଯ୍ୟୋଧନାଦିଙ୍କ ପକ୍ଷରେ ମଧ୍ୟ ପରମ ହିତକର। କାରଣ, ଯୁଦ୍ଧ ହେଲେ ସେମାନେ କେବଳ ରାଜ୍ୟ-

---

*"ବିରୁଦ୍ଧରେ ସୁଦ୍ଧା" ଏହି ପଦଟି କାଳୀପ୍ରସନ୍ନ ସିଂହଙ୍କ ଅନୁବାଦରେ ଅଛି, କିନ୍ତୁ ଏହା ଏଠାରେ ଅସଙ୍ଗତ ବୋଲି, ବୋଧହୁଏ। ମୋ ନିକଟରେ ମୂଳ ମହାଭାରତ ଯାହା ଅଛି, ସେଥିରେ ଦେଖିଲି, ନିଗ୍ରହଧର୍ମଶାସ୍ତ୍ରାଣାମ୍ ଅଛି। ବୋଧହୁଏ ନିଗ୍ରହାର୍ଥମଶାସ୍ତ୍ରାଣାମ୍ ହେବ। ତାହାହେଲେ ଅର୍ଥ ସଙ୍ଗତ ହୁଏ। [ଫୁଟନୋଟ— ଏହି ଅଂଶ ଛପା ହେବା ପରେ ଜାଣି ପାରିଲି ଯେ, ଏହାର ଅନ୍ୟତର ପାଠ ଅଛି,

ଯଥା— "ନିଗ୍ରହାଦ୍ଧର୍ମଶାସ୍ତ୍ରାଣାମ୍।" ଏ ସ୍ଥାନରେ ନିଗ୍ରହ ଅର୍ଥ ମର୍ଯ୍ୟାଦା। ଯଥା—

"ନିଗ୍ରହୋ ଭର୍ତ୍ସନେଽପି ସ୍ୟାତ୍ ମର୍ଯ୍ୟାଦାୟାଞ୍ଚ ବନ୍ଧନେ।" ଇତି ମେଦିନୀ।

"ନିଗ୍ରହୋ ଭର୍ତ୍ସନେ ପ୍ରୋକ୍ତୋ ମର୍ଯ୍ୟାଦାୟାଞ୍ଚ ବନ୍ଧନେ।" ଇତି ବିଶ୍ୱଃ।

"ନିୟମେନ ବନ୍ଧନା ଗ୍ରହଣଂ ନିଗ୍ରହଃ।" ଇତି ଭରତମଲ୍ଲିକଃ।]

ଭ୍ରଷ୍ଟ ନୁହନ୍ତି, ସର୍ବଂଶରେ ନିପାତପ୍ରାପ୍ତ ହେବାରହିଁ ସମ୍ଭାବନା । ଯୁଦ୍ଧ ନହେଲେ ସେମାନଙ୍କ ପ୍ରାଣ ବଞ୍ଚାଯିବ ରହିବ, ରାଜ୍ୟବି ବଞ୍ଚାଯିବ ରହିବ, କେବଳ ପାଣ୍ଡବଙ୍କ ଭାଗ ଫେରାଇ ଦେବାକୁ ହେବ ଏଥିରେ ପାଣ୍ଡବମାନଙ୍କର ହିତ ଓ ଧର୍ମ, କାରଣ, ଯୁଦ୍ଧରୂପ ନୃଶଂସ ବ୍ୟାପାରରେ ପ୍ରବୃତ୍ତ ନ ହୋଇ, ଆତ୍ମୀୟ ସ୍ୱଜନ ଜ୍ଞାତି ବଧ ନ କରି ମଧ୍ୟ, ସ୍ୱରାଜ୍ୟ କର୍ଣ୍ଣଙ୍କ ସହିତ ଭୋଗ କରିବେ । ଆଉ ଏ ପରାମର୍ଶର ପରମ ଧର୍ମ୍ମ୍ୟତା ଓ ହିତବାଦିତା ଏହି ଯେ, ଏହାଦ୍ୱାରା ଅସଂଖ୍ୟ ମନୁଷ୍ୟ ମାନଙ୍କର ପ୍ରାଣ ରକ୍ଷା ହୋଇ ପାରିବ ।

କର୍ଣ୍ଣ ମଧ୍ୟ କୃଷ୍ଣଙ୍କ କଥାର ଉପଯୋଗିତା ସ୍ୱୀକାର କଲେ । ସେ ବି ବୁଝିଥିଲେ ଯେ,—ଏ ଯୁଦ୍ଧରେ ଦୁର୍ଯ୍ୟୋଧନାଦିଙ୍କର ରକ୍ଷା ନାହିଁ । କିନ୍ତୁ କୃଷ୍ଣଙ୍କ କଥାରେ ସମ୍ମତ ହେଲେ ତାଙ୍କୁ କୌଣସି କୌଣସି ଗୁରୁତର ଅପରାଧରେ ଅପରାଧୀ ହେବାକୁ ହୁଏ । ଅଧିରଥ ଓ ରାଧା ତାଙ୍କୁ ପ୍ରତିପାଳନ କରିଛନ୍ତି । ସେମାନଙ୍କ ଆଶ୍ରୟରେ ଥାଇ ସେ ସୂତବଂଶର ବିବାହ କରିଛନ୍ତି, ଏବଂ ସେହି ଭାର୍ଯ୍ୟାଙ୍କ ଠାରୁ ତାଙ୍କର ପୁତ୍ର ପୌତ୍ରାଦି ଜନ୍ମିଅଛି, ସେମାନଙ୍କୁ କର୍ଣ୍ଣ କୌଣସି ମତେ ପରିତ୍ୟାଗ କରି ନ ପାରନ୍ତି । ଆଉ ସେ ତ୍ରୟୋଦଶ ବର୍ଷ ଦୁର୍ଯ୍ୟୋଧନଙ୍କ ଆଶ୍ରୟରେ ରହି ରାଜ୍ୟଭୋଗ କରି ଅଛନ୍ତି; ଦୁର୍ଯ୍ୟୋଧନ ତାହାଙ୍କରହିଁ ଭରସା କରନ୍ତି; ବର୍ତ୍ତମାନ ଦୁର୍ଯ୍ୟୋଧନଙ୍କୁ ପରିତ୍ୟାଗ କରି ପାଣ୍ଡବପକ୍ଷକୁ ଗଲେ ଲୋକେ ତାଙ୍କୁ କୃତଘ୍ନ, ପାଣ୍ଡବମାନଙ୍କର ଐଶ୍ୱର୍ଯ୍ୟ ଲୋଲୁପ ବା ସେମାନଙ୍କ ଭୟରେ ଭୀତ କାପୁରୁଷ କହିବେ । ଏଥି ନିମିତ୍ତ କର୍ଣ୍ଣ କୌଣସି ମତେ କୃଷ୍ଣଙ୍କ କଥାରେ ସମ୍ମତ ହେଲେ ନାହିଁ ।

କୃଷ୍ଣ କହିଲେ, "ଯେତେବେଳେ ମୋ କଥା ତୁମର ହୃଦୟଙ୍ଗମ ହେଲା ନାହିଁ, ସେତେବେଳେ ନିଶ୍ଚୟ ଏହି ବସୁନ୍ଧରାର ସଂହାରଦଶା ଉପସ୍ଥିତ ହୋଇଅଛି।"

କର୍ଣ୍ଣ ଉପଯୁକ୍ତ ଉତ୍ତର ଦେଇ, କୃଷ୍ଣଙ୍କୁ ଗାଢ଼ ଆଲିଙ୍ଗନ କରି ବିଷର୍ଣ୍ଣ ଭାବରେ ବିଦାୟ ଗ୍ରହଣ କଲେ।

କୃଷ୍ଣଚରିତ୍ର ବୁଝିବା ନିମିତ୍ତ କର୍ଣ୍ଣଚରିତ୍ରର ବିସ୍ତାରିତ ସମାଲୋଚନାରେ ପ୍ରୟୋଜନ ନାହିଁ, ଏଣୁ ମୁଁ ତତ୍‌ସମ୍ବନ୍ଧରେ କିଛି କହିଲି ନାହିଁ। କର୍ଣ୍ଣଚରିତ୍ର ଅତି ମହତ୍‌ ଓ ମନୋହର।

## ନବମ ପରିଚ୍ଛେଦ

## ଉପସଂହାର।

କୃଷ୍ଣ ଉପପ୍ଲବ୍ୟ ନଗରକୁ ଫେରି ଆସିଲେ, ଯୁଧିଷ୍ଠିରାଦି ପଚାରିଲେ, ତୁମେ ହସ୍ତିନାପୁରରେ କଣ କରିଥିଲ କୁହ।

କୃଷ୍ଣ ଯାହା କହିଥିଲେ, ଏବଂ ଅନ୍ୟମାନେ ଯାହା କହିଥିଲେ ତାହା କହିବାକୁ ଲାଗିଲେ। କିନ୍ତୁ ସେ ସବୁ ବକ୍ତୃତାର ପୂର୍ବ ପୂର୍ବ ଅଧ୍ୟାୟରେ ଯେରୂପ ବର୍ଣ୍ଣନା ଦେଖିଅଛି, ଏଠାରେ ତାହା ସହିତ ମେଳ ନାହିଁ। କାହା ସହିତ କେହି ମିଳେ ନାହିଁ। ମିଳିଲେ ଫାର୍ଗ ପୁନରୁକ୍ତି ଘଟନ୍ତା। ସେଥିରୁ ଉଦ୍ଧାର ପାଇବା ନିମିତ୍ତ କୌଣସି ମହାପୁରୁଷ କିଛି ନୂତନ ରକମ ବସାଇ ଦେଇଛନ୍ତି ବୋଧ ହୁଏ।

ଏହିଠାରେ ଭଗବଦ୍‌ଯାନ—ପର୍ବାଧ୍ୟାୟ ସମାପ୍ତ। ତାର ପରେ ସୈନ୍ୟନିର୍ଯାଣ—ପର୍ବାଧ୍ୟାୟ। ଏଥିରେ ବିଶେଷ କଥା

କିଛି ନାହିଁ । କେତେଗୁଡ଼ାଏ ମୌଳିକ କଥା ଅଛି, କେତେଗୁଡ଼ାଏ ଅମୌଳିକ; କୃଷ୍ଣସମ୍ବନ୍ଧୀୟ କଥା ବଡ଼ ଅଳ୍ପ । କୃଷ୍ଣ ଓ ଅର୍ଜ୍ଜୁନଙ୍କ ପରାମର୍ଶାନୁସାରେ, ପାଣ୍ଡବମାନେ ଧୃଷ୍ଟଦ୍ୟୁମ୍ନଙ୍କୁ ସେନାପତି ନିଯୁକ୍ତ କଲେ, ଏବଂ ବଳରାମ ମଦ ପିଇ ଆସି କୃଷ୍ଣଙ୍କୁ କିଛି ମିଷ୍ଟ ଭର୍ତ୍ସନା କଲେ, କାରଣ, ସେ କୁରୁପାଣ୍ଡବଙ୍କୁ ସମାନ ଜ୍ଞାନ କରନ୍ତି ନାହିଁ । କୁରୁ ସଭାରେ ଯାହା ଘଟିଥିଲା, ସେ କଥା ବି କିଛି ହେଲା । ଏହା ଛଡ଼ା ଆଉ କିଛି ନାହିଁ ।

ତାହାର ପରେ ଉଲୂକଦୂତାଗମନ—ପର୍ବାଧ୍ୟାୟ । ଏଟି ନିତାନ୍ତ ଅକିଞ୍ଚିତ୍କର । ଏଥିରେ ଆଉ କିଛି ନାହିଁ, କେବଳ ଉଭୟ ପକ୍ଷରେ ଗାଳିଗୁଲଜ । ଦୁର୍ଯ୍ୟୋଧନ, ଶକୁନି ପ୍ରଭୃତିଙ୍କ ପରାମର୍ଶରେ ଉଲୂକକୁ ପାଣ୍ଡବମାନଙ୍କ ନିକଟକୁ ପଠାଇଲେ । ଉଦ୍ଦେଶ ଆଉ କିଛି ନୁହେଁ, କେବଳ ପାଣ୍ଡବମାନଙ୍କୁ ଓ କୃଷ୍ଣଙ୍କୁ ଖୁବ ଗାଳିଗୁଲଜ କରିବା ନିମନ୍ତେ । ଉଲୂକ ଆସି ଛଅ ଜଣଙ୍କୁ ଖୁବ ଗାଳି ଦେଲା । ପାଣ୍ଡବମାନେ ଉତ୍ତରରେ ଖୁବ ଗାଳି କଲେ କୃଷ୍ଣ ବିଶେଷ କିଛି କହିଲେ ନାହିଁ, ତାଙ୍କ ତୁଲ୍ୟ ରୋଷାମର୍ଷଶୂନ୍ୟ ବ୍ୟକ୍ତି ଗାଳିଗୁଲଜ କରନ୍ତି ନାହିଁ, ବରଂ ଗୋଟିଏ ରାଗାରାଗି ବଢ଼ି ବଢ଼ି ଯେପରି ନ ହୁଏ, ଏହି ଅଭିପ୍ରାୟରେ ପାଣ୍ଡବମାନେ ଉତ୍ତର ଦେବା ଆଗରୁ ସେ ଉଲୂକକୁ ବିଦାୟ କରିବାର ଚେଷ୍ଟା କଲେ । କହିଲେ, "ତୁମେ ଶୀଘ୍ର ଗମନ କରି ଦୁର୍ଯ୍ୟୋଧନଙ୍କୁ କହିବ— ପାଣ୍ଡବମାନେ ତୁମର ବାକ୍ୟ ଶ୍ରବଣ ଓ ତାହାର ଯଥାର୍ଥ ଅର୍ଥ ଗ୍ରହଣ କରିଅଛନ୍ତି । ବର୍ତ୍ତମାନ ତୁମର ଯେରୂପ ଅଭିପ୍ରାୟ ତାହାହିଁ ହେବ ।" ଅଥଚ ଗାଳିଗୁଲଜଟା କୃଷ୍ଣାର୍ଜ୍ଜୁନଙ୍କ ଭାଗରେ ବେଶୀ ରକମ ହୋଇଥିଲା ।

କିନ୍ତୁ ଉଲୂକର ଦୁର୍ବୁଦ୍ଧି, ଉଲୂକ ଛାଡ଼େ ନାହିଁ । ପୁଣି ଗାଳଗୁଲଜ ଆରମ୍ଭ କଲା । ନ ହେବ କାହିଁକି ? ଏ ମହାଶୟ ଦୁର୍ଯ୍ୟୋଧନଙ୍କ ସହୋଦର । ସେତେବେଳେ ପାଣ୍ଡବମାନେ ଏକ ଏକ କରି ଉଲୂକର ଉତ୍ତର ଦେଲେ । ଉଲୂକକୁ ସୁଧ ସ୍ମେତ ଅସଲ ଫେରାଇ ଦେଲେ । କୃଷ୍ଣ ମଧ୍ୟ ଗୋଟାଏ କଥା କହିଲେ, "ମୁଁ ଅର୍ଜ୍ଜୁନଙ୍କ ସାରଥ୍ୟ ସ୍ୱୀକାର କରିଅଛି ବୋଲି ଯୁଦ୍ଧ କରିବି ନାହିଁ, ଏହା ମନରେ ସ୍ଥିର କରି ଖୁସି ହେଉ ନାହିଁ ; କିନ୍ତୁ ଯେପରି ହୁତାଶନ ତୃଣ ସବୁ ଭସ୍ମସାତ୍ କରେ, ତଦ୍ରୂପ ମୁଁ ମଧ୍ୟ ଚରମ କାଳରେ କ୍ରୋଧଭରେ ସମସ୍ତ ପାର୍ଥିବ-ଗଣଙ୍କୁ ସଂହାର କରିବି ସନ୍ଦେହ ନାହିଁ ।"

ଉଲୂକଦୂତାଗମନ—ପର୍ବାଧ୍ୟାୟରେ ମହାଭାରତର କାର୍ଯ୍ୟ-ପକ୍ଷରେ କିଛିମାତ୍ର ପ୍ରୟୋଜନ ନାହିଁ । ଏଥିରେ ରଚନାର ନୈପୁଣ୍ୟ ବା କବିତ୍ୱ ନାହିଁ । ଏବଂ କୌଣସି କୌଣସି ସ୍ଥାନ ମହାଭାରତର ଅନ୍ୟାନ୍ୟ ଅଂଶ ସହିତ ବିରୁଦ୍ଧଭାବାପନ୍ନ, ଅନୁକ୍ର-ମଣିକାଧ୍ୟାୟରେ ସଞ୍ଜୟ ଏବଂ କୃଷ୍ଣଙ୍କ ଦୌତ୍ୟର କଥା ଅଛି, କିନ୍ତୁ ଉଲୂକଦୂତର କଥା ନାହିଁ । ଏହି ସବୁ କାରଣରୁ ଏହାକୁ ଆଦିମ ସ୍ତରାନ୍ତର୍ଗତ ବିବେଚନା ହୁଏ ନାହିଁ ।

ଏହା ପରେ ରଥାତିରଥସଂଖ୍ୟାନ, ଏବଂ ତତ୍ପରେ ଅମ୍ବୋ-ପାଖ୍ୟାନ—ପର୍ବାଧ୍ୟାୟ । ଏ ସବୁରେ କୃଷ୍ଣବୃତ୍ତାନ୍ତ କିଛିମାତ୍ର ନାହିଁ । ଏହିଠାରେ ଉଦ୍ୟୋଗପର୍ବ ସମାପ୍ତ ।

—୦—

# କୃଷ୍ଣ ଚରିତ୍ର

## ଷଷ୍ଠ ଖଣ୍ଡ

## କୁରୁକ୍ଷେତ୍ର

ଯୋ ନଷ୍ଟଶ୍ରେ ଭବେଦ୍ରାଜୌ ଧାବା ଭବତି ସର୍ବିତଃ ।
ଇଷ୍ଟାନିଷ୍ଟସ୍ୟ ଚ ଦ୍ରଷ୍ଟା ତସ୍ମୈ ଦ୍ରଷ୍ଟାତ୍ମନେ ନମଃ ॥

ଶାନ୍ତିପର୍ବ, ୪୭ ଅଧ୍ୟାୟ ।

## ପ୍ରଥମ ପରିଚ୍ଛେଦ

## ଭୀଷ୍ମଙ୍କ ଯୁଦ୍ଧ

ବର୍ତ୍ତମାନ କୁରୁକ୍ଷେତ୍ରର ମହାଯୁଦ୍ଧ ଆରମ୍ଭ ହେବ । ମହାଭାରତରେ ଚାରିଗୋଟି ପର୍ବରେ ଏହା ବର୍ଣ୍ଣିତ ହୋଇଅଛି । ଦୁର୍ଯ୍ୟୋଧନଙ୍କ ସେନାପତିମାନଙ୍କ ନାମାନୁସାରେ ଏହି ଚାରିଟି ପର୍ବର ନାମ ଭୀଷ୍ମପର୍ବ, ଦ୍ରୋଣପର୍ବ, କର୍ଣ୍ଣପର୍ବ ଓ ଶଲ୍ୟପର୍ବ ହୋଇଅଛି ।

ଏହି ଯୁଦ୍ଧପର୍ବ ଗୁଡ଼ିକୁ ମହାଭାରତର ନିକୃଷ୍ଟ ଅଂଶ ମଧ୍ୟରେ ଗଣ୍ୟ କରିବା ଉଚିତ । ପୁନରୁକ୍ତି, ଅକାରଣ ଏବଂ ଅରୁଚିକର ବର୍ଣ୍ଣନା ବାହୁଲ୍ୟ, ଅନୈସର୍ଗିକତା, ଅତ୍ୟୁକ୍ତି ଏବଂ ଅସଙ୍ଗତି ଦୋଷ ଏଗୁଡ଼ିକରେ ବେଶୀ । ଏହାର ଅଳ୍ପଭାଗ ମାତ୍ର ଆଦିମସ୍ତରଭୁକ୍ତ ବୋଲି ବୋଧ ହୁଏ । କିନ୍ତୁ କେଉଁ ଅଂଶ ମୌଳିକ, ଏବଂ କେଉଁ ଅଂଶ ଅମୌଳିକ, ସ୍ଥିର କରିବା ବଡ଼ ଦୁଷ୍କର । ଯେଉଁଠାରେ ସବୁ କଣ୍ଟାବଣ, ସେଠାରେ ପୁଷ୍ପଚୟନ ବଡ଼

ଦୁଃସାଧ୍ୟ । ତେବେ ଯେଉଁଠାରେ କୃଷ୍ଣଚରିତ୍ର ସମ୍ବନ୍ଧରେ କିଛି ଦେଖା ଯାଏ ତାହା ଆମେ ଯଥାସାଧ୍ୟ ବୁଝିବାକୁ ଚେଷ୍ଟା କରିବୁ ।

ଖ୍ରିଷ୍ଟପର୍ବର ପ୍ରଥମ ଜମ୍ବୁଖଣ୍ଡ—ବିନିର୍ମାଣ - ପର୍ବାଧ୍ୟାୟ । ତାହା ସହିତ ଯୁଦ୍ଧର କୌଣସି ସମ୍ବନ୍ଧ ନାହିଁ—ମହାଭାରତର ବି ବଡ଼ ଅଳ୍ପ । କୃଷ୍ଣଚରିତ୍ରର କୌଣସି କଥା ନାହିଁ । ତାର ପରେ ଭଗବଦ୍‌ଗୀତା—ପର୍ବାଧ୍ୟାୟ । ଏହାର ପ୍ରଥମ ଚବିଶ ଅଧ୍ୟାୟ ପରେ ଗୀତାରମ୍ଭ, ଏହି ଚବିଶ ଅଧ୍ୟାୟ ମଧ୍ୟରେ କୃଷ୍ଣ ସମ୍ବନ୍ଧୀୟ ବିଶେଷ କୌଣସି କଥା ନାହିଁ । କୃଷ୍ଣ ଯୁଦ୍ଧ ପୂର୍ବେ ଦୁର୍ଗାସ୍ତବ କରିବାକୁ ଅର୍ଜୁନଙ୍କୁ ପରାମର୍ଶ ଦେବାରୁ ଅର୍ଜୁନ ଯୁଦ୍ଧାରମ୍ଭକାଳରେ ଦୁର୍ଗାସ୍ତବ ପାଠ କଲେ । କୌଣସି ଗୁରୁତର କାର୍ଯ୍ୟ ଆରମ୍ଭ କରିବା ସମୟରେ ନିଜ ନିଜ ବିଶ୍ୱାସାନୁଯାୟୀ ଦେବତାର ଆରାଧନା କରି ତହିଁରେ ପ୍ରବୃତ୍ତ ହେବା କର୍ତ୍ତବ୍ୟ । ତାହା ହେଲେ ଈଶ୍ୱରଙ୍କ ଆରାଧନା ହେଲା, ଯାହା ବୋଲି ଡାକୁ ନା କାହିଁକି, ଏକ ଭିନ୍ନ ଈଶ୍ୱର ନାହିଁ । ତାର ପରେ ଗୀତା । ଏହାହିଁ କୃଷ୍ଣ ଚରିତ୍ରର ପ୍ରଧାନ ଅଂଶ । ଏହି ଗୀତୋକ୍ତ ଅନୁପମ ପବିତ୍ର ଧର୍ମ ପ୍ରବୃତ୍ତିହିଁ କୃଷ୍ଣଙ୍କ ଆଦର୍ଶ ମାନୁଷ୍ୟତ୍ୱ ବା ଦେବତ୍ୱର ଏକ ପ୍ରଧାନ ପରିଚୟ ।

କିନ୍ତୁ ଏଠାରେ ମୁଁ ଗୀତା ସମ୍ବନ୍ଧରେ କୌଣସି କଥା କହିବି ନାହିଁ । ତାହାର କାରଣ ଏହିଯେ, ଏଇ ଗୀତୋକ୍ତ ଧର୍ମ ଖଣ୍ଡିଏ ପୃଥକ ଗ୍ରନ୍ଥରେ * କିଛି କିଛି ବୁଝାଇଅଛି, ପରେ ଆଉ ଖଣ୍ଡିଏ † ଲେଖିବାରେ ନିଯୁକ୍ତ ଅଛି । ଗୀତା ସମ୍ବନ୍ଧରେ

* ଧର୍ମତତ୍ତ୍ୱ

† ଶ୍ରୀ ମଦ୍‌ଭଗବଦ୍‌ଗୀତାର ବଙ୍ଗଳା ଟୀକା ।

ମୋ ମତ ଏହି ଦୁଇ ଗ୍ରନ୍ଥରେ ମିଳିବ । ଏଠାରେ ପୁନରୁକ୍ତିର ପ୍ରୟୋଜନ ନାହିଁ ।

ଭଗବଦ୍‌ଗୀତା—ପର୍ବାଧ୍ୟାୟ ପରେ ଭୀଷ୍ମବଧ—ପର୍ବାଧ୍ୟାୟ । ଏହିଠାରୁ ଯୁଦ୍ଧାରମ୍ଭ । ଯୁଦ୍ଧରେ କୃଷ୍ଣ ଅର୍ଜୁନଙ୍କ ସାରଥି ମାତ୍ର । ସାରଥିମାନଙ୍କ ଅଦୃଷ୍ଟ ବଡ଼ ମନ୍ଦ ଥିଲା ! ମହାଭାରତରେ ଯେଉଁ ଯୁଦ୍ଧର ବର୍ଣ୍ଣନା ଅଛି, ତାହା କେତେଗୁଡ଼ିଏ ଦୈରଥ୍ୟଯୁଦ୍ଧ ମାତ୍ର ରଥିମାନେ ଯୁଦ୍ଧ କରିବା ସମୟରେ ପରସ୍ପରଙ୍କ ଅଶ୍ୱ ଓ ସାରଥିକୁ ବିନାଶ କରିବାକୁ ଚେଷ୍ଟା କରୁଥିଲେ । ତାହାର କାରଣ, ଅଶ୍ୱ ବା ସାରଥି ନଷ୍ଟ ହେଲେ, ଆଉ ରଥ ଚଳିବ ନାହିଁ । ରଥ ନ ଚଳିଲେ ରଥୀ ବିପନ୍ନ ହୁଅନ୍ତି । ସାରଥିମାନେ ଯୋଦ୍ଧା ନୁହନ୍ତି—ବିନା ଦୋଷରେ ବିନା ଯୁଦ୍ଧରେ ନିହତ ହୁଅନ୍ତେ । କୃଷ୍ଣଙ୍କୁ ମଧ୍ୟ ସେହି ସୁଖରେ ଭାଗୀ ହେବାକୁ ହୋଇଥିଲା । ସେ ହତ ହୋଇ ନାହାନ୍ତି ସତ୍ୟ, କିନ୍ତୁ ଯୁଦ୍ଧର ଅଷ୍ଟାଦଶ ଦିବସ ମୁହୂର୍ତ୍ତେ ମୁହୂର୍ତ୍ତେ ବହୁ ସଂଖ୍ୟକ ବାଣ ଦ୍ୱାରା ବିଦ୍ଧ ହୋଇ କ୍ଷତ ବିକ୍ଷତ ହେଉଥିଲେ। ଅନ୍ୟାନ୍ୟ ସାରଥିମାନେ ଆତ୍ମରକ୍ଷାରେ ଅକ୍ଷମ, ସେମାନେ ବୈଶ୍ୟ, ଜାତିରେ କ୍ଷତ୍ରିୟ ନୁହନ୍ତି । କୃଷ୍ଣ, ଆତ୍ମରକ୍ଷାରେ ଅତିଶୟ ସକ୍ଷମ, ତଥାପି କର୍ତ୍ତବ୍ୟାନୁରୋଧରେ ବସି ବସି ମାଡ଼ ଖାଉଥିଲେ ।

ମହାଭାରତ ଯୁଦ୍ଧରେ ଅସ୍ତ୍ରଧାରଣ କରିବେ ନାହିଁ ପ୍ରତିଜ୍ଞା କରିଥିଲେ, ଏହା କହିଅଛି । କିନ୍ତୁ ଦିନେ ସେ ଅସ୍ତ୍ରଧାରଣ କରିଥିଲେ । ଅସ୍ତ୍ରଧାରଣ କରିଥିଲେ ମାତ୍ର, କିନ୍ତୁ ପ୍ରୟୋଗ କରି ନାହାନ୍ତି । ସେ ଘଟଣାଟା ଏହିରୂପ ;—

ଭୀଷ୍ମ ଦୁର୍ଯ୍ୟୋଧନଙ୍କ ସେନାପତିତ୍ୱରେ ନିଯୁକ୍ତ ହୋଇ ଯୁଦ୍ଧ କରୁଛନ୍ତି । ସେ ଯୁଦ୍ଧରେ ଏରୂପ ନିପୁଣ ଯେ, ପାଣ୍ଡବସେନା

ମଧ୍ୟରେ ଅର୍ଜ୍ଜୁନ ଭିନ୍ନ ଅନ୍ୟ କେହି ତାଙ୍କ ସମକକ୍ଷ ନ ଥିଲେ । କିନ୍ତୁ ଅର୍ଜ୍ଜୁନ ତାଙ୍କ ସଙ୍ଗେ ଭଲ କରି ସ୍ୱଶକ୍ତି ଅନୁସାରେ ଯୁଦ୍ଧ କରନ୍ତି ନାହିଁ । ତାହାର କାରଣ ଏହି ଯେ, ଭୀଷ୍ମ ସମ୍ବନ୍ଧରେ ଅର୍ଜ୍ଜୁନଙ୍କ ପିତାମହ, ଏବଂ ବାଲ୍ୟ କାଳର ପିତୃହୀନ ପାଣ୍ଡବମାନଙ୍କୁ ଭୀଷ୍ମହିଁ ପିତୃବତ୍ ପ୍ରତିପାଳନ କରିଥିଲେ । ଭୀଷ୍ମ ବର୍ତ୍ତମାନ ଦୁର୍ଯ୍ୟୋଧନଙ୍କ ଅନୁରୋଧରେ ନିରପରାଧୀ ପାଣ୍ଡବ-ମାନଙ୍କ ଶତ୍ରୁ ହୋଇ ସେମାନଙ୍କ ଅନିଷ୍ଟାର୍ଥ ସେମାନଙ୍କ ସଙ୍ଗେ ଯୁଦ୍ଧ କରୁଛନ୍ତି ବୋଲି, ଯଦିଓ ଭୀଷ୍ମ ଧର୍ମତଃ ଅର୍ଜ୍ଜୁନଙ୍କ ବଧ୍ୟ, ତଥାପି ଅର୍ଜ୍ଜୁନ ପୂର୍ବକଥା ସ୍ମରଣ କରି କୌଣସି ମତେ ଭୀଷ୍ମଙ୍କ ବଧ ସାଧନରେ ସମ୍ମତ ନୁହନ୍ତି, ଏଣୁ ଭୀଷ୍ମଙ୍କ ସଙ୍ଗେ ଯୁଦ୍ଧ ଉପସ୍ଥିତ ହେଲେ ସେ ମୃଦୁ ଯୁଦ୍ଧ କରନ୍ତି, କାଳେ ଭୀଷ୍ମ ନିପତିତ ହେବେ, ଏଥିପାଇଁ ସର୍ବଦା ସଙ୍କୁଚିତ । ତେଣୁ ଭୀଷ୍ମଙ୍କ, ଅପ୍ରତିହତ ବୀର୍ଯ୍ୟରେ ବହୁସଂଖ୍ୟକ ପାଣ୍ଡବସେନା ବିନଷ୍ଟ କରୁଥିଲେ । ଏହା ଦେଖି ହଠାତ୍ ଭୀଷ୍ମଙ୍କୁ ବଧ କରିବା ମାନସରେ କୃଷ୍ଣ ସ୍ୱୟଂ ଚକ୍ରହସ୍ତରେ ଅର୍ଜ୍ଜୁନଙ୍କ ରଥରୁ ଅବ-ରୋହଣ ପୂର୍ବକ ଭୀଷ୍ମଙ୍କ ପ୍ରତି ପଦବ୍ରଜରେ ଧାବମାନ ହେଲେ ।

ଏହା ଦେଖି କୃଷ୍ଣଭକ୍ତ ଭୀଷ୍ମ ପରମାହ୍ଲାଦିତ ହୋଇ କହିଲେ,

ଏହ୍ୟେହି ଦେବେଶ ଜଗନ୍ନିବାସ !
ନମୋସ୍ତୁତେ ଶାର୍ଙ୍ଗଗଦାସିପାଣେ ।
ପ୍ରସହ୍ୟ ମାଂ ପାତୟ ଲୋକନାଥ !
ରଥୋତ୍ତମାତ୍ ଭୂତଶରଣ୍ୟ ସଂଖ୍ୟେ ॥

"ଆସ ଆସ ଦେବେଶ ଜଗନ୍ନିବାସ ! ହେ ଶାର୍ଙ୍ଗଗଦା

ଖଡ୍‌ଗ ଧାରିନ୍! ତୁମକୁ ନମସ୍କାର । ହେ ଲୋକନାଥ ଭୂତଶରଣ୍ୟ ! ଯୁଦ୍ଧରେ ମତେ ଅବଲମ୍ୱେ ରଥୋତ୍ତମରୁ ପାତିତକର ।”

ଅର୍ଜ୍ଜୁନ ମଧ୍ୟ କୃଷ୍ଣଙ୍କ ପାଶ୍ଚାଦନୁସରଣ କରି, କୃଷ୍ଣଙ୍କୁ ଅନୁନୟ କରି, ସ୍ୱୟଂ ସାଧ୍ୟାନୁସାରେ ଯୁଦ୍ଧ କରିବାକୁ ପ୍ରତିଜ୍ଞା କରି, ଫେରାଇ ଆଣିଲେ ।

ଏଇ ଘଟନା ଦୁଇବାର ବର୍ଣ୍ଣିତ ହୋଇଅଛି । ଥରେ ତୃତୀୟ ଦିବସର ଯୁଦ୍ଧରେ, ଆଉଥରେ ନବମ ଦିବସର ଯୁଦ୍ଧରେ । ଶ୍ଳୋକ ଗୁଡ଼ିକ ଏକ, ସୁତରାଂ ଏକ ଦିବସର ଘଟନା ଲିପିକାରଙ୍କ ଭ୍ରମ ପ୍ରମାଦ ବା ଇଚ୍ଛାବଶତଃ ଦୁଇବାର ଲିଖିତ ହୋଇଥିବ । ସଂସ୍କୃତ ଗ୍ରନ୍ଥରେ ସଚରାଚର ଏରୂପ ଘଟି ଥାଏ ।

ରଚନା ଦେଖି ବିଚାର କଲେ, ଏଇ ବିବରଣୀକୁ ମହାଭାରତର ପ୍ରଥମ ସ୍ତର ଭୁକ୍ତ ବୋଲି ବିବେଚନା କରା ଯାଇ ପାରେ । କବିତ୍ୱ ପ୍ରଥମ ଶ୍ରେଣୀର, ଭାବ ଓ ଭାଷା ଉଦାର ଏବଂ ଜଟିଳତାଶୂନ୍ୟ । ପ୍ରଥମ ସ୍ତରର ଯେଉଁତକ ମୌଳିକତା ସ୍ୱୀକାର କରା ଯାଇ ପାରେ, ଏଇ ଘଟନାର ବି ସେତକ ମୌଳିକତା ସ୍ୱୀକାର କରା ଯାଇ ପାରେ ।

ଏଇ ଘଟନା ନେଇ କୃଷ୍ଣଭକ୍ତମାନେ, କୃଷ୍ଣଙ୍କ ପ୍ରତିଜ୍ଞା ସମ୍ୱନ୍ଧରେ ଗୋଟିଏ ତର୍କ ଉଠାଇ ଥାନ୍ତି । କାଶୀଦାସ ଓ କଥକମାନେ ଏହି ପ୍ରତିଜ୍ଞା ଭଙ୍ଗକୁ ଅବଲମ୍ୱନ କରି, କୃଷ୍ଣଙ୍କ ମାହାତ୍ମ୍ୟ କୀର୍ତ୍ତନ କରିଛନ୍ତି । ସେମାନେ କହନ୍ତି ଯେ, ଭୀଷ୍ମ ଯୁଦ୍ଧାରମ୍ଭ କାଳରେ କୃଷ୍ଣଙ୍କ ସାକ୍ଷାତ୍ ପ୍ରତିଜ୍ଞା କରିଥିଲେ ଯେ—ତୁମେ ଯେପରି ପ୍ରତିଜ୍ଞା କରିଅଛ ଯେ, ଏ ଯୁଦ୍ଧରେ ଅସ୍ତ୍ରଧାରଣ କରିବ ନାହିଁ, ମୁଁ ମଧ୍ୟ ପ୍ରତିଜ୍ଞା କରୁଅଛି,

ତୁମକୁ ଅସ୍ତ୍ର ଧାରଣ କରାଇବ ।

ଅତଏବ ଏ ସ୍ଥଳରେ ଭକ୍ତବତ୍ସଳ କୃଷ୍ଣ, ନିଜର ପ୍ରତିଜ୍ଞା ଲଙ୍ଘିତ କରି, ଭକ୍ତର ପ୍ରତିଜ୍ଞା ରକ୍ଷା କଲେ ।

ଏହି ସୁବୁଦ୍ଧିରଚନାର କୌଣସି ପ୍ରୟୋଜନ ଦେଖାଯାଏ ନାହିଁ । ଭୀଷ୍ମଙ୍କ ଏବଂ ବଧ ପ୍ରତିଜ୍ଞା ମଧ୍ୟ ମୂଳ ମହାଭାରତରେ ଦେଖା ଯାଏ ନାହିଁ । କୃଷ୍ଣଙ୍କର ବି କୌଣସି ପ୍ରତିଜ୍ଞା ଲଙ୍ଘିତ ହୋଇ ନାହିଁ । ତାଙ୍କ ପ୍ରତିଜ୍ଞାର ମର୍ମ୍ମ ଏହିପରି—ଯୁଦ୍ଧ କରିବି ନାହିଁ । ଦୁର୍ଯ୍ୟୋଧନ ଓ ଅର୍ଜ୍ଜୁନ ଉଭୟେ ତାଙ୍କୁ ଏକକାଳରେ ବରଣାଭିଳାଷୀ ହେଲେ, ସେ ଉଭୟଙ୍କ ସଙ୍ଗେ ତୁଲ୍ୟ ବ୍ୟବହାର କରିବା ନିମିତ୍ତ କହିଲେ, "ମୋର ତୁଲ୍ୟ ବଳଶାଳୀ ମୋର ନାରାୟଣୀ ସେନା ଜଣେ ଗ୍ରହଣ କର ; ଆଉ ଜଣେ ମତେ ନିଅ ।" "ଅଯୁଧ୍ୟମାନଃ ସଂଗ୍ରାମେ ନ୍ୟସ୍ତଶସ୍ତ୍ରୋଽହମେକତଃ" ଏଇ ପର୍ଯ୍ୟନ୍ତ ପ୍ରତିଜ୍ଞା । ସେ ପ୍ରତିଜ୍ଞା ରକ୍ଷିତ ହୋଇଥିଲା । କୃଷ୍ଣ ଯୁଦ୍ଧ କରି ନାହାନ୍ତି । ଭୀଷ୍ମ ସମ୍ବନ୍ଧୀୟ ଏହି ଘଟଣାଟିର ଉଦ୍ଦେଶ୍ୟ ଆଉ କିଛି ନୁହେଁ । କେବଳ ସାଧାରଣ ଭାବରେ ଯୁଦ୍ଧରେ ପରାଂମୁଖ ଅର୍ଜ୍ଜୁନଙ୍କୁ ଯୁଦ୍ଧରେ ଉତ୍ତେଜିତ କରାଇଛନ୍ତି । ଏହା ସାରଥିମାନେ କରୁଥିଲେ । ଉଦ୍ଦେଶ୍ୟ ସଫଳ ହୋଇଥିଲା ।

ଯୁଦ୍ଧର ନବମଦିବସର ରାତିରେ ମଧ୍ୟ କୃଷ୍ଣ ଏହିରୂପ ଅଭିପ୍ରାୟର କଥା କହିଥିଲେ । ଭୀଷ୍ମଙ୍କୁ ଅପରାଜିତ ଦେଖି ଯୁଧିଷ୍ଠିର ନବମ ରାତ୍ରରେ ବନ୍ଧୁବାନ୍ଧବମାନଙ୍କୁ ଡାକି ଭୀଷ୍ମବଧର ପରାମର୍ଶ କରିବାକୁ ଲାଗିଲେ । କୃଷ୍ଣ କହିଲେ, ମତେ ଅନୁମତି ଦିଅ, ମୁଁ ଭୀଷ୍ମଙ୍କୁ ବଧ କରୁଅଛି । ଅଥବା ଅର୍ଜ୍ଜୁନଙ୍କ ଉପରେ ଏ ଭାର ଥାଉ; ଅର୍ଜ୍ଜୁନ ମଧ୍ୟ ଏଥିରେ ସକ୍ଷମ ।

ଯୁଧିଷ୍ଠିର ଏ କଥାରେ ସମ୍ମତ ହେଲେ ନାହିଁ । କୃଷ୍ଣ ଯେ ଭୀଷ୍ମବଧ ଇଚ୍ଛାକଲେ ମଧ୍ୟ କରିପାରନ୍ତେ, ତାହା ସେ ସ୍ୱୀକାର କଲେ । କିନ୍ତୁ କହିଲେ, "ଆତ୍ମଗୌରବ ନିମିତ୍ତ ତୁମକୁ ମିଥ୍ୟାବାଦୀ କରିବାକୁ ଚାହେଁ ନାହିଁ । ତୁମେ ଅଯୁଧ୍ୟ-ମାନରନ୍ତ ସାହାଯ୍ୟ କର ।" ଯୁଧିଷ୍ଠିର ଅର୍ଜୁନଙ୍କ ସମ୍ବନ୍ଧରେ କିଛିହେଁ କହିଲେ ନାହିଁ । ପରେ କୃଷ୍ଣଙ୍କ ସମ୍ମତି ନେଇ ଏବଂ ଅନ୍ୟ ପାଣ୍ଡବଗଣ ଓ କୃଷ୍ଣଙ୍କୁ ସଙ୍ଗରେ ନେଇ ଭୀଷ୍ମଙ୍କ ନିକଟକୁ ତାଙ୍କ ବଧୋପାୟ ଜାଣିବାକୁ ଗଲେ ।

ଭୀଷ୍ମ ନିଜର ବଧୋପାୟ କହିଦେଲେ । ଦୃଶ୍ୟତଃ ସେହିରୂପ କାର୍ଯ୍ୟ ହେଲା । କାର୍ଯ୍ୟତଃ ତାହାର କିଛିହିଁ ହେଲା ନାହିଁ । କୃଷ୍ଣ ଯାହା କହିଥିଲେ, ତାହାହିଁ ଘଟିଲା – ଅର୍ଜୁନହିଁ ଭୀଷ୍ମଙ୍କୁ ଶରଶଯ୍ୟାଶାୟିତ ଓ ରଥରୁ ନିପାତିତ କଲେ । ମୂଳ ମହାଭାରତ ଉପରେ କ୍ଷିପ୍ତ ସ୍ତରର କବି, କଲମ ଚଳେଇ ଗୋଟିଏ ସଙ୍ଗତିଶୂନ୍ୟ, ନିଷ୍ପ୍ରୟୋଜନୀୟ, କିନ୍ତୁ ଆପାତମନୋହର ଶିଖଣ୍ଡି ସମ୍ବନ୍ଧୀୟ ଗଳ୍ପ ଆଣି ପୁରାଇଛନ୍ତି । କୃଷ୍ଣଚରିତ୍ର ସହିତ ତାହାର କିଛି ସମ୍ବନ୍ଧ ନାହିଁ । ଏ ନିମିତ୍ତ ଆମେ ତାହାର ସମାଲୋଚନାରେ ପ୍ରବୃତ୍ତ ହେଲୁ ନାହିଁ ।

## ଦ୍ୱିତୀୟ ପରିଚ୍ଛେଦ

## ଜୟଦ୍ରଥ ବଧ

ଭୀଷ୍ମଙ୍କ ପରେ ଦ୍ରୋଣାଚାର୍ଯ୍ୟ ସେନାପତି । ଦ୍ରୋଣପର୍ବରେ ପ୍ରଥମେ କୃଷ୍ଣଙ୍କୁ ବିଶେଷ କୌଣସି କର୍ମ୍ମ କରିବାର ଦେଖା ଯାଏ ନାହିଁ । ସେ ନିପୁଣ ସାରଥି ପରି କେବଳ ସାରଥ୍ୟ

କରୁଥିଲେ । କୁରୁକ୍ଷେତ୍ରର ଯୁଦ୍ଧରେ ସେ ସେ କର୍ତ୍ତା ଓ ନେତା, ଏ କଥାଟା ଏଠାରେ ସତ୍ୟ ନୁହେଁ । ମଝିରେ ମଝିରେ ଯୁଧିଷ୍ଠିର ଓ ଅର୍ଜ୍ଜୁନଙ୍କୁ ସଦୁପଦେଶ ଦେବା ଛଡ଼ା ଆଉ କିଛି କରି ନାହାନ୍ତି । ଦ୍ରୋଣାଭିଷେକ—ପର୍ବାଧ୍ୟାୟର ଏକାଦଶ ଅଧ୍ୟାୟରେ ସଞ୍ଜୟ କୃତ କୃଷ୍ଣଙ୍କ ବଳବୀର୍ଯ୍ୟ ଓ ମହିମା କୀର୍ତ୍ତନ ନିମିତ୍ତ ଗୋଟିଏ ସୁଦୀର୍ଘ ବକ୍ତୃତା ମିଳେ । ତହିଁରେ କୌଣସି ପ୍ରୟୋଜନ ନାହିଁ । ଏହି ଅଧ୍ୟାୟଟି ପ୍ରକ୍ଷିପ୍ତ ବୋଲି ବୋଧ ହୁଏ, ଏବଂ କୃଷ୍ଣଙ୍କ ବଳବୀର୍ଯ୍ୟ ଓ ମହିମା କୀର୍ତ୍ତନର ମହାଭାରତରେ ବା ଅନ୍ୟତ୍ର କୌଣସି କିଛି ଅଭାବ ମଧ୍ୟ ନାହିଁ । ଆମ୍ଭେମାନେ ତାଙ୍କର ମାନବ ଚରିତ୍ର ସମାଲୋଚନା କରିବାକୁ ଇଚ୍ଛୁକ ; ମାନବଚରିତ୍ର କାର୍ଯ୍ୟରେ ପ୍ରକାଶ, ଅତଏବ ଆମେ କେବଳ କୃଷ୍ଣଚରିତ୍ର କାର୍ଯ୍ୟରହିଁ ଅନୁସନ୍ଧାନ କରିବା ।

ଦ୍ରୋଣପର୍ବରେ ପ୍ରଥମେ ଭଗଦତ୍ତ ବଧରେ କୃଷ୍ଣଙ୍କ କୌଣସି କାର୍ଯ୍ୟ ଦେଖା ଯାଏ । ଭଗଦତ୍ତ ମହାବୀର, ପାଣ୍ଡବପକ୍ଷୀୟ ଆଉ କେହି ତାଙ୍କ ସଙ୍ଗେ ଯୁଦ୍ଧ କରି ପାରିଲେ ନାହିଁ, ଶେଷରେ ଅର୍ଜ୍ଜୁନ ଆସି ତାଙ୍କ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଭଗଦତ୍ତ ଅର୍ଜ୍ଜୁନଙ୍କ ସଙ୍ଗେ ଯୁଦ୍ଧରେ ନିଜକୁ ଅଶକ୍ତ ଦେଖି, ତାଙ୍କ ପ୍ରତି ବୈଷ୍ଣବାସ୍ତ୍ର ପରିତ୍ୟାଗ କଲେ, ଅର୍ଜ୍ଜୁନ ବା ଅମର କେହି ଏହି ଅସ୍ତ୍ର ନିବାରଣରେ ସମର୍ଥ ନୁହନ୍ତି; ଅତଏବ କୃଷ୍ଣ ଅର୍ଜ୍ଜୁନଙ୍କୁ ଆଚ୍ଛାଦିତ କରି ନିଜ ବକ୍ଷରେ ସେହି ଅସ୍ତ୍ର ଗ୍ରହଣ କଲେ, ତାଙ୍କ ବକ୍ଷରେ ଅସ୍ତ୍ର ବୈଜୟନ୍ତୀ ମାଳା ହୋଇ ବିଲମ୍ବିତ ହେଲା ।

ଏହି ଅସ୍ତ୍ର ଗୋଟାଏ, ଅନୈସର୍ଗିକ ଅବୋଧଗମ୍ୟ ବ୍ୟାପାର, ଯାହା ଅନୈସର୍ଗିକ, ତହିଁରେ ଆମେ ପାଠକଙ୍କୁ ବିଶ୍ୱାସ କରିବାକୁ କହୁ ନାହୁଁ, ଏବଂ ଅନୈସର୍ଗିକ ଉପରେ କୌଣସି ସତ୍ୟ ମଧ୍ୟ ସଂସ୍ଥାପିତ ହୁଏ ନାହିଁ । ଅତଏବ ଏ ଗଳ୍ପଟା ଆମର ପରିତ୍ୟାଜ୍ୟ ।

ଦ୍ରୋଣପର୍ବରେ, ଅଭିମନ୍ୟୁ ବଧ ପରେ କୃଷ୍ଣଙ୍କୁ ପ୍ରକୃତ-ମତେ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେବାର ଦେଖି ଥାଉଁ । ଯେଉଁ ଦିନ ସପ୍ତରଥୀ ମିଶି ଅନ୍ୟାୟପୂର୍ବକ ଅଭିମନ୍ୟୁଙ୍କୁ ବଧ କଲେ, ସେ ଦିନ କୃଷ୍ଣାର୍ଜ୍ଜୁନ ସେ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ନଥିଲେ । ସେମାନେ କୃଷ୍ଣଙ୍କ ନାରାୟଣୀ ସେନାଙ୍କ ସଙ୍ଗେ ଯୁଦ୍ଧରେ ନିଯୁକ୍ତ ଥିଲେ—ସେହି ସେନା କୃଷ୍ଣ ଦୁର୍ଯ୍ୟୋଧନଙ୍କୁ ଦେଇଥିଲେ, ଏକ ପକ୍ଷରେ ସେ ନିଜେ, ଅନ୍ୟ ପକ୍ଷରେ ତାଙ୍କ ସେନା—ଏହିରୂପେ ସେ ଉଭୟ ପକ୍ଷ ସଙ୍ଗେ ସାମ୍ୟ ରକ୍ଷା କରିଥିଲେ ।

ଯୁଦ୍ଧାନ୍ତେ ଓ ଦିବସାନ୍ତେ ଶିବିରକୁ ଫେରି ଆସି କୃଷ୍ଣାର୍ଜ୍ଜୁନ ଅଭିମନ୍ୟୁ ବଧ ବୃତ୍ତାନ୍ତ ଶୁଣିଲେ । ଅର୍ଜ୍ଜୁନ ଅତିଶୟ ଶୋକାତୁର ହେଲେ । * ଯୋଗେଶ୍ୱର କୃଷ୍ଣ ସ୍ୱୟଂ ଶୋକ-ମୋହର ଅତୀତ । ତାଙ୍କର ପ୍ରଥମ କାର୍ଯ୍ୟ ଅର୍ଜ୍ଜୁନଙ୍କୁ ସାନ୍ତ୍ୱନା କରିବା ସେ ଯେଉଁ ସବୁ କଥା କହି ଅର୍ଜ୍ଜୁନଙ୍କୁ ପ୍ରବୋଧ ଦେଲେ, ତାହା ତାଙ୍କର ଉପଯୁକ୍ତ । ଗୀତାରେ ସେ ଯେଉଁ ଧର୍ମ ପ୍ରଚାରିତ କରିଅଛନ୍ତି, ସେହି ଧର୍ମାନୁମୋଦିତ ମହାବାକ୍ୟ ଦ୍ୱାରା ଅର୍ଜ୍ଜୁନଙ୍କ ଶୋକାପନୋଦନ କଲେ । ଋଷିମାନେ ଯୁଧିଷ୍ଠିରଙ୍କୁ

---

* ଏଠାରେ ପାଠକ ଥାଇ ପାରନ୍ତି ଯେ, ତାଙ୍କୁ କହି ଦେବାକୁ ହୁଏ ଯେ, ଅଭିମନ୍ୟୁ ଅର୍ଜ୍ଜୁନଙ୍କ ପୁତ୍ର ଓ କୃଷ୍ଣଙ୍କ ଭାଗିନେୟ ।

ପ୍ରବୋଧ ଦେଉଥିଲେ, ଏହା କହି ଯେ, ସମସ୍ତେ ମରିଛନ୍ତି ଓ ସମସ୍ତେ ମରିଥାନ୍ତି । ସେ ତାହା କହିଲେ ନାହିଁ । ସେ ବୁଝାଇଲେ ।

"ଯୁଦ୍ଧୋପଜୀବୀ କ୍ଷତ୍ରିୟ ମାନଙ୍କର ଏହା ହେଉଛି ପଥ । **ଯୁଦ୍ଧମୃତ୍ୟୁହିଁ କ୍ଷତ୍ରିୟ ଗଣର ସନାତନ ଧର୍ମ୍ମ ।"**
କୃଷ୍ଣ ଅଭିମନ୍ୟୁଂଜନନୀ ସୁଭଦ୍ରାଙ୍କୁ ମଧ୍ୟ ସେଇ କଥା କହି ପ୍ରବୋଧ ଦେଲେ । କହିଲେ, "ସତ୍କୁଳଜାତ ଧୈର୍ଯ୍ୟଶାଳୀ କ୍ଷତ୍ରିୟର ଯେଉଁପରି ପ୍ରାଣପରିତ୍ୟାଗ କରିବା ଉଚିତ, ତୁମର ପୁତ୍ର ସେହିପରି ପ୍ରାଣତ୍ୟାଗ କରିଅଛି; ଅତଏବ ଶୋକ କରିବାର ଆବଶ୍ୟକତା ନାହିଁ । ମହାରଥ, ଧୀର, ପିତୃତୁଲ୍ୟ ପରାକ୍ରମଶାଳୀ ଅଭିମନ୍ୟୁ ଭାଗ୍ୟବନ୍ତମାନେହିଁ ବୀରଗଣର ଅଭିଲଷିତ ଗତି ପ୍ରାପ୍ତ ହୋଇଅଛି । ମହାବୀର ଅଭିମନ୍ୟୁ ଭୂରି ଶତ୍ରୁ ସଂହାର କରି ପୁଣ୍ୟଜନିତ ସର୍ବକାମପ୍ରଦ ଅକ୍ଷୟ ଲୋକକୁ ଗମନ କରିଅଛି । ସାଧୁମାନେ, ତପସ୍ୟା, ବ୍ରହ୍ମଚର୍ଯ୍ୟ, ଶାସ୍ତ୍ର ଓ ପ୍ରଜ୍ଞାଦ୍ୱାରା ଯେଉଁପରି ଗତି ଅଭିଳାଷ କରନ୍ତି, ତୁମର କୁମାରଙ୍କର ସେହିରୂପ ଗତି ଲାଭ ହୋଇ ଅଛି । ହେ ସୁଭଦ୍ରେ ! ତୁମେ ବୀରଜନନୀ, ବୀରପତ୍ନୀ, ବୀରନନ୍ଦିନୀ ଓ ବୀରବାନ୍ଧବୀ ; ଅତଏବ ତନୟ ନିମିତ୍ତ ତୁମର ଶୋକାକୁଳ ହେବା ଉଚିତ ନୁହେଁ, ଏ ସବୁରେ ମାତାର ଶୋକ ନିବାରଣ ହୁଏ ନାହିଁ ଜାଣେ । କିନ୍ତୁ ଏଇ ହତଭାଗ୍ୟ ଦେଶରେ ଏହିପରି କଥା ସବୁ ଶୁଣେ ଓ ଶୁଣାଏ, ଏହା ଇଚ୍ଛା କରେ ।

ଏଣେ ପୁତ୍ରଶୋକାର୍ତ୍ତ ଅର୍ଜ୍ଜୁନ ଅତିଶୟ ବିଷଣ୍ଣମନସ୍କ ହୋଇ ଏକ ନିଦାରୁଣ ପ୍ରତିଜ୍ଞାରେ ଆପଣାଙ୍କୁ ଆବଦ୍ଧ କଲେ । ସେ ଯାହା ଶୁଣିଲେ, ତହିଁରୁ ବୁଝିଲେ ଯେ ଅଭିମନ୍ୟୁ ମୃତ୍ୟୁର ପ୍ରଧାନ କାରଣ ଜୟଦ୍ରଥ । ସେ ଅତି କଠିନ ଶପଥ

କରି ପ୍ରତିଜ୍ଞା କଲେ ଯେ, ପରଦିନ ସୂର୍ଯ୍ୟାସ୍ତର ପୂର୍ବରୁ ଜୟଦ୍ରଥଙ୍କୁ ବଧ କରିବେ, ନ ପାରିଲେ, ନିଜେ ଅଗ୍ନିପ୍ରବେଶ-ପୂର୍ବକ ପ୍ରାଣତ୍ୟାଗ କରିବେ ।

ଏହି ପ୍ରତିଜ୍ଞାରେ ଉଭୟ ଶିବିରରେ ବଡ଼ ହୁଲସ୍ଥୂଳ (ହୁରି) ଦେଖାଗଲା । ପାଣ୍ଡବସୈନ୍ୟ ଅତିଶୟ କୋଳାହଳ କରିବାକୁ ଲାଗିଲେ, ଏବଂ ବାଦ୍ୟ ବାଦକଗଣ ଘୋର ବାଜା ବଜାଇବାକୁ ଲାଗିଲେ । କୌରବମାନେ ଚମକିତ ହୋଇ ଅନୁସନ୍ଧାନ ଦ୍ୱାରା ପ୍ରତିଜ୍ଞା ଜାଣି ପାରି ଜୟଦ୍ରଥରକ୍ଷାର୍ଥ ମନ୍ତ୍ରଣା କରିବାକୁ ଲାଗିଲେ । କୃଷ୍ଣ ଦେଖିଲେ, ଗୋଟିଏ ବିଷମ ବ୍ୟାପାର ଉପସ୍ଥିତ ହୋଇଅଛି । ଅର୍ଜ୍ଜୁନ ବିବେଚନା ନ କରି ଯେଉଁ କଠିନ ପ୍ରତିଜ୍ଞା କରି ବସିଛନ୍ତି, ତହିଁରୁ ଉତ୍ତୀର୍ଣ୍ଣ ହେବା ସୁସାଧ୍ୟ ନୁହେ, ଜୟଦ୍ରଥ ନିଜେ ମହାରଥୀ, ସିନ୍ଧୁସୌବୀର-ଦେଶର ଅଧିପତି, ବହୁ ସେନାର ନାୟକ, ଏବଂ ଦୁର୍ଯ୍ୟୋଧନଙ୍କ ଭଗିନୀପତି । କୌରବପକ୍ଷୀୟ ଅପରାଜେୟ ଯୋଦ୍ଧୃଗଣ ତାଙ୍କୁ ସାଧ୍ୟାନୁସାରେ ରକ୍ଷା କରିବେ । ଏଣେ ପାଣ୍ଡବପକ୍ଷର ପ୍ରଧାନ ପୁରୁଷମାନେ ସମସ୍ତେ ଅଭିମନ୍ୟୁ ଶୋକରେ ବିହ୍ୱଳ—ମନ୍ତ୍ରଣାରେ ବିମୁଖ । ଅତଏବ କୃଷ୍ଣ ନିଜେ ନେତୃତ୍ୱ ଗ୍ରହଣ କରି କର୍ମରେ ପ୍ରବୃତ୍ତ ହେଲେ । ସେ କୌରବ ଶିବିରକୁ ଗୁପ୍ତଚର ପଠାଇଲେ । ଚର ଆସି ସେଠାର ବୃତ୍ତାନ୍ତ ସବୁ କହିଲା । କୌରବମାନେ ପ୍ରତିଜ୍ଞା କଥା ସବୁ ଜାଣିଛନ୍ତି । ଦ୍ରୋଣାଚାର୍ଯ୍ୟ ବ୍ୟୂହରଚନା କରିବେ ; ତତ୍ପଶ୍ଚାତ୍ କର୍ଣ୍ଣାଦି ସମସ୍ତ କୌରବପକ୍ଷୀୟ ବୀରଗଣ ଏକତ୍ରିତ ହୋଇ ଜୟଦ୍ରଥଙ୍କୁ ରକ୍ଷା କରିବେ । ଏହି ଦୁର୍ଭେଦ୍ୟ ବ୍ୟୂହ ଭେଦ କରି, ସକଳ ବୀରଗଣଙ୍କୁ ଏକସ ପରାଜିତ କରି, ମହାବୀର ଜୟଦ୍ରଥଙ୍କୁ ନିହତ କରିବା ଅର୍ଜ୍ଜୁନଙ୍କର ଅସାଧ୍ୟ ହୋଇ ପାରେ ।

ଅସାଧ ହେଲେ ତେବେ ଅର୍ଜ୍ଜୁନଙ୍କ ଆତ୍ମହତ୍ୟା ନିଶ୍ଚିତ। ଅତଏବ କୃଷ୍ଣ ନିଜର ଅନୁଷ୍ଠେୟ ଚିନ୍ତା କରି, ତାହାର ବ୍ୟବସ୍ଥା କଲେ। ନିଜର ସାରଥି ଦାରୁକଙ୍କୁ ଡାକି, କୃଷ୍ଣଙ୍କ ନିଜର ରଥ, ଉତ୍ତମ ଅଶ୍ୱରେ ଯୋଜିତ କରି ଅସ୍ତ୍ରଶସ୍ତ୍ରରେ ପରିପୂର୍ଣ୍ଣ କରି ପ୍ରଭାତରେ ପ୍ରସ୍ତୁତ ରଖିବାକୁ ଆଜ୍ଞା ଦେଲେ। ତାଙ୍କର ଅଭିପ୍ରାୟ ଏହି ଯେ, ଯଦି ଅର୍ଜ୍ଜୁନ ଏକ ଦିନରେ ବ୍ୟୂହ ପାର ହୋଇ ସମସ୍ତ ବୀରମାନଙ୍କୁ ପରାଜୟ କରି ନ ପାରନ୍ତି, ତେବେ ସେ ନିଜେ ଯୁଦ୍ଧ କରି କୌରବନେତୃଗଣଙ୍କୁ ବଧ କରି ଜୟଦ୍ରଥଙ୍କ ବଧର ପଥ ପରିଷ୍କାର କରିଦେବେ।

କୃଷ୍ଣଙ୍କୁ ଯୁଦ୍ଧ କରିବାକୁ ହେଇ ନାହିଁ, ଅର୍ଜ୍ଜୁନ ନିଜ ବାହୁବଳରେହିଁ କୃତକାର୍ଯ୍ୟ ହୋଇଥିଲେ। କିନ୍ତୁ ଯଦି କୃଷ୍ଣଙ୍କୁ ଯୁଦ୍ଧ କରିବାକୁ ହୋଇଥାନ୍ତା, ତାହା ହେଲେ "ଅଯୁଧ୍ୟମାନଃ ସଂଗ୍ରାମେ ନ୍ୟସ୍ତଶସ୍ତ୍ରୋଽହମେକତଃ" ଇତି ସତ୍ୟରୁ ବିଚ୍ୟୁତି ଘଟନ୍ତା ନାହିଁ। କାରଣ, ଯେଉଁ ଯୁଦ୍ଧ ସମ୍ବନ୍ଧରେ ଏ ପ୍ରତିଜ୍ଞା ହୋଇଥିଲା, ସେ ଯୁଦ୍ଧ ଏହା ନୁହେଁ। କୁରୁପାଣ୍ଡବଙ୍କ ରାଜ୍ୟ ନେଇ ଯେଉଁ ଯୁଦ୍ଧ, ଏ ସେ ଯୁଦ୍ଧ ନୁହେଁ। ଆଜିକାର ଏ ଅର୍ଜ୍ଜୁନପ୍ରତିଜ୍ଞାଜନିତ ଯୁଦ୍ଧ। ଏ ଯୁଦ୍ଧର ଉଦ୍ଦେଶ୍ୟ ଭିନ୍ନ; ଏକ ଦିଗରେ ଜୟଦ୍ରଥଙ୍କ ଜୀବନ, ଅନ୍ୟ ଦିଗରେ ଅର୍ଜ୍ଜୁନଙ୍କ ଜୀବନ ନେଇ ଯୁଦ୍ଧ। ଯୁଦ୍ଧରେ ଅର୍ଜ୍ଜୁନଙ୍କ ପରାଭବ ହେଲେ ତାଙ୍କୁ ଅଗ୍ନିପ୍ରବେଶ କରି ଆତ୍ମହତ୍ୟା କରିବାକୁ ହେବ। ଏ ଯୁଦ୍ଧ ପୂର୍ବେ ଉପସ୍ଥିତ ହୋଇ ନାହିଁ–"ସୂତଗଂ ଅଯୁଧ୍ୟମାନଃ ସଂଗ୍ରାମେ" ଇତି ପ୍ରତିଜ୍ଞା ଏହା ପକ୍ଷରେ ବର୍ତ୍ତେ ନାହିଁ। ଅର୍ଜ୍ଜୁନ କୃଷ୍ଣଙ୍କ ସଖା, ଶିଷ୍ୟ ଏବଂ ଭଗିନୀପତି, ତାଙ୍କର ଆତ୍ମହତ୍ୟାନିବାରଣ କୃଷ୍ଣଙ୍କ ଅନୁଷ୍ଠେୟ କର୍ମ।

ଏହା ପରେ କୃଷ୍ଣ ଓ ଅନ୍ୟ ସମସ୍ତେ ନିଦ୍ରା ଗଲେ । ଏହିସ୍ଥାନରେ ଗୋଟିଏ ଅଦ୍ଭୁତ ରକମର ସ୍ୱପ୍ନର ଗଳ୍ପ ଅଛି । ସ୍ୱପ୍ନରେ ପୁଣି କୃଷ୍ଣ ଅର୍ଜ୍ଜୁନଙ୍କ ନିକଟକୁ ଆସିଲେ, ଉଭୟେ ସେହି ରାତ୍ରରେ ହିମାଳୟକୁ ଗଲେ, ମହାଦେବଙ୍କ ଉପାସନା କଲେ, ପାଶୁପତ ଅସ୍ତ୍ର ପୂର୍ବେ (ବନବାସକାଳରେ) ଅର୍ଜ୍ଜୁନ ପ୍ରାପ୍ତ ହୋଇଥିଲେ, କିନ୍ତୁ ପୁଣି ମାଗିଲେ, ଓ ପାଇଲେ ଇତ୍ୟାଦି ଇତ୍ୟାଦି ଏ ସବୁ ସମାଲୋଚନା ନିତାନ୍ତ ଅଯୋଗ୍ୟ ।

ପରଦିନ ସୂର୍ଯ୍ୟାସ୍ତର ପ୍ରାକ୍‌କାଳରେ ଅର୍ଜ୍ଜୁନ ଜୟଦ୍ରଥକୁ ନିହତ କଲେ । ସେଥିନିମିତ୍ତ କୃଷ୍ଣଙ୍କ କୌଣସି ସାହାଯ୍ୟର ପ୍ରୟୋଜନ ହୋଇ ନାହିଁ । ତଥାପି କଥିତ ହୋଇଅଛି, କୃଷ୍ଣ ଅପରାହ୍ଣରେ ଯୋଗମାୟା ଦ୍ୱାରା ସୂର୍ଯ୍ୟଙ୍କୁ ଆଚ୍ଛନ୍ନ କଲେ ; ଜୟଦ୍ରଥ ନିହତ, ହେଲା ପରେ ସୂର୍ଯ୍ୟଙ୍କୁ ପୁନଃ ପ୍ରକାଶିତ କଲେ । କାହିଁକି ? ସୂର୍ଯ୍ୟାସ୍ତ ହୋଇ ଅଛି ଭ୍ରମରେ, ଜୟଦ୍ରଥ ଅର୍ଜ୍ଜୁନଙ୍କ ସମ୍ମୁଖକୁ ଆସିବେ, ଏହିରୂପ ଭ୍ରାନ୍ତିର ସୃଷ୍ଟି ନିମିତ୍ତ ? ଏହିରୂପ ଭ୍ରାନ୍ତିରେ ପଡ଼ି ଜୟଦ୍ରଥ ଏବଂ ତାଙ୍କର ରକ୍ଷକ ଗଣ, ଉଲ୍ଲସିତ ଏବଂ ଅନବହିତ ହେବେ, ଏହାହିଁକଣ ଅଭିପ୍ରେତ ? ଏହିଠାରେ କାବ୍ୟର ଏକ ସ୍ତର ଉପରେ ଆଉ ଏକସ୍ତର ନିହିତ ହୋଇଥିବାର ସ୍ପଷ୍ଟ ଦେଖା ଯାଏ । ଏକଦିଗରେ ଦେଖା ଯାଏ ଯେ, ଏରୂପ ଭ୍ରାନ୍ତିଜନନର କୌଣସି ପ୍ରୟୋଜନ ଥିଲା ନାହିଁ । ଯୋଗମାୟା ବିକାଶର ପୂର୍ବେ ମଧ୍ୟ ଅର୍ଜ୍ଜୁନ ଜୟଦ୍ରଥଙ୍କୁ ଦେଖି ପାରୁଥିଲେ, ଏବଂ ସେ ଜୟଦ୍ରଥଙ୍କୁ ପ୍ରହାର କରୁଥିଲେ, ଜୟଦ୍ରଥ ବି ତାଙ୍କୁ ପ୍ରହାର କରୁଥିଲା । ସୂର୍ଯ୍ୟାବରଣର ପରେ ମଧ୍ୟ ଠିକ୍ ତାହାହିଁ ହେବାକୁ ଲାଗିଲା । ସୂର୍ଯ୍ୟାବରଣର ପୂର୍ବେ ବି ଅର୍ଜ୍ଜୁନଙ୍କୁ ଯେରୂପ କରିବାକୁ ହେଉଥିଲା, ବର୍ତ୍ତମାନ

ବି ଠିକ୍ ସେହିରୂପ ଦେଖାଇବାକୁ ଲାଗିଲା । ସମସ୍ତ କୌରବ-ବୀରଗଣଙ୍କୁ ପରାଭୂତ ନ କରି ଅର୍ଜ୍ଜୁନ ଜୟଦ୍ରଥଙ୍କୁ ନିହତ କରି ପାରିଲେ ନାହିଁ । ଆଉ ଏକ ବିଗରେ ଏହି ସବୁ ଉକ୍ତିର ବିରୋଧୀ, ସୂର୍ଯ୍ୟାବରଣ କାରଣୀ ଯୋଗମାୟାଙ୍କର ବିକାଶ । ଏହି ଭ୍ରାନ୍ତିସୃଷ୍ଟିର ପ୍ରୟୋଜନ, ପରେ ପରିଚ୍ଛେଦରେ ବୁଝାଇ ଅଛୁ ।

## ତୃତୀୟ ପରିଚ୍ଛେଦ

## ଦ୍ୱିତୀୟ ସ୍ତରର କବି

ଆମ୍ଭେମାନେ ଏତେଦୂର ପର୍ଯ୍ୟନ୍ତ ସରଳ ପଥରେ, ସୁବିଧାରେ ଚାଲି ଆସୁଥିଲୁ; କିନ୍ତୁ ବର୍ତ୍ତମାନଠାରୁ ଘୋରତର ଗୋଳଯୋଗ । ମହାଭାରତ ସମୁଦ୍ରବିଶେଷ, କିନ୍ତୁ ଏ ପର୍ଯ୍ୟନ୍ତ ଆମେ, ତାହାର ସ୍ଥିର ବାରିରାଶି ମଧ୍ୟରେ ମଧୁର ମୃଦୁଗମ୍ଭୀର ଶବ୍ଦ ଶୁଣୁ ଶୁଣୁ ସୁଖରେ ନୌକାଯାତ୍ରା କରୁଥିଲୁ । ବର୍ତ୍ତମାନ ସହସା ଆମେ ଘୋର ବାତ୍ୟାରେ ପଡ଼ି, ତରଙ୍ଗାଭିଘାତରେ ପୁନଃ ପୁନଃ ଉତ୍କ୍ଷିପ୍ତ ନିକ୍ଷିପ୍ତ ହେବୁ । କାରଣ, ବର୍ତ୍ତମାନ ଆମେ ବିଶେଷ ପ୍ରକାରେ ମହାଭାରତର ଦ୍ୱିତୀୟ ସ୍ତର କବିଙ୍କ ହାତରେ ପଡ଼ିଲୁ । ତାଙ୍କ ହାତରେ କୃଷ୍ଣଚରିତ୍ର ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଅଛି । ଯାହା ଉଦାର ଥିଲା, ତାହା ବର୍ତ୍ତମାନ କ୍ଷୁଦ୍ର ଓ ସଙ୍କୀର୍ଣ୍ଣ ହୋଇ ପଡ଼ିଅଛି ; ଯାହା ସରଳ, ତାହା ବର୍ତ୍ତମାନ କୌଶଳମୟ । ଯାହା ସତ୍ୟମୟ ଥିଲା, ତାହା ବର୍ତ୍ତମାନ ଅସତ୍ୟ ଓ ପ୍ରବଞ୍ଚନାର ଆକର; ଯାହା ନ୍ୟାୟ ଓ ଧର୍ମ୍ମର ଅନୁମୋଦିତ ଥିଲା, ତାହା ବର୍ତ୍ତମାନ ଅନ୍ୟାୟ ଓ ଅଧର୍ମ୍ମରେ କଳୁଷିତ । ଦ୍ୱିତୀୟ ସ୍ତରର କବିଙ୍କ ହାତରେ କୃଷ୍ଣଚରିତ୍ର ଏହିରୂପ ବିକାର ପ୍ରାପ୍ତ ହୋଇଅଛି ।

କିନ୍ତୁ କାହିଁ ଏହା ହେଲ ? ଦ୍ୱିତୀୟ ସ୍ତରର କବି ନିତାନ୍ତ ଶୁଦ୍ଧ କବି ନୁହନ୍ତି ; ତାଙ୍କର ସୃଷ୍ଟିକୌଶଳ ଜାଜ୍ୱଲ୍ୟମାନ । ସେ ଧର୍ମାଧର୍ମଜ୍ଞାନଶୂନ୍ୟ ନୁହନ୍ତି । ତେବେ ସେ କୃଷ୍ଣଙ୍କ ଏପରି ଦଶା ଘଟାଇଛନ୍ତି କାହିଁକି ? ତାହାର ଅତି ନିଗୂଢ଼ ତାତ୍ପର୍ଯ୍ୟ ଦେଖା ଯାଏ ।

ପ୍ରଥମତଃ ଆମେ ପୁନଃ ପୁନଃ ଦେଖିଅଛୁଁ ଓ ଦେଖିବା ଯେ, କୃଷ୍ଣ ପ୍ରଥମ ସ୍ତରର କବିଙ୍କ ହାତରେ ଈଶ୍ୱରାବତାର ବୋଲି ପରିସ୍ଫୁଟ ନୁହନ୍ତି । ସେ ନିଜେତ ସେ କଥା ମୁହଁରେ ସୁଦ୍ଧା ଆଣନ୍ତି ନାହିଁ ; ପୁନଃ ପୁନଃ ଆପଣାର ମାନବୀ ପ୍ରକୃତିକୁ ପ୍ରବାଦିତ ଓ ପରିଚିତ କରନ୍ତି ; ଏବଂ ମାନୁଷୀ ଶକ୍ତି ଅବଲମ୍ବନ କରି କାର୍ଯ୍ୟ କରନ୍ତି । କବି ମଧ୍ୟ ପ୍ରାୟ ସେଇ ଭାବରେ ତାଙ୍କୁ ସ୍ଥାପିତ କରିଅଛନ୍ତି । ପ୍ରଥମ ସ୍ତରରେ ଏପରି ସନ୍ଦେହ ମଧ୍ୟ ହୁଏ ଯେ, ଯେତେବେଳେ ଏହା ପ୍ରଣୀତ ହୋଇଥିଲା, ସେତେବେଳେ ହୁଏତ କୃଷ୍ଣ ଈଶ୍ୱରାବତାର ବୋଲି ସର୍ବଜନ ସ୍ୱୀକୃତ ନୁହନ୍ତି, ତାଙ୍କ ନିଜ ମନରେବି ସେ ଭାବ ସବୁ ସମୟରେ ବିରାଜମାନ ନୁହେଁ । ମୂଳ କଥା, ମହାଭାରତର ପ୍ରଥମ ସ୍ତର କେତେଗୁଡ଼ିଏ ପ୍ରାଚୀନ କିମ୍ବଦନ୍ତୀର ସଂଗ୍ରହ ମାତ୍ର, ଏବଂ କାବ୍ୟାଳଙ୍କାରର କିଛିକିଛି ରଞ୍ଜିତ ; ଏକ ଆଖ୍ୟାୟିକାର ସୂତ୍ରରେ ଯଥାଯଥ ସନ୍ନିବେଶପ୍ରାପ୍ତ । କିନ୍ତୁ ଯେତେବେଳେ ଦ୍ୱିତୀୟ ସ୍ତର ମହାଭାରତରେ ପ୍ରବିଷ୍ଟ ହେଲା, ସେତେବେଳେ ବୋଧହୁଏ, ଶ୍ରୀକୃଷ୍ଣଙ୍କ ଈଶ୍ୱରତ୍ୱ ସର୍ବତ୍ର ସ୍ୱୀକୃତ । ଅତଏବ ଦ୍ୱିତୀୟ ସ୍ତରର କବି ତାଙ୍କୁ ଈଶ୍ୱରାବତାର ସ୍ୱରୂପରେ ସ୍ଥାପିତ ଓ ନିଯୁକ୍ତ କରିଛନ୍ତି । ତାଙ୍କ ରଚନାରେ କୃଷ୍ଣମଧ୍ୟ ଅନେକବାର ନିଜର ଈଶ୍ୱରତ୍ୱର ପରିଚୟ ଦେଇ ଥାନ୍ତି, ଏବଂ ଐଶୀଶକ୍ତି ଦ୍ୱାରା କାର୍ଯ୍ୟ

ନିର୍ବାହ କରନ୍ତି । କିନ୍ତୁ ଈଶ୍ୱର ପୁଣ୍ୟମୟ, କିଏ ମଧ୍ୟ ତାହା ଜାଣନ୍ତି । ତେବେ, ଗୋଟାଏ ତତ୍ତ୍ୱ ପରିସ୍ଫୁଟ କରିବା ପାଇଁ ତାଙ୍କୁ ବଡ଼ ବ୍ୟସ୍ତ ଦେଖାଯାଏ । ଇଉରୋପୀୟମାନେ ମଧ୍ୟ ସେହି ସେହି ତତ୍ତ୍ୱ ନେଇ ବଡ଼ ବ୍ୟସ୍ତ । ସେମାନେ କହନ୍ତି, ଭଗବାନ ଦୟାମୟ, କରୁଣାକର ସେ କେବଳ ଜୀବ ସୃଷ୍ଟି କରିଛନ୍ତି; ଜୀବର ମଙ୍ଗଳହିଁ ତାଙ୍କର କାମନା । ତେବେ ପୃଥିବୀରେ ଦୁଃଖ କାହିଁକି ? ସେ ପୁଣ୍ୟମୟ, ପୁଣ୍ୟହିଁ ତାଙ୍କର ଅଭିପ୍ରେତ । ତେବେ ଆଉ ପୃଥିବୀରେ ପାପ ଆସିଲା କେଉଁଠାରୁ ? ଖ୍ରୀଷ୍ଟାନଙ୍କ ପକ୍ଷେ ଏ ତତ୍ତ୍ୱର ମୀମାଂସା ବଡ଼ କଷ୍ଟକର, କିନ୍ତୁ ହିନ୍ଦୁ ପକ୍ଷରେ ତାହା ସହଜ । ହିନ୍ଦୁଙ୍କ ମତରେ ଈଶ୍ୱରହିଁ ଜଗତ୍ । ସେ ନିଜେ ସୁଖ ଦୁଃଖ, ପାପପୁଣ୍ୟର ଅତୀତ । ଆମେ ଯାହାକୁ ସୁଖ ଦୁଃଖ କହୁ ଥାଉଁ, ତାଙ୍କ ନିକଟରେ ସୁଖ ଦୁଃଖ ନୁହେଁ, ଆମେ ଯାହାକୁ ପାପପୁଣ୍ୟ କହୁଁ, ତାହା ତାଙ୍କ ନିକଟରେ ପାପ ପୁଣ୍ୟ ନୁହେଁ । ସେ ଲୀଳା ନିମିତ୍ତ ଏହି ଜଗତ ସୃଷ୍ଟି କରିଛନ୍ତି । ଜଗତ୍ ତାଙ୍କଠାରୁ ଭିନ୍ନ ନୁହେଁ - ତାଙ୍କରହିଁ ଅଂଶ । ସେ ଆପଣାର ସତ୍ତାକୁ ଅବିଦ୍ୟାରେ ଆବୃତ କରିଥିବା ହେତୁ ତାହା ସୁଖଦୁଃଖ ପାପପୁଣ୍ୟର ଆଧାର ହୋଇଅଛି । ଅତଏବ ସୁଖଦୁଃଖ ପାପ ପୁଣ୍ୟ ତାଙ୍କର ମାୟାଜନିତ । ତାଙ୍କରିଠାରୁ ସୁଖଦୁଃଖ ଓ ପାପପୁଣ୍ୟ । ଦୁଃଖ ଯେ ପାଉଁ, ତାଙ୍କର ମାୟା ; ପାପ ଯେ କରୁଁ ତାଙ୍କର ମାୟା । ବିଷ୍ଣୁପୁରାଣରେ କବି କୃଷ୍ଣପୀଡ଼ିତ କାଳିୟ ସର୍ପ ମୁଖରେ ଏହି କଥା ଦେଇଛନ୍ତି,—

ଯଥାହଂ ଭବତା ସୃଷ୍ଟୋ ଜାତ୍ୟା ରୂପେଣ ଚେଶ୍ୱର ।
ସ୍ୱଭାବେନ ଚ ସଂଯୁକ୍ତସ୍ତଥେଦଂ ଚେଷ୍ଟିତଂ ମମ ।

ଅର୍ଥାତ୍ "ତୁମେ ମୋର ସର୍ପଜାଣିପୂ କରିଅଛ, ତେଣୁ ମୁଁ ହିଂସା କରେ ।" ପ୍ରହ୍ଲାଦ,ବିଷ୍ଣୁଙ୍କ ସ୍ତବ କରିବା ସମୟରେ କହୁଅଛନ୍ତି,

"ବିଦ୍ୟାବିଦ୍ୟେ ଭବାନ ସତ୍ୟମସତ୍ୟଂ ତ୍ୱଂ ବିଷାମୃତେ ।" (ବିଷ୍ଣୁପୁରାଣ । ୧ ଅଂଶ,୧୯ ଅଧ୍ୟାୟ) "ତୁମେ ବିଦ୍ୟା, ତୁମେ ହି ଅବିଦ୍ୟା, ତୁମେ ସତ୍ୟ, ତୁମେ ହି ଅସତ୍ୟ, ତୁମେ ବିଷ, ତୁମେ ହି ଅମୃତ ।" ତାଙ୍କ ଛଡ଼ା ଜଗତରେ କିଛିହିଁ ନାହିଁ । ଧର୍ମ, ଅଧର୍ମ, ଜ୍ଞାନ, ଅଜ୍ଞାନ, ସତ୍ୟ, ଅସତ୍ୟ, ଅନ୍ୟାୟ, ବୁଦ୍ଧି, ଦୁର୍ବୁଦ୍ଧି ସବୁ ତାଙ୍କଠାରୁ, ସେ ଗୀତାରେ ସ୍ୱୟଂ କହୁଛନ୍ତି,

ଯେ ଚୈବ ସାତ୍ତ୍ୱିକା ଭାବା ରାଜସାସ୍ତାମସାଶ୍ଚ ଯେ ।
ମତ୍ତ ଏବେତି ତାନ୍ ବିଦ୍ଧି ନ ତ୍ୱହଂ ତେଷୁ ତେ ମୟି ॥

"ଯାହା ସାତ୍ତ୍ୱିକ ଭାବ ବା ରାଜସ ବା ତାମସ, ସମସ୍ତ ମୋଠାରୁ ଜାଣିବ । ମୁଁ ତାହାର ବଶ ନୁହେଁ, ସେ ସବୁ ମୋର ଅଧୀନ" ଶାନ୍ତି ପର୍ବରେ ଭୀଷ୍ମ ଯେଉଁଠାରେ କୃଷ୍ଣଙ୍କୁ "ସତ୍ୟାତ୍ମନେ ନମଃ," "ଧର୍ମାତ୍ମନେ ନମଃ," ବୋଲି ସ୍ତବ କରୁଛନ୍ତି ସେଠାରେବି "କାମାତ୍ମନେ ନମଃ," "ଘୋରାତ୍ମନେ ନମଃ," "କ୍ରୋଧୀୟାତ୍ମନେ ନମଃ "ଦୃପ୍ତାତ୍ମନେ ନମଃ" ଇତ୍ୟାଦି ଶବ୍ଦରେ ନମସ୍କାର କରୁଛନ୍ତି; ଏବଂ ଉପସଂହାରରେ କହୁଛନ୍ତି,, "ସର୍ବାତ୍ମନେ ନମଃ ।" ପ୍ରାଚୀନ ହିନ୍ଦୁଶାସ୍ତ୍ରରୁ ଏରୂପ ବାକ୍ୟ ଉଦ୍ଧୃତ କରି ବହୁ ଶତ ପୃଷ୍ଠା ପୂରଣ କରାଯାଇ ପାରେ ।

ଯଦି ତାହା ହୁଏ । ତେବେ ମନୁଷ୍ୟଙ୍କୁ ଗୋଟାଏ ଗୁରୁତର କଥା ବୁଝାଇ ପାରେ । ଦୁଃଖ ଜଗଦୀଶ୍ୱରପ୍ରେରିତ, ତାଙ୍କ ଭିନ୍ନ ଏହାର ଅନ୍ୟ କାରଣ ନାହିଁ । ଯେଉଁ ପାପିଷ୍ଠ ଏଥି ନିମିତ୍ତ ନିନ୍ଦିତ ଏବଂ ଦଣ୍ଡନୀୟ, ତାହା ସମ୍ବନ୍ଧରେ ଲୋକଙ୍କୁ ବୁଝାଇ

ପାରେ, ଏହାର ପାପବୃଦ୍ଧି ଜଗଦୀଶ୍ୱର ପ୍ରବର୍ତ୍ତିତ, ଏହାର ବିଗ୍ରହର ସେ କର୍ତ୍ତା, ତୁମେ କିଏ ?

ଏହି ତତ୍ତ୍ୱର ଅବତାରଣରେ ବିଂଶଶତ୍ ଶ୍ରେଣୀର କବି, ଭିତରେ ଭିତରେ ପ୍ରବୃତ୍ତ । ଶ୍ରେଷ୍ଠ କବିମାନେ କଦାପି ଆଧୁନିକ ଲେଖକମାନଙ୍କ ପରି ଭୂମିକାରେ ସବୁ କଥା କହି ଦେଇ, କାବ୍ୟର ଅବତାରଣ କରନ୍ତି ନାହିଁ । ଯତ୍ନପୂର୍ବକ ସେମାନଙ୍କ ମର୍ମ୍ମାର୍ଥ ଗ୍ରହଣ କରିବା ନିମିତ୍ତ ଚେଷ୍ଟା କରିବାକୁ ହୁଏ । ସେକସପିୟରଙ୍କ ଖଣ୍ଡିଏ ଖଣ୍ଡିଏ ନାଟକର ମର୍ମ୍ମାର୍ଥ ଗ୍ରହଣ କରିବା ନିମିତ୍ତ କେତେ ସହସ୍ର କୃତବିଦ୍ୟ ପ୍ରତିଭାଶାଳୀ ବ୍ୟକ୍ତି କେତେ ଭାବିଲେ, କେତେ ଲେଖିଲେ, ଆଉ ତାହା ବୁଝିବା ନିମିତ୍ତ କେତେ ମୁଣ୍ଡ ଖେଳାଇଲେ; କିନ୍ତୁ ଆମର ଏହି ଅର୍ଣ୍ଣବ ମହାଭାରତ ଗ୍ରନ୍ଥର ଗୋଟାଏ ଅଧ୍ୟାୟର ପ୍ରକୃତ ମର୍ମ୍ମ ଗ୍ରହଣ କରିବା ନିମିତ୍ତ ଆମେ କେବେ କେଲେ ଏକ ଦଣ୍ଡ ପାଇଁ ସୁଦ୍ଧା କୌଣସି ଚେଷ୍ଟା କଲୁ ନାହିଁ । ଯେପରି ହରିସଂକୀର୍ତ୍ତନକାଳରେ ଏକ ଦିଗରେ ବୈଷ୍ଣବମାନେ, ଖୋଳରେ ହାତ ବାଜିଲା ମାତ୍ରେ କାନ୍ଦି କାନ୍ଦି ମାଟିରେ ଗଡ଼ାଗଡ଼ି ଦିଅନ୍ତି, ଆଉ ଦିଗରେ ନବ୍ୟ ଶିକ୍ଷିତମାନେ "Nuisance !" (ଉତ୍ପାତ) ବୋଲି ଚିତ୍କାର କରୁ କରୁ ପଶ୍ଚାଦ୍ଧାବିତ ହୁଅନ୍ତି, ସେହିପରି ପ୍ରାଚୀନ ହିନ୍ଦୁ ଗ୍ରନ୍ଥର ନାମ ଶୁଣିବା ମାତ୍ରେ ଦଳେ ମାଟିରେ ପଡ଼ି ଗଡ଼ାଗଡ଼ି ଦିଅନ୍ତି—ଓ ଭକ୍ତିରସରେ ଦେଶକୁ ଆପ୍ଲୁତ କରନ୍ତି, ଆଉଦଳେ ସବୁମିଥ୍ୟା, ଉପଧର୍ମ୍ମ, ଅଶ୍ରାବ୍ୟ, ପରିହାର୍ଯ୍ୟ, ଉପହାସାସ୍ପଦ ବିବେଚନା କରନ୍ତି । ବୁଝିବାର ଚେଷ୍ଟା କାହାରି ନାହିଁ । ଶବ୍ଦାର୍ଥ ବୋଧ ହେଲେ ହିଁ ସେମାନେ ଯଥେଷ୍ଟ ବୁଝିଲେ ବୋଲି ମନେ କରନ୍ତି । ଦୁଃଖ ଉପରେ ଦୁଃଖ ଏହି ଯେ, କେହି ବୁଝାଇଲେ ସୁଦ୍ଧା ବୁଝିବାକୁ ଇଚ୍ଛା କରନ୍ତି ନାହିଁ ।

ଈଶ୍ୱରହିଁ ସବୁ—ଈଶ୍ୱରଙ୍କଠାରୁ ସମସ୍ତ । ତାଙ୍କଠାରୁ ଜ୍ଞାନ
ତାଙ୍କଠାରୁ ଜ୍ଞାନର ଅଭାବ ବା ଭ୍ରାନ୍ତି, ତାଙ୍କଠାରୁ ବୁଦ୍ଧି,
ତାଙ୍କଠାରୁ ଦୁର୍ବୁଦ୍ଧି । ତାଙ୍କଠାରୁ ସତ୍ୟ, ପୁଣି ତାଙ୍କଠାରୁ
ଅସତ୍ୟ । ତାଙ୍କଠାରୁ ନ୍ୟାୟ, ଏବଂ ତାଙ୍କଠାରୁ ଅନ୍ୟାୟ ।

ମନୁଷ୍ୟଜୀବନର ପ୍ରଧାନ ଉପାଦାନ ଏଇ ଜ୍ଞାନ ଓ ବୁଦ୍ଧି,
ସତ୍ୟ ଓ ନ୍ୟାୟ, ଏବଂ ତଦଭାବେ ଭ୍ରାନ୍ତି, ଦୁର୍ବୁଦ୍ଧି, ଅସତ୍ୟ ବା
ଅନ୍ୟାୟ ସମସ୍ତ ଈଶ୍ୱରପ୍ରେରିତ । କିନ୍ତୁ ଜ୍ଞାନ, ବୁଦ୍ଧି ସତ୍ୟ ଏବଂ
ନ୍ୟାୟ ତାଙ୍କଠାରୁ, ଏହା ବୁଝାଇବା ପ୍ରୟୋଜନ ନାହିଁ; ହିନ୍ଦୁ
ନିକଟରେ ତାହା ସ୍ୱତଃସିଦ୍ଧ । ତେବେ ଭ୍ରାନ୍ତି, ଦୁର୍ବୁଦ୍ଧି ପ୍ରଭୃତି
ବି ଯେ ତାଙ୍କଠାରୁ, ତାହା ମନୁଷ୍ୟର ହୃଦୟଙ୍ଗମ କରିବାର
ପ୍ରୟୋଜନ ଅଛି । ଅନ୍ତତଃ ମହାଭାରତର ବିକ୍ଷିପ୍ତ ସ୍ତରର କବି,
ଏପରି ବିବେଚନା କରନ୍ତି । ଆଧୁନିକ ଜ୍ୟୋତିର୍ବିଦ୍‌ମାନେ କହି
ଥାନ୍ତି, ଆମେ ଚନ୍ଦ୍ରର ଗୋଟିଏ ପୃଷ୍ଠ ଚିରକାଳ ଦେଖୁ, ଅପର
ପୃଷ୍ଠ କେବେହେଁ ଦେଖିବାକୁ ପାଉ ନାହିଁ । ଏହି କବି ସେହି
ଅଦୃଷ୍ଟପୂର୍ବ ଜଗତ୍‌ରହସ୍ୟର ଅପର ପୃଷ୍ଠ ଆମକୁ ଦେଖାଇବାକୁ
ଚାହାନ୍ତି । ସେ ଜୟଦ୍ରଥବଧରେ ଦେଖାଉଛନ୍ତି, ଭ୍ରାନ୍ତି ଈଶ୍ୱର
ପ୍ରେରିତ, ଘଟୋତ୍କଚବଧରେ ଦେଖାଇବେ, ଦୁର୍ବୁଦ୍ଧି ବି
ତାଙ୍କର ପ୍ରେରିତ, ଦ୍ରୋଣବଧରେ ଦେଖାଇବେ । ଅସତ୍ୟ ବି
ଈଶ୍ୱରଙ୍କଠାରୁ, ଦୁର୍ଯୋଧନବଧରେ ଦେଖାଇବେ, ଅନ୍ୟାୟ
ମଧ୍ୟ ତାଙ୍କଠାରୁ । ଆଉ ଗୋଟିଏ କଥା ବାକି ଅଛି । ଜ୍ଞାନବଳ,
ବୁଦ୍ଧିବଳ, ସତ୍ୟବଳ, ନ୍ୟାୟବଳ, ବାହୁବଳ ପାଖରେ କେହି
ନୁହେଁ । ବିଶେଷତଃ ରାଜନୀତିରେ ବାହୁବଳର ପ୍ରାଧାନ୍ୟ ।
ମହାଭାରତ ବିଶିଷ୍ଟ ପ୍ରକାରେ ରାଜନୈତିକ କାବ୍ୟ ଅର୍ଥାତ୍
ଐତିହାସିକ କାବ୍ୟ; ଇତିହାସ ଉପରେ ନିର୍ମିତ କାବ୍ୟ ।

ଅତଏବ ଏ ବାକ୍ୟରେ ବାହୁବଳର ସ୍ଥାନ, ଜ୍ଞାନ ବୁଦ୍ଧ୍ୟାଦିର ଉପରେ । ବିଶ୍ଲିଷ୍ଟ ସ୍ତରର କବି ଦେଖିବାକୁ ପାନ୍ତି ଯେ, କେବଳ ଜ୍ଞାନ, ଭ୍ରାନ୍ତି, ବୁଦ୍ଧି ଦୁର୍ବୁଦ୍ଧି, ସତ୍ୟାସତ୍ୟ, ଏବଂ ନ୍ୟାୟାନ୍ୟାୟ ଐଶିକ ନିୟୋଗାଧୀନ, ଏହା କହିଲେ ବା ରାଜନୈତିକ ତତ୍ତ୍ୱଟା ସମ୍ପୂର୍ଣ୍ଣ ହେଲା ନାହିଁ, ବାହୁବଳ ଓ ବଳବଳର ଅଭାବ ମଧ୍ୟ ତାହାହିଁ । ସେ ଏହା ସ୍ପଷ୍ଟୀକୃତ କରିବା ପାଇଁ କୌଶଳେ ଏହି ପ୍ରଣୀତ କରିଛନ୍ତି । ସେଥିରେ କୃଷ୍ଣଙ୍କ ଅଭାବରେ ସ୍ୱୟଂ ଅର୍ଜ୍ଜୁନ ଲଗୁଡ଼ଧାରୀ କୃଷକଗଣଙ୍କ ନିକଟରେ ପରାଭୂତ ହେଲେ ।

ମୁଁ ଯାହାକୁ ଐଶିକ ନିୟୋଗ କହୁଅଛି, ଅଥବା ବିଶ୍ଲିଷ୍ଟ ସ୍ତରର କବି ଯାହା ଈଶ୍ୱର ପ୍ରେରଣା ବୋଲି ବୁଝନ୍ତି । ଇଉରୋପୀୟ-ମାନେ ତାହା ସ୍ଥାନରେ "Law" ସଂସ୍ଥାପିତ କରିଛନ୍ତି । ଏହି ମହାଭାରତୀୟ କବିମାନଙ୍କ ବୁଦ୍ଧିରେ "Law" କୌଣସି ସ୍ଥାନ ପାଇଥିଲା କି ନାହିଁ, ମୁଁ କହି ପାରିବି ନାହିଁ । ତେବେ ଏହା କହି ପାରେ ଯେ, ଯାହା "Law" ର ଉପର, ଯାହାଠାରୁ "Law," ତାହା ସେମାନେ ଭଲରୂପେ ବୁଝାଇଥିଲେ । ସେମାନେ ବୁଝିଥିଲେ, ସମସ୍ତ କିଛି ହିଁ ଈଶ୍ୱରେଚ୍ଛା । କୃଷ୍ଣଙ୍କୁ କର୍ମକ୍ଷେତ୍ରରେ ଅବତାରିତ କରି, ଏହି କବି ସେହି ଈଶ୍ୱରେଚ୍ଛା ବୁଝାଇବାକୁ ଚେଷ୍ଟା କଲେ ।

## ଚତୁର୍ଥ ପରିଚ୍ଛେଦ
## ଘଟୋତ୍କଚବଧ

ଜୟଦ୍ରଥବଧରେ କୃଷ୍ଣ ସମ୍ବନ୍ଧରେ ଆଉ ଗୋଟାଏ ଅନୈ-ସର୍ଗିକ କଥାଅଛି । ଅର୍ଜ୍ଜୁନ ଜୟଦ୍ରଥଙ୍କ ଶିରଚ୍ଛେଦରେ ଉଦ୍ୟକ୍ତ ହେଲେ, କୃଷ୍ଣ କହିଲେ ଗୋଟାଏ ଉପଦେଶ ଦେଉଅଛି ଶୁଣ । ଏହାଙ୍କ ପିତା, ପୁତ୍ର ନିମିତ୍ତ ତପସ୍ୟା କରି ଏହି ବର ପାଇ ଅଛନ୍ତି

ଯେ, ଯେ ଜୟଦ୍ରଥଙ୍କ ମୁଣ୍ଡ ମାଟିରେ ପକାଇବ, ତାହାର ମସ୍ତକ ବି ବିଦୀର୍ଣ୍ଣ ହୋଇ ଖଣ୍ଡ ଖଣ୍ଡ ହେବ । ଅତଏବ ତୁମେ ତାଙ୍କ ମୁଣ୍ଡ ମାଟିରେ ପକାଅ ନାହିଁ । ତାଙ୍କ ମସ୍ତକ ବାଣରେ ସଞ୍ଚାଳିତ କରି, ଯେଉଁଠାରେ ତାଙ୍କ ପିତା ସନ୍ଧ୍ୟା-ବନ୍ଦନାଦି କରୁଛନ୍ତି, ସେଠାକୁ ନେଇ ଯାଇ ତାଙ୍କ କୋଡରେ ନିକ୍ଷିପ୍ତ କର । ଅର୍ଜ୍ଜୁନ ତାହାହିଁ କଲେ । ବୁଢ଼ା ସନ୍ଧ୍ୟା କରି ଉଠିବା ସମୟରେ ଛିନ୍ନ ମସ୍ତକ ତାଙ୍କ କୋଳରୁ ମାଟିରେ ପଡ଼ିଗଲା । ତତ୍‌କ୍ଷଣାତ୍ ବୁଢାର ମୁଣ୍ଡ ଫାଟି ଖଣ୍ଡ ଖଣ୍ଡ ହୋଇଗଲା । ଅନୈସର୍ଗିକ ବୋଲି ଆମେ କଥାଟା ପରିତ୍ୟାଗ କରି ପାରୁ । ତତ୍‌ପରେ ଘଟୋତ୍କଚବଧ ଘଟିତ ବୀଭତ୍ସ କାଣ୍ଡ ବର୍ଣ୍ଣିତ କରିବାକୁ ଆମେ ବାଧ୍ୟ ।

ହିଡ଼ମ୍ବ ନାମରେ ଗୋଟିଏ ରାକ୍ଷସ ଥିଲା, ହିଡ଼ମ୍ବା ନାମରେ ରାକ୍ଷସୀ ତାହାର ଭଗିନୀ । ଭୀମ କଦାଚିତ୍ ରାକ୍ଷସଟାକୁ ମାରି, ରାକ୍ଷସୀଟାକୁ ବିବାହ କଲେ । ବରକନ୍ୟା ଯେ ପରସ୍ପରର ଅନୁପଯୋଗୀ, ଏପରି କଥା କହି ହେବ ନାହିଁ । ତାର ପରେ ସେଇ ରାକ୍ଷସୀର ଗର୍ଭରେ ଭୀମଙ୍କର ଗୋଟିଏ ପୁତ୍ର ଜନ୍ମିଲା ତାର ନାମ ଘଟୋତ୍କଚ । ସେଟା ବି ରାକ୍ଷସ । ସେ ବଡ଼ ବଳବାନ୍ । ଏହି କୁରୁକ୍ଷେତ୍ର ଯୁଦ୍ଧରେ ପିତୃପିତୃବ୍ୟଙ୍କ ସାହା-ଯ୍ୟାର୍ଥ ଦଳ ବଳ ନେଇ ଆସି ଯୁଦ୍ଧ କରୁଥିଲା । ମୁଁ ତାର କିଛି ବୁଦ୍ଧି ବୀରତ୍ୱ ଦେଖିପାରୁ ନାହିଁ—ସେ ପ୍ରତିଯୋଦ୍ଧୃଗଣଙ୍କୁ ଭୋଜନ ନ କରି, ସେମାନଙ୍କ ସହିତ ବାଣାଦି ଦ୍ୱାରା ମନୁଷ୍ୟଯୁଦ୍ଧ କରୁଥିଲା । ତାହାର ଦୁର୍ଭାଗ୍ୟବଶତଃ ଦୁର୍ଯ୍ୟୋଧନର ସେନା ମଧ୍ୟରେ ଗୋଟାଏ ରାକ୍ଷସ ଥିଲା । ରାକ୍ଷସ ଦୁଇଟା ମଧ୍ୟ ଖୁବ ଯୁଦ୍ଧ କରନ୍ତି ।

ଏଣେ, ଏହିଦିନ, ଗୋଟାଏ ଭୟଙ୍କର କାଣ୍ଡ ଉପସ୍ଥିତ ହେଲା । ଅନ୍ୟଦିନରେ କେବଳ ଦିନରେ ଯୁଦ୍ଧ ହୁଏ । ଆଜି ରାତିରେ ଆଲୁଅ ଜାଳି ଯୁଦ୍ଧ । ରାତିରେ ନିଶାଚରର ବଳ ବଢେ; ଅତଏବ ଘଟୋତ୍କଚ ଦୁର୍ନିବାର୍ଯ୍ୟ ହେଲା । କୌରବଙ୍କର କେହି ହେଲେ ତାର ସମ୍ମୁଖୀନ ହୋଇ ପାରିଲେ ନାହିଁ । କୌରବ ମାନଙ୍କ ରାକ୍ଷସଟା ବି ମରିଗଲା । କେବଳ ଏକା କର୍ଣ୍ଣ ଘଟୋତ୍କଚର ସମକକ୍ଷ ହୋଇ ରାକ୍ଷସଟା ସହିତ ଯୁଦ୍ଧ କରିବାକୁ ଲାଗିଲେ । ଶେଷରେ କର୍ଣ୍ଣମଧ୍ୟ ଆଉ ସମ୍ଭାଳି ପାରିଲେ ନାହିଁ । ତାଙ୍କ ନିକଟରେ ଇନ୍ଦ୍ରଦତ୍ତ ଏକପୁରୁଷଘାତିନୀ ଗୋଟାଏ ଶକ୍ତିଥିଲା । ଏହି ଶକ୍ତି ସମ୍ବନ୍ଧରେ ଗୋଟିଏ ଅଦ୍ଭୁତ ଗଳ୍ପ ଅଛି - ପାଠକଙ୍କୁ ତତ୍‌ପାଠନରେ ପୀଡିତ କରିବାକୁ ମୁଁ ଅନିଚ୍ଛୁକ । ଏତିକି କହିଲେହିଁ ଯଥେଷ୍ଟ ହେବ ଯେ, ଏହି ଶକ୍ତି କେହି କୌଣସି ପ୍ରକାର ବ୍ୟର୍ଥ କରି ପାରେ ନାହିଁ, ଜଣଙ୍କ ପ୍ରତି ପ୍ରଯୁକ୍ତ ହେଲେ ସେ ମରିବ, କିନ୍ତୁ ଶକ୍ତି ଆଉ ଫେରିବ ନାହିଁ ; ତେଣୁ ଏକପୁରୁଷଘାତିନୀ । କର୍ଣ୍ଣ ଏହି ଅମୋଘ ଶକ୍ତି ଅର୍ଜୁନବଧାର୍ଥ ଅଲଗା ରଖିଥିଲେ, କିନ୍ତୁ ଆଜି ଘଟୋତ୍କଚର ଯୁଦ୍ଧରେ ବିପନ୍ନ ହୋଇ ତା ପ୍ରତି ଶକ୍ତି ପ୍ରଯୁକ୍ତ କଲେ, ଘଟୋତ୍କଚ ମଲା । ମୃତ୍ୟୁକାଳରେ ବିନ୍ଧ୍ୟା ଚଳର ଏକ ପାଦ ପରିମିତ ଶରୀର ଧାରଣ କଲା, ଏବଂ ତାହାର ଭରରେ ଏକ ଅକ୍ଷୌହିଣୀ ସେନା ମଲେ ।

ଏହି ସବୁ ଅପରାଧ ନିମିତ୍ତ ପ୍ରାଚୀନ ହିନ୍ଦୁ କବିଙ୍କୁ ମାର୍ଜ୍ଜନା କରି ଯାଏ, କାରଣ, ବାଳକ ଓ ଅଶିକ୍ଷିତ ସ୍ତ୍ରୀଲୋକଙ୍କ ଏପରି ଗଳ୍ପ ବଡ଼ ମନୋହର । କିନ୍ତୁ ସେ ତା ପରେ ଯାହା ରଚନା କରିଛନ୍ତି, ତାହା ବୋଧ ହୁଏ କେବଳ ତାଙ୍କର

ଅଙ୍କୁ ମନୋହର । ସେ କହନ୍ତି, ଘଟୋତ୍‌କଚ ମରିଗଲେ ପାଣ୍ଡବମାନେ ଶୋକକାତର ହୋଇ କାନ୍ଦିବାକୁ ଲାଗିଲେ, କିନ୍ତୁ କୃଷ୍ଣ ରଥ ଉପରେ ନାଚିବାକୁ ଆରମ୍ଭ କଲେ ! ସେ ଆଜି ଗୋପବାଳକ ନୁହନ୍ତି, ପୌଢ଼ ହୋଇଅଛନ୍ତି, ଏବଂ ହଠାତ୍ ବାୟୁଗ୍ରସ୍ତ ହେବାର କଥା ବି ଗ୍ରନ୍ଥକାର କହନ୍ତି ନାହିଁ । କିନ୍ତୁ ତଥାପି ରଥ ଉପରେ ନାଚ ! କେବଳ ନାଚ ନୁହେଁ, ସିଂହନାଦ ଓ ବାହୁର ଆସ୍ଫୋଟନ ! ଅର୍ଜ୍ଜୁନ ପଚାରିଲେ, କଥା କଣ ? ନାଚୁଛ କାହିଁକି ? କୃଷ୍ଣ କହିଲେ, "କର୍ଣ୍ଣ ନିକଟରେ ଯେଉଁ ଅମୋଘ ଶକ୍ତି ଥିଲା, ଯାହା ତୁମର ବଧ ନିମିତ୍ତ ଠେକ ରଖିଥିଲା, ତାହା ଘଟୋତ୍‌କଚ ପାଇଁ ପରିତ୍ୟକ୍ତ ହୋଇ ଅଛି । ବର୍ତ୍ତମାନ ତୁମର ଆଉ ଭୟ ନାହିଁ ; ତୁମେ ବର୍ତ୍ତମାନ କର୍ଣ୍ଣ ସଙ୍ଗେ ଯୁଦ୍ଧ କରି ପାରିବ ।" ଜୟଦ୍ରଥ ବଧ ଉପଲକ୍ଷେ ଦେଖିଅଛୁଁ, କର୍ଣ୍ଣଙ୍କ ସଙ୍ଗେ ଅର୍ଜ୍ଜୁନଙ୍କର ପୁନଃ ପୁନଃ ଯୁଦ୍ଧ ହୋଇଅଛି, ଏବଂ କର୍ଣ୍ଣ ପରାଭୂତ ହୋଇଛନ୍ତି । ସେତେବେଳେ ସେହି ଐନ୍ଦ୍ରୀ-ଶକ୍ତିର କୌଣସି କଥା କାହାର ମନରେ ହୋଇ ନାହିଁ ; କବିଙ୍କର ବି ନୁହେଁ । କିନ୍ତୁ ସେତେବେଳେ ମନେ କଲେ ଜୟଦ୍ରଥ ବଧ ହୁଏ ନାହିଁ; କର୍ଣ୍ଣ ଜୟଦ୍ରଥର ରକ୍ଷକ । ସୁତରାଂ ସେତେବେଳେ ଚୁପ୍‌ଚାପ୍ ରହିଗଲେ । ଯାଉ - ଏହି ଶକ୍ତି ଘଟିତ ବୃତ୍ତାନ୍ତଟା ଅନୈସର୍ଗିକ, ସୁତରାଂ ତାହା ଆମର ଆଲୋଚନାର ଅଯୋଗ୍ୟ । ଯେଉଁ କଥାଟା କହିବା ପାଇଁ, ଘଟୋତ୍କଚବଧର କଥା ଉଠାଇଲି, ତାହା ଏହି । କୃଷ୍ଣ, ଅର୍ଜ୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେଇ କହୁଛନ୍ତି ।

"ଯାହା ହେଉ, ହେ ଧନଞ୍ଜୟ ! ମୁଁ ତୁମର ହିତାର୍ଥ ବିବିଧ ଉପାୟ ଉଦ୍ଭାବନ ପୂର୍ବକ କ୍ରମେ କ୍ରମେ ମହାବଳପରାକ୍ରାନ୍ତ

ଜରାସନ୍ଧ, ଶିଶୁପାଳ, ନିଷାଦ ଏକଲବ୍ୟ, ହିଡ଼ିମ୍ବ, କିର୍ମ୍ମୀର, ବକ, ଅଳାୟୁଧ, ଉଗ୍ରକର୍ମ୍ମା, ଘଟୋତ୍କଚ ପ୍ରଭୃତି ରାକ୍ଷସଙ୍କର ବଧ ସାଧନ କରିଅଛୁ ।" କଥାଟା ସତ୍ୟ ନୁହେଁ । କୃଷ୍ଣ ଶିଶୁପାଳଙ୍କୁ ବଧ କରିଥିଲେ ସତ୍ୟ, କିନ୍ତୁ ତାହା ଅର୍ଜ୍ଜୁନଙ୍କ ହିତାର୍ଥ ନୁହେଁ, ଶିଶୁପାଳ ତାଙ୍କୁ ସଭାମଧ୍ୟରେ ଅପମାନିତ ଓ ଯୁଦ୍ଧରେ ଆହ୍ୱାନ କରିଥିଲେ, ଏଥି ନିମିତ୍ତ ବା ଯଜ୍ଞରକ୍ଷାର୍ଥ ଜରାସନ୍ଧଙ୍କବଧର କୃଷ୍ଣ କର୍ତ୍ତା ନ ହେଲେବି ପ୍ରବର୍ତ୍ତକ, କିନ୍ତୁ ତାହା ଅର୍ଜ୍ଜୁନହିତାର୍ଥ ନୁହେଁ, କାରାରୁଦ୍ଧ ରାଜାମାନଙ୍କ ମୁକ୍ତିନିମିତ୍ତ, କିନ୍ତୁ ବକ, ହିଡ଼ିମ୍ବ, କିର୍ମ୍ମୀର ପ୍ରଭୃତି ରାକ୍ଷସମାନଙ୍କ ବଧର, ଏବଂ ଏକଲବ୍ୟର ଅଙ୍ଗୁଷ୍ଠ ଚ୍ଛେଦନ ସହିତ କୃଷ୍ଣଙ୍କର କିଛି ମାତ୍ର ସମ୍ବନ୍ଧ ନ ଥିଲା । ସେ ତାହାର କିଛିହିଁ ଜାଣନ୍ତି ନାହିଁ, ଏବଂ ଘଟନାକାଳରେ ଉପସ୍ଥିତ ମଧ୍ୟ ନ ଥିଲେ । ମହାଭାରତରେ ଗୋଟିଏ ସ୍ଥାନରେ ଦେଖାଯାଏ ଯେ, କୃଷ୍ଣ ଏକଲବ୍ୟଙ୍କୁ ବଧ କରିଥିଲେ, କିନ୍ତୁ ଏହି ଅଙ୍ଗୁଷ୍ଠଚ୍ଛେଦନର କଥା ତାହାର ବିରୋଧୀ । ଘଟଣା ଗୁଡ଼ିକ, ଅର୍ଥାତ୍ ଏକଲବ୍ୟର ଅଙ୍ଗୁଷ୍ଠଚ୍ଛେଦ ଏବଂ ରାକ୍ଷସମାନଙ୍କ ବଧ, ପ୍ରକୃତ ଘଟଣା ବି ନୁହେଁ ।

ତେବେ, ଏ ମିଥ୍ୟାକଥା କୃଷ୍ଣମୁଖରେ ସଜାଇବାର ଉଦ୍ଦେଶ କଣ ?

ଏ ସମ୍ବନ୍ଧରେ କେବଳ ଆଉ ଗୋଟିଏ କଥା କହିବି । ଭକ୍ତମାନେ କହି ପାରିବେ କୃଷ୍ଣ ଇଚ୍ଛାଦ୍ୱାରା ସମସ୍ତ କରୁଛନ୍ତି । ତାଙ୍କର ଇଚ୍ଛାରେହିଁ ହିଡ଼ିମ୍ବାଦି ବଧ, ଏବଂ ଘଟୋତ୍କଚ ପ୍ରତି କର୍ଣ୍ଣଙ୍କର ଶକ୍ତି ପ୍ରଯୁକ୍ତ ହୋଇଥିଲା । ଏ କଥା ସଙ୍ଗତ ନୁହେଁ । କୃଷ୍ଣ ନିଜେ କହୁଛନ୍ତି ଯେ, ସେ ବିବିଧ "ଉପାୟ ଉଦ୍ଭାବନ" କରି ଏହା କରିଛନ୍ତି । ଆଉ ଯଦି ଇଚ୍ଛାମୟ ସର୍ବକର୍ତ୍ତା ଇଚ୍ଛା

ଦ୍ୱାରା ଏ ସବୁ କାର୍ଯ୍ୟ ସାଧନ କରିବେ, ତେବେ ମନୁଷ୍ୟଶରୀର ଧରି ଅବତୀର୍ଣ୍ଣ ହେବାର ପ୍ରୟୋଜନ କଣ ଥିଲା ? ଆମ୍ଭେମାନେ ପୁନଃ ପୁନଃ ଦେଖିଅଛୁ ଯେ, କୃଷ୍ଣ ଇଚ୍ଛାଶକ୍ତି ଦ୍ୱାରା କୌଣସି କର୍ମ କରନ୍ତି ନାହିଁ ; ପୁରୁଷକାର ଅବଲମ୍ବନ କରନ୍ତି । ସେ ନିଜେ ମଧ୍ୟ ତାହା କହିଛନ୍ତି; ସେ କଥା ପୂର୍ବେ ଉଦ୍ଧୃତ କରିଅଛି ଦେଖାଯାଇଅଛି ଯେ, ସେ ଇଚ୍ଛା କରି ମଧ୍ୟ ଯତ୍ନ କରି ସନ୍ଧି-ସଂସ୍ଥାପନ କରି ପାରି ନାହାନ୍ତି ବା କର୍ଣ୍ଣଙ୍କୁ ଯୁଧିଷ୍ଠିରଙ୍କ ପକ୍ଷକୁ ଆଣି ପାରି ନାହାନ୍ତି । ଆଜି ଯଦି ଇଚ୍ଛା ଦ୍ୱାରା କର୍ମ ସମ୍ପନ୍ନ କରିବେ । ତେବେ ତୁଚ୍ଛ ବସ୍ତୁ ଜଡ଼ପଦାର୍ଥ ଗୋଟିଏ ଶକ୍ତି-ଅସ୍ତ୍ର ନିମିତ୍ତ ଇଚ୍ଛାମୟଙ୍କର ଏତେ ଭାବନା କାହିଁକି ?

ଏହା ଉତ୍ତରରେ ଅସଲ କଥାଟି, ଯାହା ପୂର୍ବ ପରିଚ୍ଛେଦରେ କହିଅଛି । ବୁଦ୍ଧି ଈଶ୍ୱରପ୍ରେରିତ, ଦୁର୍ବୁଦ୍ଧି ବି ଈଶ୍ୱର ପ୍ରେରିତ, କିନ୍ତୁ ଏହିକଥା କହିବାକୁ ଚାହାନ୍ତି । କର୍ଣ୍ଣ ଅର୍ଜୁନଙ୍କ ନିମିତ୍ତ ଐନ୍ଦ୍ରୀ ଶକ୍ତି ଅଲଗା ରଖିଥିଲେ, ବର୍ତ୍ତମାନ ସେ ଘଟୋତ୍କଚଙ୍କ ଉପରେ ତାହା ପରିତ୍ୟାଗ କଲେ, ଏହା କର୍ଣ୍ଣଙ୍କ ଦୁର୍ବୁଦ୍ଧି କୃଷ୍ଣ କହୁଛନ୍ତି, ତାହା ମୁଁ କହୁଅଛି; ଅର୍ଥାତ ଦୁର୍ବୁଦ୍ଧି ଈଶ୍ୱରପ୍ରେରିତ । ଶିଶୁପାଳ ଦୁର୍ବୁଦ୍ଧିବଶେ ସଭାମଧ୍ୟରେ କୃଷ୍ଣଙ୍କର ଅସହ୍ୟ ଅପମାନ କରିଥିଲେ । ଜରାସନ୍ଧ ସୈନ୍ୟସାହାଯ୍ୟରେ ଯୁଦ୍ଧ ପ୍ରବୃତ୍ତ ହେଲେ ଅଜେୟ; ପାଣ୍ଡବଙ୍କ କଥା ଦୂରେ ଥାଉ, କୃଷ୍ଣସନାଥ ଯାଦବମାନେ ମଧ୍ୟ ତାଙ୍କୁ ଜୟ କରି ପାରି ନାହାନ୍ତି । କିନ୍ତୁ ବାହୁବଳ ବଳରେ ଭୀମ ତାଙ୍କ ଅପେକ୍ଷା ବଳବାନ; ଏକାକୀ ଭୀମଙ୍କ ସଙ୍ଗେ ମଲ୍ଲପରି ବାହୁଯୁଦ୍ଧରେ ପ୍ରବୃତ୍ତ ହେବା ତାଦୃଶ ରାଜରାଜେଶ୍ୱର ସମ୍ରାଟଙ୍କ ପକ୍ଷରେ ଦୁର୍ବୁଦ୍ଧି । କୃଷ୍ଣୋକ୍ତିର ମର୍ମ ଏହିଯେ, ସେ ଦୁର୍ବୁଦ୍ଧି ମଧ୍ୟ ମୋର ପ୍ରେରିତ । ଦ୍ରୋଣାଚାର୍ଯ୍ୟ

ଅନାର୍ଯ୍ୟ ଏକଲବ୍ୟଙ୍କ ନିକଟରୁ ଗୁରୁଦକ୍ଷିଣା ସ୍ୱରୂପ ତାଙ୍କ ଦକ୍ଷିଣହସ୍ତର ଅଙ୍ଗୁଷ୍ଠି ମାଗିଥିଲେ। ସେହି ଅଙ୍ଗୁଷ୍ଠ ଗଲେ ବହୁକଷ୍ଟଲବ୍ଧ ଏକଲବ୍ୟର ଧନୁର୍ବିଦ୍ୟା ନିଷ୍ଫଳ ହୁଏ କିନ୍ତୁ ଏକଲବ୍ୟ ସେହି ପ୍ରାର୍ଥିତ ଗୁରୁଦକ୍ଷିଣା ଦେଇଥିଲେ ଏହା ଏକଲବ୍ୟଙ୍କ କାରୁଣ୍ୟ ଦୁର୍ବୁଦ୍ଧି। କୃଷ୍ଣଙ୍କ କଥାର ମର୍ମ ଏହିପରି ସେ ଦୁର୍ବୁଦ୍ଧି ତାଙ୍କ ପ୍ରେରିତ—ଈଶ୍ୱର ପ୍ରେରିତ। ଜରାସନ୍ଧବଧ ସମ୍ବନ୍ଧରେ ବି ସେହିରୂପ। ଏହି ସମସ୍ତହିଁ ଦ୍ୱିତୀୟସ୍ତରର।

## ପଞ୍ଚମ ପରିଚ୍ଛେଦ

## ଦ୍ରୋଣବଧ

ପ୍ରାଚୀନ ଭାରତବର୍ଷରେ କେବଳ ଯେ କ୍ଷତ୍ରିୟମାନେ ଯୁଦ୍ଧ କରୁଥିଲେ, ଏହା ନୁହେଁ ବ୍ରାହ୍ମଣ ଓ ବୈଶ୍ୟ ଯୋଧାଙ୍କ କଥା ଭାରତରେଇ ଅଛି। ଦୁର୍ଯୋଧନଙ୍କ ସେନାନାୟକ ମାନଙ୍କ ମଧ୍ୟରେ ତିନି ଜଣ ପ୍ରଧାନ ବୀର ବ୍ରାହ୍ମଣ :— ଦ୍ରୋଣ, ତାଙ୍କ ଶ୍ୟାଳକ କୃପ, ଏବଂ ତାଙ୍କପୁତ୍ର ଅଶ୍ୱତ୍ଥାମା। ଅନ୍ୟାନ୍ୟ ବିଦ୍ୟାପରି, ବ୍ରାହ୍ମଣମାନେ ଯୁଦ୍ଧବିଦ୍ୟାର ବି ଆଚାର୍ଯ୍ୟ ଥିଲେ। ଦ୍ରୋଣ ଓ କୃପ ଏହିରୂପ ଯୁଦ୍ଧାଚାର୍ଯ୍ୟ। ଏଥିପାଇଁ ଏମାନଙ୍କୁ ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟ କହୁଥିଲେ।

ଏଣେ ବ୍ରାହ୍ମଣଙ୍କ ସଙ୍ଗେ ଯୁଦ୍ଧରେ ବିପଦ ମଧ୍ୟ ବେଶୀ। କାରଣ, ରଣରେ ମଧ୍ୟ ବ୍ରାହ୍ମଣଙ୍କୁ ବଧ କଲେ ବ୍ରହ୍ମହତ୍ୟାର ପାତକ। ଅନ୍ତତଃ ମହାଭାରତକାର ଏହି କାରଣରୁ ବ୍ରାହ୍ମଣ ଯୋଦ୍ଧାଗଣଙ୍କୁ ନେଇ ବଡ଼ ବିପନ୍ନ, ଏହା ସ୍ପଷ୍ଟ ଦେଖା ଯାଏ। ଏଥି ନିମିତ୍ତ କୃପ ଓ ଅଶ୍ୱତ୍ଥାମା ଯୁଦ୍ଧରେ ମଲେ ନାହିଁ କୌରବ ପକ୍ଷୀୟ ସମସ୍ତେ ମଲେ, କେବଳ ସେହି ଦୁଇ ଜଣ

ମଲେ ନାହିଁ; ସେମାନେ ଅମର ବୋଲି, ଗ୍ରନ୍ଥକାର ନିସ୍ତାର ପାଇଲେ । କିନ୍ତୁ ଦ୍ରୋଣାଚାର୍ଯ୍ୟଙ୍କୁ ନମାରିଲେ ନଚଳେ ;ଭୀଷ୍ମଙ୍କ ପରେ ସେ ସର୍ବପ୍ରଧାନ ଯୋଦ୍ଧା; ସେ ଜୀବିତ ଥିବାଯାଏ ପାଣ୍ଡବମାନେ ବିଜୟଲାଭ କରି ପାରିବେ ନାହିଁ । କିନ୍ତୁ ଏକଥା ବି ଗ୍ରନ୍ଥାକାର କହିବାକୁ ଅନିଚ୍ଛୁକ ଯେ, ଧାର୍ମିକ ରାଜା ମାନଙ୍କ ମଧ୍ୟରୁ କେହି ତାଙ୍କୁ ମାରି ବ୍ରହ୍ମହତ୍ୟାର ଭାଗୀ ହେଲ । ବିଶେଷତଃ ଦ୍ରୋଣାଚାର୍ଯ୍ୟଙ୍କୁ ଦ୍ୱୈରଥ୍ୟ ଯୁଦ୍ଧରେ ପରାସ୍ତ କରିପାରେ, ପାଣ୍ଡବ ପକ୍ଷରେ ଏପରି ବୀର ଅର୍ଜୁନ ଭିନ୍ନ ଆଉ କେହି ନାହିଁ । କିନ୍ତୁ ଦ୍ରୋଣାଚାର୍ଯ୍ୟ ଅର୍ଜୁନଙ୍କ ଗୁରୁ, ଏଣୁ ଅର୍ଜୁନଙ୍କ ପକ୍ଷେ ବିଶେଷରୂପେ ଅବଧ୍ୟ । ତେଣୁ ଗ୍ରନ୍ଥାକାର ଗୋଟାଏ କୌଶଳ ଅବଲମ୍ବନ କରିବାକୁ ବାଧ୍ୟ ହୋଇଛନ୍ତି ।

ପାଣ୍ଡବଭାର୍ଯ୍ୟା ଦ୍ରୌପଦୀଙ୍କ ପିତା ଦ୍ରୁପଦ ରାଜାଙ୍କ ସଙ୍ଗେ ପୂର୍ବେ ବଡ଼ ବିବାଦ ହୋଇଥିଲ । ଦ୍ରୁପଦ, ଦ୍ରୋଣଙ୍କ ବିକ୍ରମର ସମକକ୍ଷ ହୋଇ ପାରି ନାହାନ୍ତି—ଅପଦସ୍ଥ ଓ ଅପମାନିତ ହୋଇ ଥିଲେ । ଏ ନିମିତ୍ତ ସେ ଦ୍ରୋଣବଧାର୍ଥେ ଯଜ୍ଞ କରିଥିଲେ । ଯଜ୍ଞକୁଣ୍ଡରୁ ଦ୍ରୋଣବଧକାରୀ ପୁତ୍ରର ଉଦ୍ଭବ ହୁଏ—ଧୃଷ୍ଟଦ୍ୟୁମ୍ନ, କୁରୁକ୍ଷେତ୍ରର ଯୁଦ୍ଧରେ ପାଣ୍ଡବମାନଙ୍କ ସେନାପତି । ସେ ଦ୍ରୋଣବଧ, କରିବେ, ପାଣ୍ଡବମାନଙ୍କର ଏହି ଭରସା । ସେ ବ୍ରହ୍ମବଧାର୍ଥେ ଦୈବ କର୍ମଜାତ, ବ୍ରହ୍ମବଧ ତାଙ୍କ ପକ୍ଷରେ ପାପ ନୁହେଁ ।

କିନ୍ତୁ ମହାଭାରତ ଏକ ହାତରେ ନୁହେଁ, ନାନା ରଚୟିତା ନାନା ଆଡ଼କୁ ଘଟନାବଳି ପକାଇ ନେଇ ଯାଇଛନ୍ତି । ପନ୍ଦର ଦିନ ଯୁଦ୍ଧହେଲା, ଧୃଷ୍ଟଦ୍ୟୁମ୍ନ ଦ୍ରୋଣାଚାର୍ଯ୍ୟଙ୍କର କିଛି କରି ପାରିଲେ ନାହିଁ । ତାଙ୍କ ନିକଟରେ ପରାଭୂତ ହେଲେ । ଅତଏବ ଦ୍ରୋଣଙ୍କ ମରିବାର ଭରସା ନାହିଁ—ପ୍ରତ୍ୟହ

ପାଣ୍ଡବମାନଙ୍କ ସୈନ୍ୟକ୍ଷୟ ହେବାକୁ ଲାଗିଲା । ସେତେବେଳେ ଦ୍ରୋଣବଧାର୍ଥ ଗୋଟାଏ ଘୋରତର ପାପାଚରଣର ପରାମର୍ଶ ପାଣ୍ଡବପକ୍ଷରେ ସ୍ଥିର ହେଲା । ଏହି ମହାପାପ ମନ୍ତ୍ରଣାର କଳଙ୍କଟା କୃଷ୍ଣଙ୍କ ସ୍କନ୍ଧରେ ଅର୍ପିତ ହୋଇଅଛି । ସେଇ ଏହାର ପ୍ରବର୍ତ୍ତକ ବୋଲି ବର୍ଣ୍ଣିତ ହୋଇଛନ୍ତି । କୃଷ୍ଣ କହୁଛନ୍ତି,

"ହେ ପାଣ୍ଡବଗଣ ! ଅନ୍ୟ କଥା ଦୂରେଥାଉ, ସାକ୍ଷାତ ଦେବରାଜ ଇନ୍ଦ୍ର ଦ୍ରୋଣାଚାର୍ଯ୍ୟଙ୍କୁ ସଂଗ୍ରାମରେ ପରାଜୟ କରିବାକୁ ସମର୍ଥ ନୁହନ୍ତି । କିନ୍ତୁ ସେ ଅସ୍ତ୍ରଶସ୍ତ୍ର ପରିତ୍ୟାଗ କଲେ ମନୁଷ୍ୟମାନେ ତାଙ୍କୁ ବିନାଶ କରି ପାରନ୍ତି; ଅତଏବ ତୁମ୍ଭେମାନେ ଧର୍ମ୍ମ ପରିତ୍ୟାଗ ପୂର୍ବକ ତାଙ୍କୁ ପରାଜୟ କରିବା ଚେଷ୍ଟାକର ।

ମାତ୍ର ଦଶବାର ପତ୍ର ପୂର୍ବେ ଯାହାଙ୍କ ମୁଖରେ କବି ଏହିବାକ୍ୟ ସନ୍ନିବିଷ୍ଟ କରିଛନ୍ତି, "ମୁଁ ଶପଥ କରି କହୁଅଛି ଯେ, ଯେଉଁ ସ୍ଥାନରେ ବ୍ରହ୍ମ, ସତ୍ୟ, ଦମ, ଶୌଚ, ଧର୍ମ୍ମ ଶ୍ରୀ, ଲଜ୍ଜା, କ୍ଷମା, ଧୈର୍ଯ୍ୟ ଅବସ୍ଥାନ କରେ । ମୁଁ ସେହି ସ୍ଥାନରେହିଁ ଅବସ୍ଥାନ କରେ ।" * ଯେ ଭଗବଦ୍ଗୀତା ପର୍ବାଧ୍ୟାୟରେ କହିଛନ୍ତି ଯେ, ଧର୍ମ୍ମସଂରକ୍ଷଣ ନିମିତ୍ତହିଁ ଯୁଗେ ଯୁଗେ ଅବତୀର୍ଣ୍ଣ ହୁଏ; ଯାହାଙ୍କ ଚରିତ୍ର ଏ ପର୍ଯ୍ୟନ୍ତ ଆଦର୍ଶ ଧାର୍ମ୍ମିକଙ୍କ ଚରିତ୍ର ବୋଲି, ପ୍ରତିଷ୍ଠିତ ହୋଇଅଛି, ଯାହାଙ୍କ ଧର୍ମରେ ଦାର୍ଢ୍ୟ ଶତ୍ରୁଗଣ କର୍ତ୍ତୃକ ସ୍ୱୀକୃତ ବୋଲି ବର୍ଣ୍ଣିତ ହୋଇଅଛି, † ସେ କଣନା ଡାକି କହୁଛନ୍ତି, "ତୁମ୍ଭେମାନେ ଧର୍ମ ପରିତ୍ୟାଗ କର ।" ଏଣୁ କହୁଥିଲି, ମହାଭାରତ, ନାନା ହାତରେ ରଚନା; ଯାହାଙ୍କର ଯେପରି ଇଚ୍ଛା, ସେ ସେହିପରି ଗଢିଛନ୍ତି ।

---

* ଘଟୋତ୍କଚବଧ-ପର୍ବାଧ୍ୟାୟ, ୧୮୨ ଅଧ୍ୟାୟ ।

† ଧୃତରାଷ୍ଟ୍ରବାକ୍ୟ ଦେଖ ।

କୃଷ୍ଣ କହିବାକୁ ଲାଗିଲେ, "ମୋର ନିଶ୍ଚିତ ବୋଧ ହେଉଅଛି ଯେ, ଅଶ୍ୱତ୍ଥାମା ନିହତ ହୋଇଛନ୍ତି, ଏହା ଜାଣି ପାରିଲେ ଦ୍ରୋଣ ଆଉ ଯୁଦ୍ଧ କରିବେ ନାହିଁ । ଅତଏବ କୌଣସି ବ୍ୟକ୍ତି ତାଙ୍କ ନିକଟକୁ ଗମନପୂର୍ବକ କହନ୍ତୁ ଯେ, ଅଶ୍ୱତ୍ଥାମା ସଂଗ୍ରାମରେ ବିନଷ୍ଟ ହୋଇଛନ୍ତି ।"

ଅର୍ଜ୍ଜୁନ ମିଥ୍ୟା କହିବାକୁ ଅସ୍ୱୀକୃତ ହେଲେ, ଯୁଧିଷ୍ଠିର କଷ୍ଟରେ ତହିଁରେ ସମ୍ମତ ହେଲେ । ଭୀମ ବିନା ବାକ୍ୟବ୍ୟୟରେ ଅଶ୍ୱଥାମା ନାମକ ଗୋଟାଏ ହାତୀକୁ ମାରି ଆସି ଦ୍ରୋଣାଚାର୍ଯ୍ୟଙ୍କୁ କହିଲେ, "ଅଶ୍ୱତ୍ଥାମା ମରିଛନ୍ତି ।" * ଦ୍ରୋଣ ଜାଣିଥିଲେ, ତାଙ୍କ ପୁତ୍ର "ଅମିତବଳ ବିକ୍ରମଶାଳୀ, ଏବଂ ଶତ୍ରୁର ଅସହ୍ୟ"— ଅତଏବ ଭୀମଙ୍କ କଥା ବିଶ୍ୱାସ କଲେ ନାହିଁ । ଧୃଷ୍ଟଦ୍ୟୁମ୍ନଙ୍କୁ ନିହତ କରିବା ଚେଷ୍ଟାରେ ମନୋଯୋଗୀ ହୋଇ ଯୁଦ୍ଧ କରିବାକୁ ଲାଗିଲେ । କିନ୍ତୁ ପୁଣି ଯୁଧିଷ୍ଠିରଙ୍କୁ ପଚାରିଲେ, ଅଶ୍ୱଥାମାଙ୍କ ମୃତ୍ୟୁର କଥା ସତ୍ୟ କି ନା ? ଯୁଧିଷ୍ଠିର କେବେହେଁ ଅଧର୍ମ କରନ୍ତି ନାହିଁ, ଏବଂ ଅସତ୍ୟ କହନ୍ତି ନାହିଁ, ଏଥି ନିମିତ୍ତ ବା ତାଙ୍କୁ ପଚାରିଲେ । ସେ କହିଲେ, ଅଶ୍ୱତ୍ଥାମା କୁଞ୍ଜର ମରିଅଛି—କିନ୍ତୁ କୁଞ୍ଜର ଶବ୍ଦଟା ଅବ୍ୟକ୍ତ ରହିଲା ‡ ।

ସେଥିରେ ବା ହେଲା କଣ ? ଦ୍ରୋଣ ପ୍ରଥମେ ବିମନାପ୍ରାୟ ହେଲେ ସତ୍ୟ, କିନ୍ତୁ ତତ୍ପରେ ଅତି ଘୋରତର ଯୁଦ୍ଧ

---

* ଗୋପାଳ ଭଣ୍ଡ ଏହିପରି "କୃଷ୍ଣ ଗାଇଥିଲେ ।"

‡ "ଅଶ୍ୱତ୍ଥାମା ହତ ଇତି ଗଜଃ"—ଏକଥାଟା ମହାଭାରତର ନୁହେଁ । ବୋଧହୁଏ କଥକମାନେ ତିଆରି କରିଥିବେ । ମୂଳ ମହାଭାରତରେ ଏହା ନାହିଁ । ମହାଭାରତରେ ଅଛି,

ତମତଥ୍ୟଭୟେ ମଗ୍ନୋ ଜୟେ ସକ୍ତୋ ଯୁଧିଷ୍ଠିରଃ ।
ଅବ୍ୟକ୍ତମବ୍ରବୀଦ୍ ବାକ୍ୟଂ ହତଃ କୁଞ୍ଜର ଇତ୍ୟୁତ ॥ ୧୯୧ ॥

କରିବାକୁ ଲାଗିଲେ । ତାଙ୍କର ମୃତ୍ୟୁସ୍ୱରୂପ ଧୃଷ୍ଟଦ୍ୟୁମ୍ନ ତାଙ୍କ ନିଜର ଧାଧର ଅଗଣିତ ଯୁଦ୍ଧ କରି, ନିରସ୍ତ୍ର ଓ ବିରଥ ହୋଇ ଦ୍ରୋଣହସ୍ତରେ ମରଣାପନ୍ନ ହେଲେ । ସେତେବେଳେ ଭୀମ ଯାଇ ଧୃଷ୍ଟଦ୍ୟୁମ୍ନଙ୍କୁ ରକ୍ଷା କଲେ, ଏବଂ ଦ୍ରୋଣାଚାର୍ଯ୍ୟଙ୍କ ରଥ ଧାରଣ କରି କେତେଗୁଡ଼ାଏ କଥା କହିଲେ, ତାହାହିଁ ଦ୍ରୋଣଙ୍କୁ ଯୁଦ୍ଧରୁ ପରାଙ୍ମୁଖ କରିବା ପକ୍ଷରେ ଯଥେଷ୍ଟ । ଭୀମ କହିଲେ ।

"ହେ ବ୍ରହ୍ମନ ! ଯଦି ସ୍ୱଧର୍ମରେ ଅସନ୍ତୁଷ୍ଟ, ଶିକ୍ଷିତାସ୍ତ୍ର ଅଧମ ବ୍ରାହ୍ମଣଗଣ ସମରରେ ପ୍ରବୃତ୍ତ ନହୁଅନ୍ତେ, ତାହାହେଲେ କ୍ଷତ୍ରିୟଗଣଙ୍କର କେବେହେଲେ କ୍ଷୟ ହୁଅନ୍ତା ନାହିଁ । ପଣ୍ଡିତ ମାନେ ପ୍ରାଣୀମାନଙ୍କୁ ହିଂସା ନ କରିବାହିଁ ପ୍ରଧାନ ଧର୍ମ ବୋଲି ନିର୍ଦ୍ଦେଶ କରନ୍ତି । ସେହି ଧର୍ମ ପ୍ରତିପାଳନ କରିବା ବ୍ରାହ୍ମଣର ଅବଶ୍ୟ କର୍ତ୍ତବ୍ୟ; ଆପଣ ବ୍ରାହ୍ମଣଶ୍ରେଷ୍ଠ, କିନ୍ତୁ ଚଣ୍ଡାଳ ପରି ଅଜ୍ଞାନାନ୍ଧ ହୋଇ ପୁତ୍ର ଓ କଳତ୍ରର ଉପକାରାର୍ଥ ଅର୍ଥଲାଳସା ନିବନ୍ଧନ ବିବିଧ ମ୍ଳେଚ୍ଛଜାତି ଓ ଅନ୍ୟାନ୍ୟ ପ୍ରାଣୀଗଣଙ୍କର ପ୍ରାଣ ବିନାଶ କରୁଛନ୍ତି । ଆପଣ ଏକ ପୁତ୍ରର ଉପକାରାର୍ଥ ସ୍ୱଧର୍ମ ପରିତ୍ୟାଗ ପୂର୍ବକ ସ୍ୱକାର୍ଯ୍ୟ ସାଧନାରେ ପ୍ରବୃତ୍ତ ହୋଇ ଅସଂଖ୍ୟ ଜୀବର ଜୀବନ ନାଶ କରି କି ନିମିତ୍ତ ଲଜ୍ଜିତ ହେଉ ନାହାନ୍ତି ?"

କଥା ଗୁଡ଼ିକ ସବୁ ସତ୍ୟ । ଏହା ଉପରେ ଆଉ କିଏ ଉତ୍ତର ଦେଇ ପାରନ୍ତା ? ଏଥିରେ ଦୁର୍ଯ୍ୟୋଧନଙ୍କ ନ୍ୟାୟ ଦୁରାତ୍ମାର ମତ ଫେରି ପାରେନା ଠିକ୍, କିନ୍ତୁ ଦ୍ରୋଣାଚାର୍ଯ୍ୟ ଧର୍ମାତ୍ମା; ଏତିକି ତାଙ୍କ ପକ୍ଷରେ ଯଥେଷ୍ଟ । ଏହା ପରେ ଅଶ୍ୱତ୍ଥାମାଙ୍କ ମୃତ୍ୟୁ କଥାଟା ନ ଉଠାଇଲେ ଚଳନ୍ତା । କିନ୍ତୁ ତାହାହିଁ ଏଠାରେ ପୁଣି ପୁନରୁକ୍ତ ହୋଇଅଛି ।

ଏକଥା ପରେ ଦ୍ରୋଣାଚାର୍ଯ୍ୟ ଅସ୍ତ୍ର ଶସ୍ତ୍ର ତ୍ୟାଗ କଲେ । ସେତେବେଳେ ଧୃଷ୍ଟଦ୍ୟୁମ୍ନ ତାଙ୍କ ମୁଣ୍ଡ କାଟି ଆଣିଲେ ।

ବର୍ତ୍ତମାନ ବିଚାରରେ ପ୍ରବୃତ୍ତ ହେବା । ଯେଉଁ କାର୍ଯ୍ୟଟା ବର୍ଣ୍ଣିତ ହୋଇଅଛି, ତାହା ଯଦି ପ୍ରକୃତ ଘଟି ଥାଏ, ତେବେ ଯେଉଁ ଯେଉଁ ଲୋକ ଏଥିରେ ଲିପ୍ତ ଥିଲେ, ସେହି ସେହି ଲୋକ ମହାପାପରେ ଲିପ୍ତ । ଗ୍ରନ୍ଥକାର ମଧ୍ୟ ତାହା ବୁଝନ୍ତି । ସେ କହିଛନ୍ତି ଯେ, ଧର୍ମାତ୍ମା ଯୁଧିଷ୍ଠିରଙ୍କ ରଥ ଇତିପୂର୍ବେ ପୃଥିବୀ ଉପରେ ଚାରିଆଙ୍ଗୁଳି ଉର୍ଦ୍ଧ୍ୱରେ ଚାଲୁଥିଲା, ବର୍ତ୍ତମାନ ତାହା ଭୂମିସ୍ପର୍ଶ କରି ଚାଲିଲା । ଏହି ଅପରାଧରେ ତାଙ୍କର ନରକ ଦର୍ଶନ ହୋଇଥିଲା, ଏହାବି କହିଛନ୍ତି । ଆମ ମତରେ ଏରୂପ ବିଶ୍ୱାସଘାତକତା ଏବଂ ମିଥ୍ୟା ପ୍ରବଞ୍ଚନା ଦ୍ୱାରା ଗୁରୁହତ୍ୟାର ଉପଯୁକ୍ତ ଦଣ୍ଡ, ନରକ-ଦର୍ଶନ ମାତ୍ର ନୁହେଁ ; ଅନନ୍ତ ନରକହିଁ ଏହାର ଉପଯୁକ୍ତ ।

କୃଷ୍ଣ ଏହି ମହାପାପର ପ୍ରବର୍ତ୍ତକ, ଏଣୁ କୃଷ୍ଣଙ୍କୁ ସେହିରୂପ ଅପରାଧୀ ଧରିବାକୁ ହୁଏ । କିନ୍ତୁ ଏହାର ଏକ ଉତ୍ତର ପ୍ରଚଳିତ ଅଛି ଯେ ଯେ ଈଶ୍ୱର, ସ୍ୱୟଂ ପାପ ପୁଣ୍ୟର କର୍ତ୍ତା ଓ ବିଧାତା, ପାପ ପୁଣ୍ୟ ଯାହାଙ୍କ ସୃଷ୍ଟି, ତାଙ୍କର ପୁଣି ପାପ ପୁଣ୍ୟ କଣ ? ପାପପୁଣ୍ୟ ତାଙ୍କୁ ସ୍ପର୍ଶ କରି ପାରେନାହିଁ । ଏକଥା ସତ୍ୟ କିନ୍ତୁ ତାହା ବୋଲି କଣ, ମନୁଷ୍ୟ ଦେହ—ଧାରଣକାଳରେ ପାପ ତାଙ୍କର ଆଚରଣୀୟ ? ସେ ନିଜେ କହିଛନ୍ତି ଯେ, ଧର୍ମସଂସ୍ଥାପନାର୍ଥ ଅବତୀର୍ଣ୍ଣ—ପାପାଚରଣ ଦ୍ୱାରା କଣ ଧର୍ମସଂସ୍ଥାପନ ତାଙ୍କ ଉଦ୍ଦେଶ୍ୟ ? ସେ ନିଜେ ଏପରି କହନ୍ତି ନାହିଁ । ସେ ଗୀତାରେ କହିଛନ୍ତି,

"ଜନକାଦି କର୍ମଦ୍ୱାରହିଁ ସିଦ୍ଧି ଲାଭ କରିଅଛନ୍ତି। ଜନଗଣଙ୍କୁ ସ୍ୱଧର୍ମରେ ପ୍ରବୃତ୍ତ କରିବା ନିମିତ୍ତ (ଦୃଷ୍ଟାନ୍ତ ଦ୍ୱାରା) ତୁମେ କର୍ମ କର। ଶ୍ରେଷ୍ଠବ୍ୟକ୍ତି ଯେ ରୂପ କରିଥାନ୍ତି, ଇତର ଲୋକ ମଧ୍ୟ ତାହାକରେ ; ଶ୍ରେଷ୍ଠ ଯାହା ମାନନ୍ତି, ଲୋକ ତାହାର ଅନୁବର୍ତ୍ତିତ ହୁଏ। ହେ ପାର୍ଥ ! ତ୍ରିଲୋକରେ ମୋର କର୍ତ୍ତବ୍ୟ କିଛିହିଁ ନାହିଁ, ମୋର ପ୍ରାପ୍ତବ୍ୟ ବା ଅପ୍ରାପ୍ତବ୍ୟ କିଛିହିଁ ନାହିଁ, ତଥାପି ମୁଁ କର୍ମ କରେ। (କାରଣ) ମୁଁ ଯଦି କଦାଚିତ୍ ଅତନ୍ଦ୍ରିତ ହୋଇ କର୍ମାନୁବର୍ତ୍ତିନ ନ କରେ, ତେବେ ମନୁଷ୍ୟମାନେ ସର୍ବତୋ-ଭାବେ ମୋର ପଥର ଅନୁବର୍ତ୍ତୀ ହେବେ।"

ଶ୍ରୀମଦ୍‌ଭଗବଦ୍‌ଗୀତା, ୩ଅ, ୨୦—୨୩।

ଅତଏବ ଶ୍ରୀକୃଷ୍ଣ ନିଜେ କହିଛନ୍ତି, ମାନବାବତାରରେ, ସ୍ୱକାର୍ଯ୍ୟର ଦୃଷ୍ଟାନ୍ତ ଦ୍ୱାରା ଧର୍ମସଂସ୍ଥାପନ ତାଙ୍କ ଉଦ୍ଦେଶ୍ୟ ମଧ୍ୟରେ ଅତଏବ ସ୍ୱକର୍ମରେ ମହାପାପର ଦୃଷ୍ଟାନ୍ତ ତାଙ୍କର ଅଭିପ୍ରେତ ହୋଇ ନ ପାରେ।

ତେବେ ଏ କାଣ୍ଡଟା କଣ ? ତାହାର ମୀମାଂସା ସ୍ଥିର ନ କରି ମୁଁ କୃଷ୍ଣଚରିତ୍ର ପ୍ରଣୟନରେ ପ୍ରବୃତ୍ତ ହୋଇ ନାହିଁ। କାରଣ, ବୃନ୍ଦାବନର ଗୋପୀ ଓ "ଅଶ୍ୱତ୍ଥାମା ଇତି ଗଜଃ" ଏହାହିଁ କୃଷ୍ଣଙ୍କର ପ୍ରଧାନ ଅପବାଦ।

କାଣ୍ଡଟା କଣ ? ତାହାର ଉତ୍ତର, କାଣ୍ଡର ସମସ୍ତଟା ଅମୌଳିକ। ଯଦି ପାଠକ ମନୋଯୋଗ ପୂର୍ବକ ମୋର ଏହି

ଗ୍ରନ୍ଥ ଖଣ୍ଡି ପଢ଼ି ଥାନ୍ତି, ତେବେ ବୁଝିଥିବ ଯେ, ସମସ୍ତ ମହାଭାରତ, ଅର୍ଥାତ ବର୍ତ୍ତମାନ ଯେଉଁ ଗ୍ରନ୍ଥ ମହାଭାରତ ନାମରେ ପରିଚିତ, ତାହା ଏକ ହାତର ନୁହେଁ । ତାହାର କିୟଦଂଶ ମୌଳିକ, ଆଦିମ ମହାଭାରତ ବା "ପ୍ରଥମ ସ୍ତର" । ଅପରାଂଶ ଅମୌଳିକ ଓ ପରବର୍ତ୍ତୀ କବିଗଣ କର୍ତ୍ତୃକ ମୂଳଗ୍ରନ୍ଥର ପ୍ରକ୍ଷିପ୍ତ । କେଉଁ ଅଂଶ ମୌଳିକ, କେଉଁ ଅଂଶ ଅମୌଳିକ, ଏହା ନିରୂପଣ କରିବା କଠିନ । ନିରୂପଣ ନିମିତ୍ତ ମୁଁ କେତୋଟି ସଙ୍କେତ ପାଠକଙ୍କୁ କହି ଦେଇଅଛି । ସେ ଗୁଡ଼ିକ ବର୍ତ୍ତମାନ ପାଠକଙ୍କୁ ସ୍ମରଣ କରିବାକୁ ହେବ ।

(୧) ତାହା ମଧ୍ୟରେ ଗୋଟିଏ ଏହି,—

"ଶ୍ରେଷ୍ଠ କବିମାନଙ୍କ ବର୍ଣ୍ଣିତ ଚରିତ୍ରଗୁଡ଼ିକର ସର୍ବାଂଶ ସୁସଙ୍ଗତ ହୁଏ । ଯଦି କୌଣସି ଠାରେ ବ୍ୟତିକ୍ରମ ଦେଖାଯାଏ, ତେବେ ସେ ଅଂଶ ପ୍ରକ୍ଷିପ୍ତ ସନ୍ଦେହ କରାଯାଇ ପାରେ ।"

ଉଦାହରଣ ଦେବା ନିମିତ୍ତ କହିଥିଲି ଯେ, ଯଦି କେଉଁଠି ଭୀଷ୍ମଙ୍କର ପରଦାରପରାୟଣତା ବା ଭୀମଙ୍କର ଭୀରୁତା ଦେଖ, ତେବେ ଜାଣିବୁ, ସେହି ଅଂଶ ପ୍ରକ୍ଷିପ୍ତ । ଏଠାରେ ଠିକ୍ ତାହାଇ; ଏକମାତ୍ରାରେ ନହେ, ତିନି ମାତ୍ରାରେ କେବଳ ତାହାଇ । ପରମ ଧର୍ମାତ୍ମା ଯୁଧିଷ୍ଠିରଙ୍କ ଚରିତ୍ର ସଙ୍ଗେ ଏହି ନୃଶଂସ ବିଶ୍ୱାସଘାତକତା ଓ ମିଥ୍ୟା ପ୍ରବଞ୍ଚନା ଦ୍ୱାରା ଗୁରୁନିପାତ ଯାଦୃଶ ଅସଙ୍ଗତ, ତେତେ ଅସଙ୍ଗତ ଆଉ କୌଣସି ଦୁଇ ବସ୍ତୁ ହୋଇ ପାରେ ନାହିଁ । ତାର ପରେ ମହା ତେଜସ୍ୱୀ, ବଳଗର୍ବଶାଳୀ, ଭୟଶୂନ୍ୟ ଭୀମଙ୍କ ଚରିତ୍ର ସଙ୍ଗେ ମଧ୍ୟ ଏହା ତଦ୍ରୂପ ଅସଙ୍ଗତ । ଭୀମ ବାହୁବଳ ଭିନ୍ନ ଆଉ କିଛି ମାନନ୍ତି ନାହିଁ—ଶତ୍ରୁ ବିରୁଦ୍ଧରେ ଆଉ କିଛି ପ୍ରୟୋଗ କରନ୍ତି ନାହିଁ; ରାଜ୍ୟାର୍ଥ ବି ନୁହେଁ କି

ପ୍ରାଣରକ୍ଷାର୍ଥେ ବି ନୁହେଁ । ସ୍ଥାନାନ୍ତରେ କଥିତ ଅଛି, ଅଶ୍ୱତ୍ଥାମା ନାରାୟଣାସ୍ତ୍ର ନାମକ ଅନିବାର୍ଯ୍ୟ ଦେବାସ୍ତ୍ର ପ୍ରୟୋଗ କରିଥିଲେ — ସେଥିରେ ସମସ୍ତ ପୃଥିବୀ ନଷ୍ଟ ହୋଇ ପାରେ । ଦିବ୍ୟାସ୍ତ୍ରବିତ୍ ଅର୍ଜୁନ ମଧ୍ୟ ତାହା ନିବାରଣରେ ଅକ୍ଷମ ; ସମସ୍ତ ପାଣ୍ଡବସୈନ୍ୟ ବିନଷ୍ଟ ହେବାକୁ ଲାଗିଲା । ଏଥିରୁ ପରିତ୍ରାଣ ପାଇବାର ଗୋଟିଏ ଉପାୟ ଥିଲା— ଏହି ଦେବାସ୍ତ୍ର ସମରବିମୁଖ ବ୍ୟକ୍ତିକୁ ସ୍ପର୍ଶ କରେ ନାହିଁ । ଅତଏବ ପ୍ରାଣରକ୍ଷାର୍ଥ କୃଷ୍ଣଙ୍କ ଆଜ୍ଞାନୁସାରେ ସମସ୍ତ ପାଣ୍ଡବସେନା ଓ ସେନାପତିଗଣ, ରଥ ଓ ବାହାନରୁ ଭୂତଳରେ ଅବତୀର୍ଣ୍ଣ ହୋଇ ଅସ୍ତ୍ର ଶସ୍ତ୍ର ପରିତ୍ୟାଗ ପୂର୍ବକ ବିମୁଖ ହୋଇ ବସିଲେ ; କୃଷ୍ଣଙ୍କ ଆଜ୍ଞାନୁସାରେ ଅର୍ଜୁନଙ୍କୁ ମଧ୍ୟ ତାହା କରିବାକୁ ହେଲା । କେବଳ ଭୀମ କିନ୍ତୁମାତ୍ର ତାହା କଲେ ନାହିଁ,— କହିଲେ, "ମୁଁ ଶରନିକର ନିପାତରେ ଅଶ୍ୱତ୍ଥ-ଆମାର ଅସ୍ତ୍ର ନିବାରଣ କରୁଅଛି । ମୁଁ ଏହି ସୁବର୍ଣ୍ଣମୟୀ ଗୁର୍ବୀ ଗଦା ସମୁଦ୍ୟତ କରି ଦ୍ରୋଣପୁତ୍ରଙ୍କ ନାରାୟଣାସ୍ତ୍ର ବିମର୍ଦ୍ଦିତ କରି ଅନ୍ତକଙ୍କ ପରି ରଣସ୍ଥଳରେ ବିଚରଣ କରିବି । ଏହି ଭୂମଣ୍ଡଳ ମଧ୍ୟରେ ଯେପରି କୌଣସି ଜ୍ୟୋତିଃ-ପଦାର୍ଥହିଁ ସୂର୍ଯ୍ୟଙ୍କ ସଦୃଶ ନୁହେଁ, ତଦ୍ରୂପ ମୋ ତୁଲ୍ୟ ପରା-କ୍ରମଶାଳୀ ଆଉ କୌଣସି ମନୁଷ୍ୟ ନାହିଁ । ମୋର ଏହି ଯେ ଐରାବତଶୁଣ୍ଡ ସଦୃଶ ସୁଦୃଢ଼ ଭୁଜଦଣ୍ଡ ଅବଲୋକନ କରୁଅଛ, ଏହା ହିମାଳୟ ପର୍ବତର ବି ନିପାତନରେ ସମର୍ଥ । ମୁଁ ଅଯୁତ-ନାଗତୁଲ୍ୟ ବଳଶାଳୀ; ଦେବଲୋକରେ ସୁରରାଜ ଯେପରି ଅପ୍ରତିଦ୍ୱନ୍ଦ୍ୱୀ, ନରଲୋକରେ ମୁଁ ବି ତଦ୍ରୂପ । ଆଜି ମୁଁ ଦ୍ରୋଣପୁତ୍ରଙ୍କ ଅସ୍ତ୍ରନିବାରଣରେ ପ୍ରବୃତ୍ତ ହେଉଅଛି, ସମସ୍ତେ ମୋର ବାହୁବୀର୍ଯ୍ୟ ଅବଲୋକନ କରନ୍ତୁ । ଯଦି କେହି ଏହି ନାରାୟଣାସ୍ତ୍ରର ପ୍ରତିଦ୍ୱନ୍ଦ୍ୱୀ

ବିଦ୍ୟମାନ ନ ଥାଏ, ତାହା ହେଲେ ମୁଁ ସ୍ୱୟଂ ସମସ୍ତ କୌରବ ଓ ପାଣ୍ଡବ ସମକକ୍ଷରେ ଏହି ଅସ୍ତ୍ରର ପ୍ରତିଦ୍ୱନ୍ଦୀ ହେବି ।” ସ୍ୱୀକାର କରେ, ବଡ଼ିମା ବଡ଼ ବେଶୀ; ଗଳ୍ପଟା ବି ନିତାନ୍ତ ଗଳ୍ପ । ତାହା ହେଉ—ସତ୍ୟ ବୋଲି ତାହାରିକୁ ଏହା ଗ୍ରହଣ କରିବାକୁ ହେଉ ନାହିଁ । କବିପ୍ରଣୀତ ଚରିତ୍ରଗତର ସୁସଙ୍ଗତ ନେଇ କଥା କହୁଅଛୁ । ନାରାୟଣାସ୍ତ୍ରମୋକ୍ଷ ମୌଳିକ ନ ହୋଇ ପାରେ, କିନ୍ତୁ ଏହି ଗ୍ରନ୍ଥରେ ମୌଳିକ ମହାଭାରତରେ ସର୍ବତ୍ର ଭୀମଙ୍କ ଚରିତ୍ର ବର୍ଣ୍ଣିତ । ଏହା ସହିତ ଭୀମଙ୍କର ସେହି ଶୃଗାଳୋପମ ଦ୍ରୋଣପ୍ରବଞ୍ଚନା କେତେଟା ସୁସଙ୍ଗତ ? ଏହା ଭୀମ କଣ, ସ୍ତ୍ରୀଲୋକର ବି ଘୃଣାସ୍ପଦ ଯେଉଁ ଶତ୍ରୁବଧୋପାୟ, ତାହା ଅବଲମ୍ବନ କରି ପାରନ୍ତି ? ଦ୍ରୋଣାଚାର୍ଯ୍ୟଙ୍କ ଅପେକ୍ଷା ମଧ୍ୟ ନାରାୟଣାସ୍ତ୍ର ସହସ୍ର ଗୁଣରେ ଉଗ୍ରଙ୍କର; ଯେ ନାରାୟଣାସ୍ତ୍ର ସମ୍ମୁଖରେ ସିଂହ ପରି ଦୃପ୍ତ, ଯାହାଙ୍କୁ ବଳପ୍ରୟୋଗ ବ୍ୟତୀତ * ନାରାୟଣା-ସ୍ତ୍ରର ସମ୍ମୁଖରୁ କେହି ବିମୁଖ କରି ପାରିଲେ ନାହିଁ, ତାହାଙ୍କୁ ଅର୍ଜ୍ଜୁନଙ୍କ ପ୍ରତିଯୋଦ୍ଧା ମାତ୍ର ଦ୍ରୋଣଙ୍କ ଉପରେ ଶୃଗାଳାଧମ ପରି କାର୍ଯ୍ୟପ୍ରବୃତ୍ତ ବୋଲି ଯେଉଁ କବି ବର୍ଣ୍ଣନା କରିଛନ୍ତି, ସେ କବିଙ୍କ କବିତ୍ୱ କେଉଁଠି ? ମହାଭାରତ ପ୍ରଣୟନ କଣ ତାଙ୍କ ସାଧ୍ୟ ?

ତେବେ ନିହତ ଅଶ୍ୱତ୍ଥାମାଗଜର ଏଇ ଗଳ୍ପ, ଭୀମଙ୍କ ଚରିତ୍ର ସଙ୍ଗେ ଅସଙ୍ଗତ, ଯୁଧିଷ୍ଠିରଙ୍କ ଚରିତ୍ର ସଙ୍ଗରେ ବି ଅସଙ୍ଗତ, ଏହା ଦେଖିଅଛୁଁ । କିନ୍ତୁ ଭୀମଙ୍କ ଚରିତ୍ର ସଙ୍ଗେ ଓ ଯୁଧିଷ୍ଠିରଙ୍କ

---

* ଅର୍ଜ୍ଜୁନ ଓ କୃଷ୍ଣ ଭୀମଙ୍କୁ ବଳପୂର୍ବକ ରଥ ଉପରୁ ଟାଣି ପକାଇ ଅସ୍ତ୍ର ଶସ୍ତ୍ର କାଢ଼ି ନେଇ ଥିଲେ ।

ଚରିତ୍ର ସଙ୍ଗେ ଏହାର ଯେତେତା ଅସଙ୍ଗତ । ତଦପେକ୍ଷା କୃଷ୍ଣ-ଚରିତ୍ର ସଙ୍ଗରେ ମଧ୍ୟ ଏହାର ଅସଙ୍ଗତ ଆହୁରି ବେଶୀ ; ଆମ୍ଭେମାନେ ଯାହା କହୁଅଛୁ ତାହା କହୁଅଛୁ ତାହା ଯଦି ପାଠକ ବୁଝିଥାନ୍ତି, ତାହାହେଲେ ଏଇସବୁ ଅସଙ୍ଗତର ପରାମର୍ଶ ବୁଝି ପାରିବେ । ଅନେକ ଅନ୍ଧକାର ମଧ୍ୟରେ ଯେତେ ଅସଙ୍ଗତ; କୃଷ୍ଣ ଶ୍ୱେତରେ ; ତାପ ଶୈତ୍ୟରେ ; ମଧୁର କର୍କଶରେ ; ରୋଗ ସ୍ୱାସ୍ଥ୍ୟରେ ; ଭବ ଅଭାବରେ ଯେତେ ଅସଙ୍ଗତ, ଏହା ମଧ୍ୟ ସେତେ ଯେତେବେଳେ ମୌଳିକ ଚରିତ୍ର ସଙ୍ଗେ ଗୋଟିଏ ନହେଁ, ତନୋଟି ମୌଳିକ ଚରିତ୍ର ସଙ୍ଗେ ଏହି ଗଳ୍ପର ଏତେ ଅସଙ୍ଗତ, ସେତେବେଳେ ଏହା ଅମୌଳିକ ଓ ପ୍ରକ୍ଷିପ୍ତ, ଏବଂ ଅନ୍ୟ କବିପ୍ରଣୀତ ବୋଲି ଆମେ ପରିତ୍ୟାଗ କରି ପାରୁ ।

(୨) ମୋର କଥା ଶେଷ ହୋଇ ନାହିଁ । କେଉଁ ଅଂଶ ମୌଳିକ, ଓ କେଉଁ ଅଂଶ ଅମୌଳିକ, ଏହାର ନିର୍ବାଚନ ନିମିତ୍ତ ଯେଉଁ କେତୋଟି ଲକ୍ଷଣ ନିର୍ଦ୍ଦିଷ୍ଟ କରିଅଛୁ । ତାହାର ଗୋଟିକ ଦ୍ୱାରା ପରୀକ୍ଷା କରିବାରୁ ଏଇ ହତଗଜ ବୃତ୍ତାନ୍ତଟା ଅମୌଳିକ ବୋଲି ପ୍ରତିପନ୍ନ ହେଲା । ଆଉ ଗୋଟିଏ ଦ୍ୱାରା ପରୀକ୍ଷା କରି ଦେଖାଯାଉ । ଆଉ ଗୋଟିଏ ସୂତ୍ର ଏହି ଯେ, ଦୁଇଟି ବିବରଣ ପରସ୍ପର ବିରୋଧୀ ହେଲେ ତାହାର ଗୋଟିଏ ପ୍ରକ୍ଷିପ୍ତ ବର୍ତ୍ତମାନ ମହାଭାରତରେ, ଏଇ ଅଶ୍ୱତ୍ଥାମାଗଜର ଗଳ୍ପର ସଙ୍ଗେ ସଙ୍ଗେ ମଧ୍ୟ ଦ୍ରୋଣବଧର ଆଉ ଗୋଟିଏ ବୃତ୍ତାନ୍ତ ପାଉ । ଗୋଟିକର ଯଥେଷ୍ଟ କାରଣ, କିନ୍ତୁ ଦୁଇଟିକୁ ଏକତ୍ର ଜଡ଼ିତ କରା ହୋଇଅଛି । ଆମେ ସେଇ ସ୍ୱତନ୍ତ୍ର ବିବରଣଟି ପୃଥକ୍ କରି ମହାଭାରତରୁ ଉଦ୍ଧୃତ କରୁଅଛୁ । ତାହା ବୁଝାଇବା ନିମିତ୍ତ, ଅଗ୍ରେ ମୋର କହିବା ଉଚିତ ଯେ, ଦ୍ରୋଣ ଅଧର୍ମ

ଯୁଦ୍ଧ କରୁଥିଲେ । ମହାଭାରତରେ ଯେଉଁ ଅନ୍ୟାନ୍ୟ ଦୈବାସ୍ତ୍ର ମଧ୍ୟରେ ବ୍ରହ୍ମାସ୍ତ୍ର ଗୋଟିଏ । ଆଜି ଏ ଦେଶର ଲୋକମାନେ, ଯେଉଁ ଉପାୟଦ୍ୱାରା ଯେଉଁ କାର୍ଯ୍ୟସାଧନ ଅବ୍ୟର୍ଥ, ତାହାକୁ ସେହି କାର୍ଯ୍ୟର "ବ୍ରହ୍ମାସ୍ତ୍ର" କହନ୍ତି । ଏଇ ବ୍ରହ୍ମାସ୍ତ୍ର ଅସ୍ତ୍ରାନଭିଜ୍ଞ ବ୍ୟକ୍ତିମାନଙ୍କ ପ୍ରତି ପ୍ରୟୋଗ ନିଷିଦ୍ଧ, ଓ ଅଧର୍ମ, ଏହାଇ ଋଷିମାନଙ୍କ ମତ । ଦ୍ରୋଣ ବ୍ରହ୍ମାସ୍ତ୍ରଦ୍ୱାରା ଅସ୍ତ୍ରାନଭିଜ୍ଞ ସୈନ୍ୟମାନଙ୍କୁ ବିନଷ୍ଟ କରୁଥିଲେ । ଏପରି ସମୟରେ —

"ବିଶ୍ୱାମିତ୍ର, ଜମଦଗ୍ନି, ଭରଦ୍ୱାଜ, ଗୌତମ, ବଶିଷ୍ଠ, ଅତ୍ରି, ଭୃଗୁ, ଅଙ୍ଗିରା, ସିକତ, ପୃଶ୍ନି, ଗର୍ଗ, ବାଲଖିଲ୍ୟ, ମରୀଚିପ ଓ ଅନ୍ୟାନ୍ୟ ସୂକ୍ଷ୍ମରୂପଧାରୀ ଋଷିଗଣ ଆଚାର୍ଯ୍ୟଙ୍କୁ କ୍ଷତ୍ରିୟ ନିଧନ କରୁଥିବାର ଅବଲୋକନ କରି ତାଙ୍କୁ ବ୍ରହ୍ମଲୋକକୁ ନୀତ କରିବା ବାସନାରେ ସମସ୍ତେ ଶୀଘ୍ର ସମାଗତ ହୋଇ କହିବାକୁ ଲାଗିଲେ, ହେ ଦ୍ରୋଣ ! ତୁମେ ଅଧର୍ମ ଯୁଦ୍ଧ କରୁଅଛ; ଅତଏବ ବର୍ତ୍ତମାନ ତୁମର ବିନାଶ ସମୟ ଉପସ୍ଥିତ ହୋଇଅଛି । ତୁମେ ଆୟୁଧ ପରିତ୍ୟାଗ କରି ଥରେ ଆମ୍ଭମାନଙ୍କୁ ନିରୀକ୍ଷଣ କର । ଆଜି ତୁମର ଏରୂପ କାର୍ଯ୍ୟର ଅନୁଷ୍ଠାନ କର୍ତ୍ତବ୍ୟ ନୁହେଁ । ତୁମେ ବେଦ—ବେଦାଙ୍ଗବେତ୍ତା ଓ ସତ୍ୟ ଧର୍ମ ପରାୟଣ; ଅତଏବ ଏରୂପ କାର୍ଯ୍ୟ କରିବା ତୁମର ନିତାନ୍ତ ଅନୁଚିତ; ତୁମେ ଅବିମୂଢ଼ ହୋଇ ଆୟୁଧ ପରିତ୍ୟାଗପୂର୍ବକ ଶାଶ୍ୱତ ପଥରେ ଅବସ୍ଥାନ କର । ଅଦ୍ୟ ତୁମର ମର୍ତ୍ତ୍ୟଲୋକନିବାସର କାଳ ପରିପୂର୍ଣ୍ଣ ହୋଇଅଛି । ହେ ବିପ୍ର ! ଅସ୍ତ୍ରାନଭିଜ୍ଞ ବ୍ୟକ୍ତିମାନଙ୍କୁ ବ୍ରହ୍ମାସ୍ତ୍ରରେ ବିନାଶ କରି ନିତାନ୍ତ ଅସତ୍ କାର୍ଯ୍ୟର ଅନୁଷ୍ଠାନ କରିଅଛ; ଅତଏବ ଆୟୁଧ ଅବିଳମ୍ବେ ପରିତ୍ୟାଗ କର; ଆଉ କ୍ରୂରକାର୍ଯ୍ୟର ଅନୁଷ୍ଠାନ କରିବା ତୁମର କର୍ତ୍ତବ୍ୟ ନୁହେଁ ।"

ଏହା ଶୁଣି ଦ୍ରୋଣାଚାର୍ଯ୍ୟ ଯୁଦ୍ଧରୁ କ୍ଷାନ୍ତ ହେଲେ । ପୂର୍ବେ କହି ଅଛୁ, ଯୁଧିଷ୍ଠିରଙ୍କ ନିକଟରୁ ଅଶ୍ୱତ୍ଥାମାର ମୃତ୍ୟୁ ଶୁଣି ଯୁଦ୍ଧା କ୍ଷାନ୍ତ ହୋଇ ନାହାନ୍ତି । ତାର ପରେ ହି ସେ ଧୃଷ୍ଟଦ୍ୟୁମ୍ନଙ୍କୁ ବିନଷ୍ଟ କରିବାର ଉପକ୍ରମ କଲେ, ଯଦୁବଂଶୀୟ ସାତ୍ୟକି ଆସି ଧୃଷ୍ଟଦ୍ୟୁମ୍ନଙ୍କର ରକ୍ଷା ସମ୍ପାଦନ କଲେ । ସାତ୍ୟକିଙ୍କ ସହିତ କେହି ଯୁଦ୍ଧ କରିବାକୁ ସକ୍ଷମ ହୋଇ ନାହାନ୍ତି । ଦ୍ରୋଣବି ନିବାରିତ ହେଲେ । ସେତେବେଳେ ଯୁଧିଷ୍ଠିର ସ୍ୱପକ୍ଷୀୟ ବୀରମାନଙ୍କୁ କହିଲେ—

"ହେ ବୀରଗଣ ! ତୁମ୍ଭେମାନେ ପରମ ଯତ୍ନସହକାରେ ଦ୍ରୋଣାଭିମୁଖରେ ଧାବମାନ ହୁଅ । ମହାବୀର ଧୃଷ୍ଟଦ୍ୟୁମ୍ନ ଦ୍ରୋଣାଚାର୍ଯ୍ୟଙ୍କ ବିନାଶନିମିତ୍ତ ଯଥାସାଧ୍ୟ ଚେଷ୍ଟା କରୁଛନ୍ତି । ଅଦ୍ୟ ସମରକ୍ଷେତ୍ରରେ ଦ୍ରୁପଦନନ୍ଦନଙ୍କ କାର୍ଯ୍ୟ ସନ୍ଦର୍ଶନ କରି ସ୍ପଷ୍ଟ ବୋଧ ହେଉଅଛି, ଯେ ସେ କ୍ରୁଦ୍ଧ ହୋଇ ଦ୍ରୋଣଙ୍କୁ ନିପାତିତ କରିବେ । ଅତଏବ ତୁମ୍ଭେମାନେ ମିଳିତ ହୋଇ ଦ୍ରୋଣଙ୍କ ସହିତ ଯୁଦ୍ଧାରମ୍ଭ କର ।" ଏହା ପରେ, ପାଣ୍ଡବପକ୍ଷୀୟ ବୀରଗଣ ଦ୍ରୋଣାଭିମୁଖରେ ଧାବମାନ ହେଲେ । ମହାଭାରତରୁ ପୁନଶ୍ଚ ଉଦ୍ଧୃତ କରୁଅଛୁ,—

"ମହାରଥ ଦ୍ରୋଣମଧ୍ୟ ମରଣରେ କୃତନିଶ୍ଚୟ ହୋଇ ସମାଗତ ବୀରମାନଙ୍କ ପ୍ରତି ମହାବେଗରେ ଗମନ କରିବାକୁ ଲାଗିଲେ । ସତ୍ୟସନ୍ଧ ମହାବୀର ଦ୍ରୋଣାଚାର୍ଯ୍ୟ ମହାରଥଗଣଙ୍କ ପ୍ରତି ଧାବମାନ ହେବାରୁ ମେଦିନୀମଣ୍ଡଳ କମ୍ପିତ ହେଲା । ପ୍ରଚଣ୍ଡ ବାୟୁ ସେମାନଙ୍କୁ ଭୀତ କରି ପ୍ରବଳ ବେଗରେ ପ୍ରବାହିତ ହେବାକୁ ଲାଗିଲା । ମହତୀ ଉଲ୍କା ସୂର୍ଯ୍ୟଙ୍କଠାରୁ ନିଃସୃତ ହୋଇ ଆପଣାର ପ୍ରକାଶ ଦ୍ୱାରା ସମସ୍ତଙ୍କୁ ଶଙ୍କିତ କଲା । ଦ୍ରୋଣାଚାର୍ଯ୍ୟଙ୍କ ଅସ୍ତ୍ରସବୁ ପ୍ରଜ୍ୱଳିତ ହୋଇ ଉଠିଲା । ରଥର

ଭୀଷଣ ନିପୀଳ ଓ ଅଶ୍ୱମାନଙ୍କର ଅଶ୍ରୁପାତ ହେବାକୁ ଲାଗିଲା । ତତ୍କାଳରେ ମହାରଥ ଦ୍ରୋଣ ନିତାନ୍ତ ନିସ୍ତେଜ ହୋଇଗଲେ । ତାଙ୍କ ବାମ ନୟନ ଓ ବାମ ବାହୁ ସ୍ପନ୍ଦିତ ହେବାକୁ ଲାଗିଲା । ସେ ସମ୍ମୁଖରେ ଧୃଷ୍ଟଦ୍ୟୁମ୍ନଙ୍କୁ ଅବଲୋକନ କରି ନିତାନ୍ତ ଉନ୍ମନା ହେଲେ । ଏବଂ ବ୍ରହ୍ମବାଦୀ ଋଷିମାନଙ୍କ ବାକ୍ୟ ସ୍ମରଣ କରି ଧର୍ମଯୁଦ୍ଧ ଅବଲମ୍ବନ ପୂର୍ବକ ପ୍ରାଣତ୍ୟାଗ କରିବାକୁ ଇଚ୍ଛା କଲେ ।”

ପାଠକ ଦେଖିବେ ଯେ, ଏଠାରେ ଦ୍ରୋଣଙ୍କ ପ୍ରାଣତ୍ୟାଗର ଅଭିଳାଷର କାରଣପରମ୍ପରା ମଧ୍ୟରେ ଅଶ୍ୱତ୍ଥାମାଙ୍କ ମୃତ୍ୟୁ ସମ୍ବାଦ ପରିଗଣିତ ହୋଇ ନାହିଁ । ବିଗୃରକଙ୍କ ପକ୍ଷରେ ଏହି ଗୋଟିଏ ପ୍ରମାଣ ଯଥେଷ୍ଟ ।

ଦ୍ରୋଣ ତଥାପି ଯୁଦ୍ଧ ଛାଡ଼ିଲେ ନାହିଁ । ମହାଭାରତକାର ଦଶହଜାରରୁ କମ ସୈନ୍ୟ ଧ୍ୱଂସର କଥା କହନ୍ତି ନାହିଁ, ସେ କହନ୍ତି, ତାର ପରେ ମଧ୍ୟ ଦ୍ରୋଣାଚାର୍ଯ୍ୟ କୋଡ଼ିଏ ହଜାର ସୈନ୍ୟ ବିନଷ୍ଟ କଲେ, ଏବଂ ଧୃଷ୍ଟଦ୍ୟୁମ୍ନଙ୍କୁ ପୁନର୍ବାର ପରାଭୂତ କଲେ । ଏଥର ଭୀମ ଧୃଷ୍ଟଦ୍ୟୁମ୍ନଙ୍କୁ ରକ୍ଷା କଲେ, ଏବଂ ଦ୍ରୋଣାଚାର୍ଯ୍ୟଙ୍କ ରଥଧରି (ଭୀମଙ୍କ ଅଭ୍ୟାସ ରଥ ଗୁଡ଼ାକ ଧରି ମାଟିରେ ବାଡ଼େଇ ଭାଙ୍ଗି ପକାନ୍ତି) * ସେଇ ପୂର୍ବୋଦ୍ଧୃତ ଗାଳି ତିରସ୍କାର କଲେ । ସେଇ ତିରସ୍କାରରେ ଦ୍ରୋଣ ଯଥାର୍ଥ ଆୟୁଧ ତ୍ୟାଗ କଲେ,-

"ଏବଂ ତତ୍ପରେ ରଥୋପରି ସମୁଦାୟ ଅସ୍ତ୍ରଶସ୍ତ୍ର ସନ୍ନି-ବେଶିତ କରି ଯୋଗ ଅବଲମ୍ବନ ପୂର୍ବକ ସମସ୍ତ ଜୀବଙ୍କୁ ଅଭୟ ପ୍ରଦାନ କଲେ । ଏହି ସମୟରେ ମହାବୀର ଧୃଷ୍ଟଦ୍ୟୁମ୍ନ ରନ୍ଧ୍ର, ପ୍ରାପ୍ତ ହୋଇ ସ୍ୱୀୟ ରଥରେ ଭୀଷଣ ଧନୁର ଶରାସନ ଅବସ୍ଥାପନ

* ରଥଗୁଡ଼ାକ ଯଦି 'ଏକ୍କା' ପରି ହୋଇଥାଏ ତେବେ ବର୍ତ୍ତ-ମାନର ଲୋକ ମଧ୍ୟ ଏହା କରିପାରେ ।

ପୂର୍ବକ କରବାଳ ଧାରଣ କରି ଦ୍ରୋଣାଭିମୁଖରେ ଧାବମାନ ହେଲେ ଏହିରୂପେ ଦ୍ରୋଣାଚାର୍ଯ୍ୟ ଧୃଷ୍ଟଦ୍ୟୁମ୍ନଙ୍କ ବଶୀଭୂତ ହେଲେ ସମରାଙ୍ଗଣରେ ମହାନ୍ ହାହାକାର ଶବ୍ଦ ସମୁତ୍ଥିତ ହେଲା । ଏଣେ ଜ୍ୟୋତିର୍ମୟ ମହାତପା ଦ୍ରୋଣାଚାର୍ଯ୍ୟ ଅସ୍ତ୍ରଶସ୍ତ୍ର ପରିତ୍ୟାଗ ପୂର୍ବକ ଶମଭାବ ଅବଲମ୍ବନ କରି ଯୋଗସହକାରେ ଅନାଦି ପୁରୁଷ ବିଷ୍ଣୁଙ୍କ ଧ୍ୟାନ କରିବାକୁ ଲାଗିଲେ । ଏବଂ ମୁଖ ଈଷତ୍ ଉନ୍ନମିତ, ବକ୍ଷଃସ୍ଥଳ ବିଷ୍ଟମ୍ଭିତ ଓ ନେତ୍ରଦ୍ୱୟ ନିମୀଳିତ କରି ବିଷୟାଦି ବାଞ୍ଛା ପରିତ୍ୟାଗ ଓ ସାତ୍ତ୍ୱିକଭାବ ଅବଲମ୍ବନ ପୂର୍ବକ ଏକାକ୍ଷର ବେଦମନ୍ତ୍ର ଓଁକାର ଓ ପରାତ୍ପର ଦେବ ଦେବେଶ ବାସୁଦେବଙ୍କୁ ସ୍ମରଣ କରି ସାଧୁଜନ ଦୁର୍ଲଭ ସ୍ୱର୍ଗଲୋକକୁ ଗମନ କଲେ ।”

ତାପରେ ଧୃଷ୍ଟଦ୍ୟୁମ୍ନ ଆସି ମୃତଦେହର ମସ୍ତକ କାଟି ନେଇ ଗଲେ । ଅତଏବ, ମହାଭାରତରେ ଦ୍ରୋଣଙ୍କ ମୃତ୍ୟୁର ଦୁଇଟି ପୃଥକ୍ ପୃଥକ୍ ବୃତ୍ତାନ୍ତ ଦେଖାଯାଏ । ଦୁଇଟି ସମ୍ପୂର୍ଣ୍ଣରୂପେ ଯେ ପରସ୍ପରର ବିରୋଧୀ, ତାହା ନୁହେଁ; ଏକତ୍ରରେ ଗୁନ୍ଥା ଯାଏ । ଏକତ୍ର ଗୁନ୍ଥାଇ ଅଛି, ଭଲ ଯୋଡ଼ା ଲାଗି ନାହିଁ, ମୋଟାରିକମର ଶିଳ୍ପକର୍ମ, ସ୍ଥାନେ ସ୍ଥାନେ ଫାଙ୍କ ପଡ଼ିଅଛି । ଏହା ସ୍ପଷ୍ଟ ଦେଖାଯାଉଅଛି ଯେ, ଏହି ଦୁଇଟି ବିବରଣ ମଧ୍ୟରୁ ଗୋଟିଏ ଦ୍ରୋଣଙ୍କ ମୃତ୍ୟୁ ପକ୍ଷରେ ଯଥେଷ୍ଟ, ଦୁଇଟିର ପ୍ରୟୋଜନ ନାହିଁ । ଜଣେ କବିଙ୍କର ଏଇରୂପ ଦୁଇଟି ଭିନ୍ନ ଭିନ୍ନ ବିବରଣ ଦେବାକୁ ଚେଷ୍ଟା କରିବାର ସମ୍ଭାବନା ନ ଥିଲା । ଦୁଇଟି ଭିନ୍ନ ଭିନ୍ନ ସ୍ତରର ଦୁଇଜଣକବିଙ୍କ ପ୍ରଣୀତ ବୋଲି ବାଧ୍ୟ ହୋଇ ସ୍ୱୀକାର କରିବାକୁ ହୁଏ । କେଉଁଟି ପ୍ରକ୍ଷିପ୍ତ ? ଦ୍ରୋଣଙ୍କ ପ୍ରାଣତ୍ୟାଗେଚ୍ଛାର ଯେଉଁ ସବୁ କାରଣ ମହାଭାରତରୁ ଉପରେ ଉଦ୍ଧୃତ କରିଅଛି,

ଅଶ୍ୱତ୍ଥାମାଙ୍କ ମୃତ୍ୟୁସମ୍ବାଦ ତନ୍ମଧ୍ୟରେ ଧରାହୋଇ ନାହିଁ ।
ଅତଏବ ଅଶ୍ୱତ୍ଥାମାଙ୍କ ମୃତ୍ୟୁଘଟିତ ବୃତ୍ତାନ୍ତଟି ପ୍ରକୃତରେ
ଅସମ୍ଭବ । କିନ୍ତୁ ଯେଉଁ ସବୁ ସୂତ୍ର ପୂର୍ବେ ସଂସ୍ଥାପିତ କରିଅଛୁ,
ତାର ସ୍ମରଣ କରିଲେ ଏହାର ମୀମାଂସା ହେବ ।

ଆମ୍ଭେମାନେ କହିଅଛୁ ଯେ, ଯେତେବେଳେ ଦୁଇଟି ଭିନ୍ନ
ଭିନ୍ନ ବା ପରସ୍ପର ବିରୋଧୀ ବିବରଣ ମଧ୍ୟରୁ ଗୋଟିଏ ପ୍ରକ୍ଷିପ୍ତ
ବୋଲି ସ୍ଥିର ହେବ, ସେତେବେଳେ କେଉଁଟି ପ୍ରକ୍ଷିପ୍ତ, ତାହା
ମୀମାଂସା ନିମିତ୍ତ ଦେଖିବାକୁ ହେବ, କେଉଁଟି ଅନ୍ୟ ଲକ୍ଷଣ
ଦ୍ୱାରା ମହାଭାରତର ବିରୋଧ ବୋଲି ବୋଧହୁଏ, ଯେଉଁଟି ଅନ୍ୟ
ଲକ୍ଷଣରେ ବି ଧରାପଡ଼ିବ; ସେଇଟିକୁ ପ୍ରକ୍ଷିପ୍ତ ବୋଲି ତ୍ୟାଗ
କରିବେ । ଆମେ ପୂର୍ବେ ଦେଖିଅଛୁ ଯେ, ଅଶ୍ୱତ୍ଥାମା
ବଧସମ୍ବାଦବୃତ୍ତାନ୍ତ, କୃଷ୍ଣ, ଭୀମ ଓ ଯୁଧିଷ୍ଠିରଙ୍କ ଚରିତ୍ର
ସଙ୍ଗେ ଅତ୍ୟନ୍ତ ଅସଙ୍ଗତ । ଆମେ ପୂର୍ବେ ଏହା ଗୋଟିଏ ଲକ୍ଷଣ
ସ୍ଥିର କରିଅଛୁଁ ଯେ ଏରୂପ ଅସଙ୍ଗତ, ତାହା ପ୍ରକ୍ଷିପ୍ତ ବୋଲି
ଧରିବାକୁ ହେବ । ଅତଏବ ଏହି ଅଶ୍ୱତ୍ଥାମାବଧସମ୍ବାଦ
ବୃତ୍ତାନ୍ତ ପ୍ରକ୍ଷିପ୍ତ, ଏଥିରେ ସନ୍ଦେହ ନାହିଁ ।

(୩) ଆଉରି ଗୋଟାଏ କଥା ଅଛି । ଦେଖିଅଛୁଁ ଯେ, ଅଶ୍ୱତ୍ଥା-
ମାଙ୍କ ମୃତ୍ୟୁ ସମ୍ବାଦରେ ଦ୍ରୋଣ ଯୁଦ୍ଧରେ କିଛିମାତ୍ର ଶୈଥିଲ୍ୟ କରି
ନାହାନ୍ତି । ତେବେ କୃଷ୍ଣ ଏକଥା କୁହାଇଲେ କାହିଁକି ? ଦ୍ରୋଣଙ୍କ
ଯୁଦ୍ଧରେ ନିବୃତ୍ତିର ସମ୍ଭାବନା ଅଛି ବୋଲି ? ସମ୍ଭାବନା କେଉଁଠି ?
ଦ୍ରୋଣ ଜାଣନ୍ତି ଅଶ୍ୱତ୍ଥାମା ଅମର । ସେ କଥା ଅନୈସର୍ଗିକ

ବୋଲି ନ ହେଲେ ଗୁଡ଼ିଏ ଉଡ଼ିଗଲା । ସାମାନ୍ୟ ମନୁଷ୍ୟର, ଭ୍ରମର ମୋଟା ଅଥବା ଗୋଟିଏ କୁଳି ମଜୁରିଆର ଯେଉଁ ବୁଦ୍ଧି, ସେତିକି ଟିକିଏ ବୁଦ୍ଧି କୃଷ୍ଣଙ୍କର ତ ଥିଲା, ଯଦି ଏହା ସ୍ୱୀକାର କରାଯାଏ ତାହା ହେଲେ ବି ବୁଝାଯିବ ଯେ, କୃଷ୍ଣଙ୍କର ଏରୂପ ପରାମର୍ଶ ଦେବାର ସମ୍ଭାବନା ନଥିଲା । ଦ୍ରୋଣ ହୁଅନ୍ତୁ ବା ଅନ୍ୟ ଯେ କେହି ହୁଅନ୍ତୁ, ଏରୂପ ସମ୍ବାଦ ଶୁଣି ଆତ୍ମହତ୍ୟାରେ ଉଦ୍ୟତ ହେବା ପୂର୍ବରୁ, ଥରେ ସୁଦ୍ଧା କାହାକୁ କଣ ପଚାରିବେ ନାହିଁ ଯେ, ଅଶ୍ୱତ୍ଥାମା ମରିଅଛି କି ? ଅଶ୍ୱତ୍ଥାମାଙ୍କ ଅନୁସନ୍ଧାନରେ ପଠାଇବେ ନାହିଁ ? ତାହାହିଁ ନିତାନ୍ତ ସମ୍ଭବ । ତାହା ଘଟିଲେ ଜୁଆଚୁରି ସମସ୍ତ ତତ୍‌କ୍ଷଣାତ୍ ଧରା ପଡ଼ିଯିବ ।

ଅତଏବ ଉପନ୍ୟାସଟି ପ୍ରଥମତଃ ପ୍ରକ୍ଷିପ୍ତ, ଦ୍ୱିତୀୟତଃ ମିଥ୍ୟା । ମୁଁ ଏହା କହୁନାହିଁ ଯେ, ଋଷିବାକ୍ୟରେ ଦ୍ରୋଣଙ୍କ ଅସ୍ତ୍ର ପରିତ୍ୟାଗ କରିଥିବାହିଁ ସତ୍ୟ । ଋଷିମାନଙ୍କର ସେହି ରଣକ୍ଷେତ୍ରକୁ ଆଗମନ ଅନୈସର୍ଗିକବ୍ୟାପାର, ସୁତରାଂ ତାହା ବି ଅପ୍ରାକୃତ ବୋଲି ପରିତ୍ୟାଗ କରିବାକୁ ମୁଁ ବାଧ୍ୟ । ଏହା ମଧ୍ୟରେ ପ୍ରକୃତ ବା ବିଶ୍ୱାସଯୋଗ୍ୟ କଥା ଏହା ହୋଇପାରେ ଯେ, ଦ୍ରୋଣ ଅଧର୍ମାଚରଣ କରୁଥିଲେ—ଭୀମଙ୍କ ତୀବ୍ର ତିରସ୍କାରରେ ତାହା ତାଙ୍କର ହୃଦୟଙ୍ଗମ ହୋଇଥିଲା । ଯୁଦ୍ଧରେ ବିମୁଖ ହେବା ତାଙ୍କର ସାଧ୍ୟ ନୁହେ—ଅପଯଶ ଏବଂ ଦୁର୍ଯ୍ୟୋଧନଙ୍କୁ ବିପତ୍ କାଳରେ ପରିତ୍ୟାଗ, ଏହି ଉଭୟ ଦୋଷରେ ଦୂଷିତ ହେବାକୁ ହେବ । ଅତଏବ ମୃତ୍ୟୁ ସ୍ଥିର କଲେ । ବୋଧହୁଏ, ଏତିକି ଟିକିଏ କିମ୍ବଦନ୍ତୀ ଥିଲା—ତାହାର ଉପରେ ମହାଭାରତର ପ୍ରଥମ ସ୍ତର ନିର୍ମିତ ହୋଇଥିଲା । ହୁଏତ ତାହାବି ଯଥାର୍ଥ ଘଟଣା ନୁହେ । ବୋଧହୁଏ ଯଥାର୍ଥ ଘଟନା ଏଇ ପର୍ଯ୍ୟନ୍ତ ଯେ,

ଦ୍ରୋଣ ଯୁଦ୍ଧରେ ଦ୍ରୁପଦ ପୁତ୍ର କର୍ତ୍ତୃକ ନିହତ ହୋଇ ଥିଲେ ; ପରେ ଯାହା କହୁଅଛୁ, ସେଥିରୁ ତାହାଇ ବୁଝାଏ ; ତାରପରେ ପ୍ରବଳ ପ୍ରତାପ ପାଞ୍ଚାଳବଂଶକୁ ବ୍ରହ୍ମହତ୍ୟାକଳଙ୍କରୁ ଉଦ୍ଧୃତ କରିବା ନିମିତ୍ତ ନାନାବିଧ ଉପନ୍ୟାସ ପ୍ରସ୍ତୁତ ହୋଇଅଛି ।

(୪) ବର୍ତ୍ତମାନ ଦେଖାଯାଉ, ଅନୁକ୍ରମଣିକାଧ୍ୟାୟରେ, ଏବଂ ସଂସଗ୍ରହାଧ୍ୟାୟରେ କଣ ଅଛି । ଅନୁକ୍ରମଣିକାଧ୍ୟାୟରେ ଧୃତ-ରାଷ୍ଟ୍ରବିଳାପରେ ଏଇ ମାତ୍ର ଅଛି ଯେ—

"ଯଦାଶ୍ରୌଷଂ ଦ୍ରୋଣମାଚାର୍ଯ୍ୟମେକଂ
ଧୃଷ୍ଟଦ୍ୟୁମ୍ନେନାଭ୍ୟତି କ୍ରମ୍ୟ ଧର୍ମ୍ମମ୍ ।
ରଥୋପସ୍ଥେ ପ୍ରାୟଗତଂ ବିଶସ୍ତଂ
ତଦା ନାଶଂସେ ବିଜୟାୟ ସଞ୍ଜୟ ॥"

ଅର୍ଥ । ହେ ସଞ୍ଜୟ ! ଯେତେବେଳେ ଶୁଣିଲି ଯେ, ଏକାକୀ ଆଚାର୍ଯ୍ୟ ଦ୍ରୋଣଙ୍କୁ ଧୃଷ୍ଟଦ୍ୟୁମ୍ନ ଧର୍ମ୍ମାତିକ୍ରମ ପୂର୍ବକ ପ୍ରାୟୋପବିଷ୍ଟ ଅବସ୍ଥାରେ ରଥୋପସ୍ଥେ ବଧ କରି ଅଛି, ସେତେବେଳେ ଆଉ ଜୟରେ ସନ୍ଦେହ କରି ନାହିଁ ।

ଅତଏବ ଏଠାରେ ମଧ୍ୟ ଦେଖା ଯାଉ ଅଛି ଯେ, ଦ୍ରୋଣବଧରେ ଧୃଷ୍ଟଦ୍ୟୁମ୍ନ ଭିନ୍ନ ଆଉ କେହି ଅଧର୍ମ୍ମାଚରଣ କରି ନାହିଁ । ଧୃଷ୍ଟଦ୍ୟୁମ୍ନଙ୍କର ବି ପାପ ଏହି ଯେ, ପ୍ରାୟୋପବିଷ୍ଟ ବୃଦ୍ଧଙ୍କୁ ସେ ନିହତ କରିଥିଲେ । ଦ୍ରୋଣଙ୍କ ପ୍ରାୟୋପବେଶନର କାରଣ ଏଠାରେ କିଛି କଥିତ ହୋଇ ନାହିଁ । ଯୁଧିଷ୍ଠିରଙ୍କ ବାକ୍ୟରେ ବା ଋଷିଗଣଙ୍କ ବାକ୍ୟରେ ଭୀମଙ୍କ ତିରସ୍କାରରେ, ତାହା କିଛି କଥିତ ହୋଇ ନାହିଁ । ପଶ୍ଚାତ୍ ଦେଖିବ, ସେ ପରେ ଶ୍ରାନ୍ତ ହୋଇ ନିହତ ହୋଇଥିଲେ । ଆସନ୍ନମୃତ୍ୟୁ ବ୍ରାହ୍ମଣଙ୍କ ପ୍ରାୟୋପବେଶନର ସେ ବି ଉପଯୁକ୍ତ କାରଣ ।

(୫) ପର୍ବସଂଗ୍ରହାଧ୍ୟାୟରେ କୌଣସି କଥା ନାହିଁ—"ଦ୍ରୋଣେ ଯୁଧି ନିପାତିତେ," ଏହା ଛଡ଼ା ଆଉ କିଛି ନାହିଁ । ହତ ଗଜର କଥାଟା ସତ୍ୟ ହୋଇଥିଲେ, ତାହାର ପ୍ରସଙ୍ଗ ଅବଶ୍ୟ ଥାନ୍ତା । ଅଭିମନ୍ୟୁଙ୍କର ଅଧର୍ମ୍ମଯୁଦ୍ଧରେ ମୃତ୍ୟୁର କଥା ଅଛି—ଦ୍ରୋଣଙ୍କର ବି ଅବଶ୍ୟ ଥାଆନ୍ତା । ଗଳ୍ପଟା ସେତେବେଳେ ତିଆରି ହୋଇ ନାହିଁ, ଏଣୁ ନାହିଁ ।

(୬) ତାପରେ, ଦ୍ରୋଣପର୍ବର ସପ୍ତମ ଓ ଅଷ୍ଟମ ଅଧ୍ୟାୟରେ ଦ୍ରୋଣ ଯୁଦ୍ଧର ସଂକ୍ଷିପ୍ତ ବର୍ଣ୍ଣନା ଅଛି । ସେଥିରେ ବି ଏଇ ଜୁଆଚୋରିର କୌଣସି ପ୍ରସଙ୍ଗ ନାହିଁ । କେବଳ ଅଛି ଯେ, ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ ନିପାତିତ କଲେ । ଏଇ ଅଧ୍ୟାୟ ଗୁଡ଼ିକ ଯେତେବେଳେ ପ୍ରଣୀତ ହୁଏ, ସେତେବେଳେ ସୁଦ୍ଧା ଗଳ୍ପଟା ତିଆରି ହୋଇ ନାହିଁ ।

(୭) ଆଶ୍ୱମେଧିକ ପର୍ବରେ ଅଛି ଯେ, କୃଷ୍ଣ ଦ୍ୱାରକାକୁ ପ୍ରତ୍ୟାଗମନ କଲେ, ବସୁଦେବ କୃଷ୍ଣଙ୍କ ନିକଟରୁ ଯୁଦ୍ଧବୃତ୍ତାନ୍ତ ଶୁଣିବାକୁ ଇଚ୍ଛା କଲେ । କୃଷ୍ଣ ତାଙ୍କୁ ଯୁଦ୍ଧବୃତ୍ତାନ୍ତ ସଂକ୍ଷେପରେ ଶୁଣାଇଲେ । ଦ୍ରୋଣଯୁଦ୍ଧ ସମ୍ବନ୍ଧରେ କୃଷ୍ଣ ଏହାଇ କହିଲେ ଯେ, ଦ୍ରୋଣାଚାର୍ଯ୍ୟ ଓ ଧୃଷ୍ଟଦ୍ୟୁମ୍ନଙ୍କ ମଧ୍ୟରେ ପାଞ୍ଚଦିନ ଯୁଦ୍ଧ ହୁଏ । ପରିଶେଷରେ ଦ୍ରୋଣ ସମରଶ୍ରମରେ ଏକାନ୍ତ ପରିଶ୍ରାନ୍ତ ହୋଇ ଧୃଷ୍ଟଦ୍ୟୁମ୍ନଙ୍କ ହସ୍ତରେ ନିହତ ହେଲେ । ବୋଧହୁଏ ଏଇ ଟିକକ ସତ୍ୟ ; ଏବଂ ପାଞ୍ଚବାର ସନ୍ତତ ଯୁଦ୍ଧରେ, ବୃଦ୍ଧର ଶ୍ରାନ୍ତି ଦ୍ରୋଣଙ୍କ ଯୁଦ୍ଧବିରତିର ଯଥାର୍ଥ କାରଣ । ଆଉ ସବୁ କବି-କଳ୍ପନା ବା ଉପନ୍ୟାସ । ନିତାନ୍ତ ଯେ ଉପନ୍ୟାସ, ତାହାର ସାତ ରକମ ପ୍ରମାଣ ଦେଲି ।

କିନ୍ତୁ ସେଇ ସବୁ ଉପନ୍ୟାସ ମଧ୍ୟରେ, କୃଷ୍ଣଙ୍କୁ ମିଥ୍ୟା ପ୍ରବଞ୍ଚନାର ପ୍ରବର୍ତ୍ତକ ବୋଲି ସ୍ଥାପିତ କରିବାର କାରଣ କଣ ? କାରଣ ପୂର୍ବେ ବୁଝାଇ ଅଛୁ । ବୁଝାଇ ଅଛୁ ଯେ, ଯେପରି ଜ୍ଞାନ ଈଶ୍ୱରଦତ୍ତ, ଅଜ୍ଞାନ ବା ଭ୍ରାନ୍ତି ମଧ୍ୟ ସେହିପରି । ଜୟଦ୍ରଥବଧରେ କବି ତାହା ଦେଖାଇଅଛନ୍ତି । ଭ୍ରାନ୍ତି ମଧ୍ୟ ଈଶ୍ୱର ପ୍ରେରିତ । ଘଟୋତ୍କଚବଧରେ କବି ଦେଖାଇଛନ୍ତି ଯେ ଯେପରି ବୁଦ୍ଧି ଈଶ୍ୱର ପ୍ରେରିତ, ଦୁର୍ବୁଦ୍ଧି ମଧ୍ୟ ଈଶ୍ୱର ପ୍ରେରିତ । ଆହୁରି ବୁଝାଇ ଅଛୁ ଯେ, ଯେପରି ସତ୍ୟ ଈଶ୍ୱରଙ୍କର, ଅସତ୍ୟ ମଧ୍ୟ ସେହିପରି ଈଶ୍ୱରଙ୍କର । ଏଇ ଦ୍ରୋଣ ବଧରେ କବି ତାହାଇ ଦେଖାଇଲେ ।

ଏହା ପରେ ନାରାୟଣାସ୍ତ୍ରମୋକ୍ଷ—ପର୍ବାଧ୍ୟାୟ । ସଂକ୍ଷେପରେ ତାହାର ଉଲ୍ଲେଖ କରିଅଛୁ । ବିସ୍ତାରିତର ପ୍ରୟୋଜନ ନାହିଁ ; କାରଣ, ନାରାୟଣାସ୍ତ୍ର ବୃତ୍ତାନ୍ତଟା ଅନୈସର୍ଗିକ ସୁତରାଂ ପରିତ୍ୟାଜ୍ୟ, ତେବେ ଏଇ ପର୍ବାଧ୍ୟାୟରେ ଗୋଟିଏ ରହସ୍ୟର କଥା ଅଛି ।

ଦ୍ରୋଣ ନିହତ ହୋଇଲେ, ଅର୍ଜ୍ଜୁନ ଗୁରୁଙ୍କ ନିମିତ୍ତ ଶୋକରେ ଅତ୍ୟନ୍ତ କାତର । ମିଥ୍ୟା କଥା କହି ଗୁରୁବଧସାଧନ ନିମିତ୍ତ ସେ ଯୁଧିଷ୍ଠିରଙ୍କୁ ଖୁବ ତିରସ୍କାର କଲେ ଏବଂ ଧୃଷ୍ଟଦ୍ୟୁମ୍ନଙ୍କର ନିନ୍ଦା କଲେ । ଯୁଧିଷ୍ଠିର ଭଲ ମଣିଷ, କିଛି ଉତ୍ତର ଦେଲେ ନାହିଁ, କିନ୍ତୁ ଭୀମ ଅର୍ଜ୍ଜୁନଙ୍କୁ କଡ଼ାରକମର କିଛି ଶୁଣାଇଲେ । ଧୃଷ୍ଟଦ୍ୟୁମ୍ନ ଅଧିକ କଡ଼ା ରକମର ଶୁଣାଇଲେ । ସେତେବେଳେ ଅର୍ଜ୍ଜୁନଶିଷ୍ୟ ଯଦୁବଂଶୀୟ ସାତ୍ୟକି, ଅର୍ଜ୍ଜୁନଙ୍କ ପକ୍ଷ ହୋଇ ଧୃଷ୍ଟଦ୍ୟୁମ୍ନଙ୍କୁ ଖରାପ ରକମର ଗାଳି ଗୁଲଜ କଲେ । ଧୃଷ୍ଟଦ୍ୟୁମ୍ନ ସୁଧ ସହିତ ଫେରାଇ ଦେଲେ । ସେତେବେଳେ ଦୁଇଜଣ ପରସ୍ପରର ବଧରେ ଉଦ୍ୟତ,

କୃଷ୍ଣଙ୍କ ଇଙ୍ଗିତରେ ଭୀମ ଓ ସହଦେବ ବଧ କରିଦେଲେ । ବିବାଦଟା ଏହି ଯେ, ମିଥ୍ୟା କଥା କହି ଦ୍ରୋଣଙ୍କ ମୃତ୍ୟୁସାଧନ କରିବା କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ କି ନୁହେଁ, ଏଇ ତତ୍ତ୍ୱ ନେଇ ଦୁଇ ଦଳ ଦୁଇ ପକ୍ଷରେ ଯେତେ କଥା ଅଛି, ସବୁ କହିଲେ, କିନ୍ତୁ କେହି କୃଷ୍ଣଙ୍କୁ ଭଲ ମନ୍ଦ କିଛିହିଁ କହିଲେ ନାହିଁ । କେହି କହିଲେ ନାହିଁ ଯେ, କୃଷ୍ଣଙ୍କ କଥାରେ ଏରୂପ ହୋଇଅଛି । କୃଷ୍ଣଙ୍କ ନାମ ସୁଦ୍ଧା କେହି ନେଲେ ନାହିଁ । ପାଞ୍ଚ ହାତରେ କାମ ନ ହେଲେ ଏପରି ଘଟେ ନାହିଁ ।

## ଷଷ୍ଠ ପରିଚ୍ଛେଦ

## କୃଷ୍ଣକଥିତ ଧର୍ମ୍ମତତ୍ତ୍ୱ

ଯେ ଅଶ୍ୱତ୍ଥାମାବଧସମ୍ବାଦ—ବୃତ୍ତାନ୍ତ ରଚନା କରିଛନ୍ତି, ସେ ଅର୍ଜ୍ଜୁନଙ୍କୁ ବଡ଼ ଉଚ୍ଚସ୍ଥାନରେ ସ୍ଥାପିତ କରିଛନ୍ତି । କୃଷ୍ଣ, ଯୁଧିଷ୍ଠିର ଓ ଭୀମଙ୍କ ଅପେକ୍ଷା ତାଙ୍କ ଧାର୍ମ୍ମିକତା ଅନେକ ବେଶୀ ଏହିରୂପ ପରିଚୟ ଦେଇଛନ୍ତି । ଯାହାର ପ୍ରସ୍ତାବକର୍ତ୍ତା କୃଷ୍ଣ, ଏବଂ ଯାହା ପରିଶେଷରେ ଭୀମ ଓ ଯୁଧିଷ୍ଠିର ସମ୍ପାଦିତ କଲେ, ତାହା ମିଥ୍ୟା କଥା ବୋଲି ଅର୍ଜ୍ଜୁନ ତହିଁରେ କୌଣସି ମତେ ସମ୍ମତ ହେଲେ ନାହିଁ ; ବରଂ ସେଥି ନିମିତ୍ତ ଯୁଧିଷ୍ଠିରଙ୍କୁ ଯଥେଷ୍ଟ ଭର୍ତ୍ସନା କଲେ । କିନ୍ତୁ ବର୍ତ୍ତମାନ ଯେଉଁ ବିବରଣରେ ମତେ ପ୍ରବୃତ୍ତ ହେବାକୁ ହେଉଅଛି; ସେଥିରେ ଅର୍ଜ୍ଜୁନ ଅତି ମୂଢ଼ ଓ ପାଷଣ୍ଡ ବୋଲି ପ୍ରତୀୟମାନ ହେଉଛନ୍ତି । ଏବଂ କୃଷ୍ଣଙ୍କ ନିକଟରୁ ଧର୍ମ୍ମୋପଦେଶ ପାଇ ତେବେ ସତ୍‌ପଥ ଅବଲମ୍ବନ କରିଛନ୍ତି । ବୃତ୍ତାନ୍ତଟା ଏହି :—

ଦ୍ରୋଣଙ୍କ ପରେ କର୍ଣ୍ଣ ଦୁର୍ଯ୍ୟୋଧନଙ୍କ ସେନାପତି । ତାଙ୍କ ଯୁଦ୍ଧରେ ପାଣ୍ଡବସେନା ଅସ୍ଥିର । ଯୁଧିଷ୍ଠିର ନିଜ ଦୁର୍ଭାଗ୍ୟବଶତଃ ତାଙ୍କ ସମ୍ମୁଖୀନ ହୋଇଥିଲେ । କର୍ଣ୍ଣ ତାଙ୍କୁ ଏରୂପ ସନ୍ତାପିତ କଲେ ଯେ, ଯୁଧିଷ୍ଠିର ଭୟରେ ରଣକ୍ଷେତ୍ରରୁ ପଳାୟନ କରି ଶିବିରରେ ଲୁକ୍‌କାୟିତ ହୋଇ ବିଛଣାରେ ଶୋଇ ପଡ଼ିଲେ । ଏଣେ ଅର୍ଜ୍ଜୁନ ଯୁଦ୍ଧରେ ବିଜୟୀ ହୋଇ ଯୁଦ୍ଧକ୍ଷେତ୍ରରେ ଯୁଧିଷ୍ଠିରଙ୍କୁ ନ ଦେଖି ଚିନ୍ତିତ ହୋଇ ତାଙ୍କ ଅନ୍ୱେଷଣରେ ଶିବିରକୁ ଗଲେ, ସେ ପର୍ଯ୍ୟନ୍ତ କର୍ଣ୍ଣ ନିହତ ହୋଇ ନାହାନ୍ତି । ଯୁଧିଷ୍ଠିର ଯେତେବେଳେ ଶୁଣିଲେ ଯେ, ଅର୍ଜ୍ଜୁନ ଏ ପର୍ଯ୍ୟନ୍ତ କର୍ଣ୍ଣବଧ କରି ନାହାନ୍ତି, ସେତେବେଳେ ରାଗି ଭାରି ଚରମ ହୋଇଗଲେ, କାପୁରୁଷର ସ୍ୱଭାବ ଏହି ଯେ, ନିଜେ ଯାହା ନ ପାରେ, ପର ତାହା କରି ନ ଦେଲେ ବଡ଼ ରାଗି ଯାଏ । ସୁତରାଂ ଯୁଧିଷ୍ଠିର ଅର୍ଜ୍ଜୁନଙ୍କୁ ଖୁବ କଠିନ ଗାଳିଗୁଲଜ କଲେ । ଶେଷରେ କହିଲେ ଯେ, ତୁମେ ନିଜେ ଯେତେବେଳେ ଯୁଦ୍ଧରେ ଭୀତ ହୋଇ ପଳାୟନ କରିଅଛ, ସେତେବେଳେ କୃଷ୍ଣଙ୍କୁ ଗାଣ୍ଡୀବ ଶରାସନ ପ୍ରଦାନ କର । ଏହା ଶୁଣି ଅର୍ଜ୍ଜୁନ ତରବାରି ନେଇ ଯୁଧିଷ୍ଠିରଙ୍କୁ କାଟିବାକୁ ଉଠିଲେ । କୃଷ୍ଣ ପଚାରିଲେ, ତରବାରି ଦ୍ୱାରା କାହାକୁ ବଧ କରିବ ? ଅର୍ଜ୍ଜୁନ କହିଲେ, "ତୁମେ ଅନ୍ୟକୁ ଗାଣ୍ଡୀବ * ଶରାସନ ସମର୍ପଣ କର, ଏହି କଥା ଯେ ମତେ କହିବେ, ମୁଁ ତାଙ୍କର ମସ୍ତକ ଛେଦନ କରିବି, ଏହା ମୋର

---

* ପାଠକଙ୍କୁ ବୋଧହୁଏ କହିବାକୁ ହେବ ନାହିଁ ଯେ, ଗାଣ୍ଡୀବ ଅର୍ଜ୍ଜୁନଙ୍କ ଧନୁଷର ନାମ । ତାହା ଦେବଦତ୍ତ, ଅବିନଶ୍ୱର ଏବଂ ଶରାସନ ମଧ୍ୟରେ ଭୟଙ୍କର ।

ଉପାଂଶୁବ୍ରତ । ବର୍ତ୍ତମାନ ତୁମ ସମକ୍ଷରେ ମହାରାଜ ମତେ ଏଇକଥା କହିଛନ୍ତି, ଅତଏବ ଏଇ ଧର୍ମଭୀରୁ ନରପତିଙ୍କୁ ନିହତ କରି ପ୍ରତିଜ୍ଞା ପ୍ରତିପାଳନ ଓ ସତ୍ୟର ଆନୃଣ୍ୟ ଲାଭ କରି ନିଶ୍ଚିନ୍ତ ହେବ ।”

କଥାଟା ମୂଢ ଓ ପାଷାଣ୍ଡ ପରି ହେଲା—ଅର୍ଜୁନଙ୍କ ପରି ନୁହେ । ପ୍ରଥମରେ ତ ଗାଣ୍ଡୀବ ଅନ୍ୟକୁ ଦିଅ କହିଲେ କୌଣସି ବ୍ୟକ୍ତିକୁ ଖୁନ କରିବାକୁ ହେବ, ଏପରି ପ୍ରତିଜ୍ଞାହିଁ ମୂଢତାର କାର୍ଯ୍ୟ । ତାର ପରେ ପୂଜ୍ୟପାଦ ଜ୍ୟେଷ୍ଠାଗ୍ରଜ ଉତ୍ତେଜନା ହେତୁ ଏପରି କଥା କହିଛନ୍ତି ବୋଲି, ତାଙ୍କୁ ବଧ କରିବାର ପ୍ରବୃତ୍ତ ହେବା ଅତିଶୟ ପାଷଣ୍ଡର କାର୍ଯ୍ୟ । ତେବେ ଏହା ଭିତରେ ଗୁରୁତର କଥା ଅଛି ; ତାହାର ବିସ୍ତାରିତ ମୀମାଂସା କୃଷ୍ଣ କରିଥିଲେ ହୋଇଥିଲା, ଏଥି ନିମିତ୍ତ ଏ କଥାର ଅବତାରଣା କରିବାକୁ ମୁଁ ବାଧ୍ୟ ।

କଥାଟା ଏଇ । ସତ୍ୟ ପରମ ଧର୍ମ । ଯଦି ଅର୍ଜୁନ ଯୁଧିଷ୍ଠିରଙ୍କୁ ବଧ ନ କରନ୍ତି, ତେବେ ତାଙ୍କୁ ସତ୍ୟଚ୍ୟୁତ ହେବାକୁ ହୁଏ । ଅର୍ଜୁନଙ୍କ ପ୍ରଶ୍ନ ଏହି ଯେ, ସତ୍ୟ ରକ୍ଷାର୍ଥ ଯୁଧିଷ୍ଠିରଙ୍କୁ ବଧ କରିବା ତାଙ୍କର କର୍ତ୍ତବ୍ୟ କି ନା ? ଅର୍ଜୁନ କୃଷ୍ଣଙ୍କୁ ପଚାରିଲେ, “ତୁମ ମତରେ ବର୍ତ୍ତମାନ କଣ କର୍ତ୍ତବ୍ୟ ?”

କୃଷ୍ଣ ଯେଉଁ ଉତ୍ତର ଦେଲେ, ତାହା ବୁଝାଇବା ପୂର୍ବେ, ଆମେ ପାଠକଙ୍କୁ ଅନୁରୋଧ କରୁ ଯେ, ଆପଣ ନିଜେ ଏହାର ଉତ୍ତର ଦେବାକୁ ଚେଷ୍ଟା କରନ୍ତୁ । ବୋଧ କରେ, ସବୁ ପାଠକ ଏକମତ ହୋଇ ଉତ୍ତର ଦେବେ ଯେ, ଏ ରୂପ ସତ୍ୟ ନିମିତ୍ତ ଯୁଧିଷ୍ଠିରଙ୍କୁ ବଧ କରିବା ଅର୍ଜୁନଙ୍କ କର୍ତ୍ତବ୍ୟ ନୁହେ । କୃଷ୍ଣ ବି ସେଇ ଉତ୍ତର ଦେଲେ । କିନ୍ତୁ ପାଶ୍ଚାତ୍ୟନୀତିପଣ୍ଡିତ

ଆଧୁନିକ ପାଠକ ଯେଉଁ କାରଣରୁ ଏହି ଉତ୍ତର ଦେବେ, କୃଷ୍ଣ ସେହି କାରଣରୁ ଏ ସବୁ ଉତ୍ତର ଦେଲେ ନାହିଁ। ସେ ପ୍ରାଚ୍ୟମତର ବଶବର୍ତ୍ତୀ ହୋଇ କେବଳ ଏଇ ଉତ୍ତର ଦେଲେ ତାହାର କାରଣ ବୁଝାଇବାକୁ ହେବ ନାହିଁ– ବୁଝାଇବାକୁ ହେବ ନାହିଁ ଯେ, ଶ୍ରୀକୃଷ୍ଣ ଭାରତବର୍ଷର ଅବତୀର୍ଣ୍ଣ, ଇଂଲଣ୍ଡର ନୁହେ। ସେ ଭାରତବର୍ଷର ମତରେ ସୁମନ୍ତ୍ରିତ, ଇଉରୋପୀୟ ମତ ସେ ଏମସୁରେ ହୋଇ ନାହିଁ; ଏବଂ କୃଷ୍ଣ ତନ୍ମାର୍ଗାବଲମ୍ବୀ ହେଲେ ଅର୍ଜ୍ଜୁନ ମଧ ତାହାର କିଛି ହିଁ ବୁଝନ୍ତେ ନାହିଁ।

କୃଷ୍ଣ ଅର୍ଜ୍ଜୁନଙ୍କୁ ବୁଝାଇବା ନିମିତ୍ତ ଯେଉଁ ସବୁ ତତ୍ତ୍ୱର ଅବତାରଣା କଲେ, ବର୍ତ୍ତମାନ ତାହାର ସ୍ଥୂଳମର୍ମ୍ମ କହୁଅଛୁ– ଅନ୍ତତଃ ଯେଉଁ ଅଂଶ ବିବାଦର ସ୍ଥଳ ହୋଇ ପାରେ, ତାହା ଉଦ୍ଧୃତ କରୁଅଛୁ।

ତାଙ୍କର ପ୍ରଥମ କଥା, **"ଅହିଂସା ପରମୋ ଧର୍ମ୍ମଃ।"** ଏଥିରେ ପ୍ରଥମ ଆପତ୍ତି ହୋଇପାରେ ଯେ, ସବୁ ସ୍ଥାନରେ ଅହିଂସା ଧର୍ମ୍ମ ନୁହେ। ଦ୍ୱିତୀୟ ଆପତ୍ତି ଏହା ହୋଇ ପାରେ ଯେ, କୃଷ୍ଣ ସ୍ୱୟଂ ଗୀତାପର୍ବାଧ୍ୟାୟରେ ଅର୍ଜ୍ଜୁନଙ୍କୁ ଯେଉଁ ଉପଦେଶ ଦେଇ ଯୁଦ୍ଧରେ ପ୍ରବୃତ୍ତ କରାଇ ଥିଲେ, ଏ ଉକ୍ତି ତାହାର ବିପରୀତ।

ଯେ ଅହିଂସାତତ୍ତ୍ୱର ଯଥାର୍ଥ ମର୍ମ୍ମ ନ ବୁଝନ୍ତି, ସେ ଏପରି ଆପତ୍ତି କରିବେ। ଅହିଂସା ପରମ ଧର୍ମ୍ମ। ଏ କଥାରେ ଏପରି ବୁଝାଏ ନାହିଁ ଯେ, କୌଣସି ଅବସ୍ଥାରେ କୌଣସି ପ୍ରକାର ପ୍ରାଣିହିଂସା କଲେ ଅଧର୍ମ୍ମ ହୁଏ। ପ୍ରାଣିହିଂସା ବ୍ୟତୀତ ଆମେ କ୍ଷଣମାତ୍ର ଜୀବନ ଧାରଣ କରି ପାରୁ ନା, ଏହା

ଐଣିକ ନିୟମ । ଆମେ ଯେଉଁ ଜଳେ ପାନ କରୁ, ତାହା ସଙ୍ଗେ ସହସ୍ର ସହସ୍ର ଅନୁବୀକ୍ଷଣ ଦୃଶ୍ୟ ଜୀବ ଉଦରସ୍ଥ କରୁ ; ପ୍ରତି ନିଶ୍ୱାସରେ ବହୁ ସଂଖ୍ୟକ ତାଦୃକ୍ ଜୀବ ନାସାପଥରେ ପ୍ରେରଣ କରୁ ; ପ୍ରତି ପଦାର୍ପଣରେ ସହସ୍ର ସହସ୍ରଙ୍କୁ ଦଳିତ କରୁ । ଗୋଟିଏ ଶାଗ ପତର ବା ଗୋଟିଏ ବାଇଗଣ ସଙ୍ଗେ ଅନେକ ଗୁଡ଼ିକୁ ରାନ୍ଧି ଖାଉ । ଯଦି କୁହ, ଏ ସବୁ ଅଜ୍ଞାନକୃତ ହିଂସା, ଏଥିରେ ପାପ ନାହିଁ ; ମୁଁ ତାହାର ଉତ୍ତରରେ କହିବି ଯେ, ଜ୍ଞାନକୃତ ପ୍ରାଣି ହିଂସା ବ୍ୟତୀତ ବି ଆମର ପ୍ରାଣରକ୍ଷା ହୁଏ ନାହିଁ । ଯେଉଁ ବିଷଧର ସର୍ପ ବା ବୃଶ୍ଚିକ, ମୋ ଗୃହରେ ବା ମୋ ଶଯ୍ୟାତଳରେ ଆଶ୍ରୟ କରିଅଛି ମୁଁ ତାକୁ ବିନାଶ ନ କଲେ, ସେ ମତେ ବିନାଶ କରିବ, ଯେଉଁ ବ୍ୟାଘ୍ର ମତେ ଗ୍ରହଣ କରିବା ନିମିତ୍ତ ଲମ୍ଫୋନୋଦ୍ୟତ, ମୁଁ ତାକୁ ବିନାଶ ନ କଲେ ସେ ମତେ ବିନାଶ କରିବ । ଯେଉଁ ଶତ୍ରୁ ମୋର ବଧସାଧନରେ କୃତସଙ୍କଳ୍ପ ଓ ଉଦ୍ୟତାୟୁଧ, ମୁଁ ତାହାଙ୍କୁ ବିନାଶ ନ କଲେ ସେ ମତେ ବିନାଶ କରିବ । ଯେଉଁ ଦସ୍ୟୁ ଧୃତାସ୍ତ୍ର ହୋଇ ନିଶୀଥରେ ମୋର ଗୃହରେ ପ୍ରବେଶପୂର୍ବକ ସର୍ବସ୍ୱ ଗ୍ରହଣ କରୁଅଛି, ଯଦି ବିନାଶ ଭିନ୍ନ ତାକୁ ନିବାରଣର ଉପାୟ ନ ଥାଏ, ତେବେ ତାକୁ ବିନାଶ କରିବାହିଁ ମୋ ପକ୍ଷରେ ଧର୍ମାନୁମତ ।

ଯେଉଁ ବିଚାରକଙ୍କ ସମ୍ମୁଖରେ ହତ୍ୟାକାରୀକୃତ ହତ୍ୟା ପ୍ରମାଣିତ ହୋଇଅଛି, ଯଦି ତାହାର ବଧଦଣ୍ଡ ରାଜନିୟୋଗ ସମ୍ମତ ହୁଏ ତେବେ ସେ ତାର ବଧାଜ୍ଞା ପ୍ରଚାର କରିବାକୁ ଧର୍ମତଃ ବାଧ୍ୟ । ଏବଂ ଯେଉଁ ରାଜପୁରୁଷ ଉପରେ ବଧାର୍ହର ବଧର ଭାର ଅଛି, ସେ ମଧ୍ୟ ତାକୁ ବଧ କରିବାକୁ ବାଧ୍ୟ । ସେକେନ୍ଦର

ବା ଗଜନବୀ ମହମ୍ମଦ, ଆଲ୍ଲାଉଦ୍ଦିନ ବା ଚଙ୍ଗେଜ, ତୈମୁର ବା ନାଦେର, ଦ୍ୱିତୀୟ ଫ୍ରେଡ଼େରିକ ବା ନେପୋଲିୟନ୍ ପରସ୍ୱ ଓ ପରରାଷ୍ଟ୍ରାପହରଣ ନିମିତ୍ତ ଯେଉଁ ଅଗଣିତ ଶିକ୍ଷିତ ତସ୍କର ନେଇ ପରରାଜ୍ୟପ୍ରବେଶ କରିଥିଲେ, ତାହା ଲକ୍ଷ ଲକ୍ଷ ହେଲେ ମଧ୍ୟ ପ୍ରତ୍ୟେକ ଧର୍ମ୍ମତଃ ବଧ୍ୟ । ଏଠାରେ ହିଂସା ଧର୍ମ୍ମ । ପକ୍ଷାନ୍ତରେ ଯେଉଁ ପକ୍ଷିଟି ଆକାଶରେ ଉଡ଼ି ଯାଉଅଛି, ଭୋଜନ ନିମିତ୍ତ ହେଉ ବା ଖେଳିବା ନିମିତ୍ତ ହେଉ, ତାହାର ନିପାତ ଅଧର୍ମ୍ମ । ଯେଉଁ ମାଛଟି ମିଷ୍ଟବନ୍ଦ୍ ଅନ୍ୱେଷଣରେ ଉଡ଼ି ବୁଲୁଛି, କ୍ରୀଡ଼ାଶୀଳ ବାଳକ ଯେ ତାକୁ ଧରି ଚିପି ମାରିଲା, ତାହା ଅଧର୍ମ୍ମ । ଯେଉଁ ମୃଗ ବା ଯେଉଁ କୁକ୍କୁଟ ଭୂମି ଆମ ପରି ଜୀବନଯାତ୍ରା ନିର୍ବାହ ନିମିତ୍ତ ଜଗତକୁ ଆସିଅଛି, ଉଦରମ୍ଭରି ଯେ ତାକୁ ବଧ କରି ଖାଏ ତାହା ଅଧର୍ମ୍ମ । ଆମେ ବାୟୁପ୍ରବାହର ତଳସ୍ଥିତ ଜୀବ ; ମତ୍ସ୍ୟ, ଜଳପ୍ରବାହର ଉପରିଚର ଜୀବ ; ଆମେ ଯେ ତାଙ୍କୁ ଧରି ଖାଉଁ, ତାହା ଅଧର୍ମ୍ମ ।

ତେବେ ଅହିଂସା ପରମ ଧର୍ମ୍ମ । ଏ ବାକ୍ୟର ପ୍ରକୃତ ତାତ୍ପର୍ଯ୍ୟ ଏହି ଯେ, ଧର୍ମ୍ମ୍ୟ ପ୍ରୟୋଜନ ବ୍ୟତୀତ ଯେଉଁ ହିଂସା, ତହିଁରୁ ବିରତି ପରମ ଧର୍ମ୍ମ । ନଚେତ୍ ହିଂସାକାରୀର ନିବାରଣ ନିମିତ୍ତ ହିଂସା ଅଧର୍ମ୍ମ ନୁହେ; ବରଂ ପରମ ଧର୍ମ୍ମ । ଏହି କଥା ସ୍ପଷ୍ଟୀକୃତ କରିବା ନିମିତ୍ତ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ବଲକର ଇତିହାସ ଶୁଣାଇଲେ । ତାର ସ୍ଥୂଳ ତାତ୍ପର୍ଯ୍ୟ ଏହି ଯେ, ବଲକ ନାମକ ବ୍ୟାଧ, ପ୍ରାଣିଗଣର ବିଶେଷ ବିନାଶହେତୁ ଗୋଟିଏ ଶ୍ୱାପଦକୁ ବିନାଶ କରିଥିଲା, କରିବା ମାତ୍ରେ ତାହା ଉପରେ "ଆକାଶରୁ ପୁଷ୍ପବୃଷ୍ଟି ନିପତିତ ହେବାକୁ ଲାଗିଲା, ଅପ୍ସରାମାନଙ୍କର ଅତି ମନୋରମ ଗୀତ ବାଦ୍ୟ ଆରମ୍ଭ ହେଲା,

ଏବଂ ସେଇ ବ୍ୟାଧକୁ ସ୍ୱର୍ଗରେ ସମାନୀତ କରିବା ନିମିତ୍ତ ବିମାନ ସମୁପସ୍ଥିତ ହେଲା ।" ବ୍ୟାଧର ପୁଣ୍ୟ ଏହି ଯେ, ସେ ହିଂସା କାରୀର ହିଂସା କରିଥିଲା ।

ଅହିଂସା ପରମ ଧର୍ମ, ଏହି ଅର୍ଥରେ ବୁଝିବାକୁ ହେବ । ତେବେ ଧର୍ମ୍ୟ ପ୍ରୟୋଜନ ଭିନ୍ନ ହିଂସା କରିବ ନାହିଁ, ଏ କଥାରେ ଗୋଟିଏ ବଡ଼ ଗୋଳଯୋଗ ହୁଏ, ଏବଂ ଜଗତରେ ଚିରକାଳ ହୋଇ ଆସୁଅଛି । ଧର୍ମ୍ୟ ପ୍ରୟୋଜନ କଣ ? ଧର୍ମ କଣ ? Inguisition (ପାଷଣ୍ଡ ଦମନାର୍ଥ ସ୍ଥାପିତ ବିଚାରାଳୟ) କର୍ତ୍ତୃକ ମନୁଷ୍ୟବଧରେ ଧର୍ମ୍ୟ ପ୍ରୟୋଜନ ଅଛି ବୋଲି କୋଟି କୋଟି ମନୁଷ୍ୟ ଯମପୁରକୁ ପ୍ରେରିତ ହୋଇଥିଲେ । ଧର୍ମାର୍ଥ St. Bartholomew ( ସେଣ୍ଟ ବାର୍ଥଲୋମିଓ ) ହତ୍ୟାକାଣ୍ଡ । ଧର୍ମାଚରଣ ବିବେଚନାରେ ନ୍ୟସେଦବାଲମାନଙ୍କଦ୍ୱାରା ପୃଥିବୀ ନରଶୋଣିତପ୍ରବାହରେ ପଙ୍କିଳ ହୋଇଥିଲା । ଧର୍ମବିସ୍ତାର ମୁସଲମାନମାନେ ଲକ୍ଷ ଲକ୍ଷ ମନୁଷ୍ୟ ହତ୍ୟା କରିଥିଲେ ବୋଧହୁଏ, ଧର୍ମପ୍ରୟୋଜନ ସମ୍ବନ୍ଧରେ ଭ୍ରାନ୍ତିରେ ପଡ଼ି ମନୁଷ୍ୟ ଯେତେ ମନୁଷ୍ୟ ନଷ୍ଟ କରିଅଛି, ସେତେ ମନୁଷ୍ୟ ଆଉ କୌଣସି କାରଣରୁ ନଷ୍ଟ ହୋଇନାହିଁ ।

ଅର୍ଜୁନଙ୍କର ମଧ୍ୟ ବର୍ତ୍ତମାନ ସେଇ ଭ୍ରାନ୍ତି ଉପସ୍ଥିତ । ସେ ମନେ କରିଛନ୍ତି ଯେ, ସତ୍ୟରକ୍ଷାର୍ଥ ଯୁଧିଷ୍ଠିରଙ୍କୁ ବଧକରିବା କର୍ତ୍ତବ୍ୟ । ଅତଏବ କେବଳ ଅହିଂସା ପରମ ଧର୍ମ, ଏ କଥା କହିଲେ ତାଙ୍କ ଭ୍ରାନ୍ତିର ଦୂରୀକରଣ ହୁଏ ନାହିଁ । ଏଥି ନିମିତ୍ତ କୃଷ୍ଣଙ୍କ ଦ୍ୱିତୀୟ କଥା ।

ସେ ବିଶିଷ୍ଟ କଥା ଏହି ଯେ, **ବରଂ ମିଥ୍ୟା ବାକ୍ୟ ମଧ୍ୟ ପ୍ରୟୋଗ କରାଯାଇ ପାରେ, କିନ୍ତୁ କଦାପି ପ୍ରାଣିହିଂସା କରା କର୍ତ୍ତବ୍ୟ ନୁହେ ।** * ଏହାର ସ୍ଥୂଳ ତାତ୍ପର୍ଯ୍ୟ ଏହି ଯେ, ଅହିଂସା ଓ ସତ୍ୟ, ଏହି ଦୁଇ ମଧ୍ୟରେ ଅହିଂସା ଶ୍ରେଷ୍ଠ ଧର୍ମ । ଏହାର ଅର୍ଥ ଏଇ:—ନାନାବିଧ ପୁଣ୍ୟ କର୍ମକୁ ଧର୍ମ ବୋଲି ଗଣନା କରାଯାଏ; ଯଥା:—ଦାନ, ତପ, ଦେବଭକ୍ତି, ସତ୍ୟ, ଶୌଚ, ଅହିଂସା ଇତ୍ୟାଦି । ଏହା ମଧ୍ୟରେ ସବୁ ଗୁଡ଼ିକ ସମାନ ନୁହେ, ଇତରବିଶେଷ ହେବାହିଁ ସମ୍ଭବ । ଶୌଚର ମହାତ୍ମ୍ୟ ବା ଦାନର ମହାତ୍ମ୍ୟ କଣ ସତ୍ୟ ସଙ୍ଗରେ ବା ଅହିଂସା ସଙ୍ଗରେ ଏକ ? ଯଦି ତାହା ନ ହୁଏ, ଯଦି ତାରତମ୍ୟ ଥାଏ, ତେବେ ସର୍ବଶ୍ରେଷ୍ଠ କିଏ ? କୃଷ୍ଣ କହନ୍ତି ଅହିଂସା । ସତ୍ୟର ସ୍ଥାନ ତାହା ତଳେ ।

---

* ଯେଉଁ ବଚନ ଉପରେ ନିର୍ଭର କରି କୃଷ୍ଣକଥିତ ଏଇ ଧର୍ମ-ତତ୍ତ୍ୱ ସଂସ୍ଥାପିତ ହେଉଅଛି, ତାହାର ମୂଳ ସଂସ୍କୃତ ଉଦ୍ଧୃତ କରିବା କର୍ତ୍ତବ୍ୟ ।

ପ୍ରାଣିନାମ ବଧସ୍ତାତ ସର୍ବଜ୍ୟାୟାନ୍ମତୋ ମମ ।
ଅନୃତାଂ ବା ବଦେଦ୍‌ବାକ୍ୟଂ ନ ତୁ ହିଂସ୍ୟାତ୍ କଥଞ୍ଚନ ॥

ପାଠକ ଦେଖିବେ, ଅହିଂସା ପରମଧର୍ମ, ଏହା କୃଷ୍ଣବାକ୍ୟର ଠିକ୍ ଅନୁବାଦ ନୁହେ । ଠିକ୍ ଅନୁବାଦ—"ମୋ ମତରେ ପ୍ରାଣି ଗଣର ଅହିଂସା ସବୁଠାରୁ ଶ୍ରେଷ୍ଠ ।" ଅର୍ଥାତ୍ ଅର୍ଥଗତ ବିଶେଷ ପ୍ରଭେଦ ନାହିଁ ବୋଲି "ଅହିଂସା ପରମ ଧର୍ମ" ଏହି ସୁପରିଚିତ ବାକ୍ୟ ବ୍ୟବହାର କରିଅଛୁ ।

ଆମ୍ଭେମାନେ ପାଶ୍ଚାତ୍ୟର ଶିଷ୍ୟ । ଅନେକ ପାଠକ ଏ କଥାରେ ଶିହରି ଉଠିବେ । ପାଶ୍ଚାତ୍ୟମାନେ କଅଣ କହିଥାନ୍ତି ନା, ଯେ କୌଣସି ଅବସ୍ଥାରେ ମିଥ୍ୟା କୁହାଯାଇ-ପାରେ ନାହିଁ । ତା ନ ହେଲେ ହେଲା; ସେ କଥା ଏଠାରେ ଉଠୁ ନାହିଁ । ଏହା କେହି କହିବେ ନାହିଁ ଯେ, ପାଶ୍ଚାତ୍ୟମାନଙ୍କ ମତରେ ଜଣେ ମିଥ୍ୟାବାଦୀ ଜଣେ ହତ୍ୟାକାରୀ ଅପେକ୍ଷା ଗୁରୁତର ପାପୀ, ଅଥବା ମିଥ୍ୟାବାଦୀ ଓ ହତ୍ୟାକାରୀ ତୁଲ୍ୟ ପାପୀ । ସେମାନେ ଯେ ତାହା କହନ୍ତି ନାହିଁ , ସମସ୍ତ ଇଉରୋପୀୟ ଦଣ୍ଡ-ବିଧି--ଶାସ୍ତ୍ର ତାହାର ପ୍ରମାଣ । ଯଦି ତାହା ହେଲା, ତେବେ ବର୍ତ୍ତମାନ କୃଷ୍ଣଙ୍କ ସଙ୍ଗେ ପାଶ୍ଚାତ୍ୟର ଶିଷ୍ୟଗଣର ମତଭେଦର ଏଠାରେ କୌଣସି ଲକ୍ଷଣ ଦେଖାଯାଏ ନାହିଁ । ଏଠାରେ କେବଳ ପାପର ତାରତମ୍ୟର କଥା ହେଉଅଛି । କୌଣସି ଅଧର୍ମର କୌଣସି ସମୟରେ କରିବାର ନୁହେ । ନରହତ୍ୟା ବି କରିବାର ନୁହେଁ, ମିଥ୍ୟା କଥା ବି କହିବାର ନୁହେ । କୃଷ୍ଣଙ୍କ କଥାର ଫଳ ଏହି ଯେ, ଯଦି ଏପରି ଅବସ୍ଥା କାହାରି ଘଟେ ଯେ, ତାକୁ ମିଥ୍ୟା କହିବାକୁ ହେବ, ନ ହୁଏ ନରହତ୍ୟା କରିବାକୁ ହେବ, ତେବେ ସେ ବରଂ ମିଥ୍ୟା କହିବ, ତଥାପି ନରହତ୍ୟା କରିବ ନାହିଁ । ଯଦି ଏରୂପ ଧର୍ମାତ୍ମା ପଣ୍ଡିତ କେହି ଥାନ୍ତି ଯେ କହନ୍ତି ଯେ, ବରଂ ନରହତ୍ୟା କରିବ, ତଥାପି ମିଥ୍ୟା କହିବ ନାହିଁ, ତେବେ ଆମର ଉତ୍ତର ଏହି ଯେ ତାଙ୍କ ଧର୍ମ ତାଙ୍କ ଠାରେଇ ଥାଉ, ଏ ନାରକୀ ଧର୍ମ ଯେପରି ଭାରତବର୍ଷରେ କଦାପି ପ୍ରଚାର ହୁଏ ।

କୃଷ୍ଣଙ୍କ ଏହି ମତ । ଯଦି ଅର୍ଜୁନ ଏହାର ଅନୁବର୍ତ୍ତୀ ହେବେ ତେବେ ଭ୍ରାତୃବଧ—ପାପରୁ ତାଙ୍କୁ ବିରତ କରିବା ପକ୍ଷେ ଏହାହିଁ ଯଥେଷ୍ଟ । କିନ୍ତୁ ଅର୍ଜୁନ କହିପାରନ୍ତି, "ଏ ତ ଗଲା ତୁମ ମତ

କିନ୍ତୁ ଲୌକିକ ଓ ପ୍ରଚଳିତ ଧର୍ମ କଣ ? ତୁମର ମତ ମଧ୍ୟ ଯଥାର୍ଥ ହୋଇପାରେ, କିନ୍ତୁ ଏହା ଯଦି ପ୍ରଚଳିତ ଧର୍ମାନୁମୋଦିତ ନ ହୁଏ, ତେବେ ମୁଁ ଜନସମାଜରେ ସତ୍ୟଚ୍ୟୁତ ପାପାତ୍ମା ବୋଲି କଳଙ୍କିତ ହେବି।” ଏଣୁ କୃଷ୍ଣ ନିଜର ମତ ପ୍ରକାଶ କରି ପ୍ରଚଳିତ ଧର୍ମ ଯାହା, ତାହା ବୁଝାଇଛନ୍ତି। ସେ କହିଲେ, “ହେ ଧନଞ୍ଜୟ ! କୁରୁପିତାମହ, ଭୀଷ୍ମ, ଧର୍ମରାଜ ଯୁଧିଷ୍ଠିର, ବିଦୁର ଓ ଯଶସ୍ୱିନୀ କୁନ୍ତୀ ଯେଉଁ ଧର୍ମରହସ୍ୟ କହିଛନ୍ତି, ମୁଁ ଯଥାର୍ଥରୂପେ ତାହାହିଁ କୀର୍ତ୍ତନ କରୁଅଛି, ଶ୍ରବଣ କର। ଏହା କହି କହିଲେ, “ସାଧୁ ବ୍ୟକ୍ତି ସତ୍ୟ କଥା କହିଥାନ୍ତି, ସତ୍ୟ ଅପେକ୍ଷା ଆଉ କିଛିହିଁ ଶ୍ରେଷ୍ଠ ନାହିଁ। * ସତ୍ୟତତ୍ତ୍ୱ ଅତି ଦୁର୍ଜ୍ଞେୟ। ସତ୍ୟବାକ୍ୟ ପ୍ରୟୋଗ କରିବାହିଁ ଅବଶ୍ୟ କର୍ତ୍ତବ୍ୟ। ଏ ଗଲା ସ୍ଥୂଳମତ। ତାରପରେ ବର୍ଣ୍ଣିତ ତତ୍ତ୍ୱ କହୁଛନ୍ତି।

“କିନ୍ତୁ ଯେଉଁ ସ୍ଥାନରେ ମିଥ୍ୟା ସତ୍ୟ ସ୍ୱରୂପ, ଓ ସତ୍ୟ ମିଥ୍ୟା ସ୍ୱରୂପ ହୁଏ, ସେ ସ୍ଥଳରେ ମିଥ୍ୟାବାକ୍ୟ ପ୍ରୟୋଗ କରିବା ଦୋଷାବହ ନୁହେ।”

କିନ୍ତୁ କେତେବେଳେ କଣ ଏପରି ହୁଏ ? ଏ କଥାଟା ପୁଣି ଉଠିବ, ସମୟରେ ଆମେ ଏହାର ଯଥାସାଧ୍ୟ ବିଚାର କରିବା। ତାରପରେ କୃଷ୍ଣ କହୁଛନ୍ତି।

---

* “ନ ସତ୍ୟାଦ୍‌ବିଦ୍ୟତେ ପରମ୍।” ଇତିପୂର୍ବେ କୃଷ୍ଣ କହିଛନ୍ତି। “ପ୍ରାଣିନାମ୍‌ବଧସ୍ତାତ ସର୍ବ୍ବଜ୍ୟାୟାନ୍ମତୋ ମମ।” ଏଇ ଦୁଇଟି କଥା ପରସ୍ପର ବିରୋଧୀ। ତାହାର କାରଣ ଗୋଟିଏ କୃଷ୍ଣଙ୍କ ମତ, ଆଉ ଗୋଟିଏ ଭୀଷ୍ମାଦି କଥିତ ପ୍ରଚଳିତ ଧର୍ମମାତ୍ର।

"ବିବାହ, ରତିକ୍ରୀଡ଼ା, ପ୍ରାଣବିୟୋଗ, ଓ ସର୍ବସ୍ୱାପହରଣ-କାଳରେ ଏବଂ ବ୍ରାହ୍ମଣଙ୍କ ନିମିତ୍ତ, ମିଥ୍ୟା ପ୍ରୟୋଗ କଲେ ମଧ୍ୟ ପାତକ ହୁଏ ନାହିଁ ।"

ଏଠାରେ ଘୋର ବିବାଦର ସ୍ଥଳ ; କିନ୍ତୁ ବିବାଦ ବର୍ତ୍ତମାନ ଥାଉ, କାଳୀପ୍ରସନ୍ନ ସିଂହଙ୍କ ଅନୁବାଦରେ ଉଲ୍ଲିଖିତରୂପ ଅଛି ତାହା ଗୋଟିଏ ଶ୍ଳୋକର ମାତ୍ର ଅନୁବାଦ, କିନ୍ତୁ ମୂଳରେ ସେ ବିଷୟରେ ଦୁଇଟି ଶ୍ଳୋକଅଛି । ଦୁଇଟିର ଉଦ୍ଧୃତ କରୁଅଛି ।

୧/ ପ୍ରାଣାତ୍ୟୟେ ବିବାହେ ଚ ବକ୍ତବ୍ୟମନୃତଂ ଭବେତ୍ ।
ସର୍ବସ୍ୱସ୍ୟାପହାରେ ଚ ବକ୍ତବ୍ୟମନୃତଂ ଭବେତ୍ ॥

୨/ ବିବାହକାଳେ ରତିସମ୍ପ୍ରୟୋଗେ
ପ୍ରାଣାତ୍ୟୟେ ସର୍ବଧନାପହାରେ ।
ବିପ୍ରସ୍ୟ ଚାର୍ଥେ ହ୍ୟନୃତଂ ବଦେତ
ପଞ୍ଚାନୃତା ନ୍ୟାହୁରପାତକାନି ॥

ଏହି ଦୁଇଟି ଶ୍ଳୋକର ଏକା ଅର୍ଥ ; କେବଳ ପ୍ରଥମ ଶ୍ଳୋକଟିରେ ବ୍ରାହ୍ମଣର କଥା ନାହିଁ, ଏହି ପ୍ରଭେଦ । ବର୍ତ୍ତମାନ ପାଠକଙ୍କ ମନରେ ଏଇ ପ୍ରଶ୍ନ ଆପେ ଉଦୟ ହେବ ଯେ, ଏକା ଅର୍ଥବାଚକ ଦୁଇଟି ଶ୍ଳୋକର ପ୍ରୟୋଜନ କଣ ?

ଏହାର ଉତ୍ତର ଏହି ଯେ, ଏହିଦୁଇଟିଯାକ ଅନ୍ୟତ୍ରରୁ ଉଦ୍ଧୃତ—quotation—କୃଷ୍ଣଙ୍କ ନିଜୋକ୍ତି ନୁହେ । ସଂସ୍କୃତ ଗ୍ରନ୍ଥରେ ଏପରି ସ୍ଥାନେ ସ୍ଥାନେ ଦେଖାଯାଏ ଯେ, ଅନ୍ୟତ୍ରରୁ ବଚନ ଉଦ୍ଧୃତ ହୁଏ, କିନ୍ତୁ ପୁସ୍ତକର କୁହାଯାଏ ନାହିଁ ଯେ, ଏହି

ବଚନ ତ୍ରନ୍ଥାନ୍ତରର । ଏଇ ମହାଭାରତଖଣ୍ଡ ଗୀତା ପର୍ବାଧ୍ୟାୟରେଇ ତାହାର ଉଦାହରଣ ଗ୍ରନ୍ଥାନ୍ତରେ ଦେଇଅଛୁ ।

ମୁଁ ଅନୁମାନ ଉପରେ ନିର୍ଭର କରି କହୁନାହିଁ ଯେ, ଏ ବଚନ ଦୁଇଟି ଅନ୍ୟତ୍ରରୁ ଧୃତ । ଦ୍ୱିତୀୟ ଶ୍ଳୋକଟି ଯଥା—"ବିବାହକାଳେ ରତିସମ୍ପ୍ରୟୋଗେ" ଇତ୍ୟାଦି—ଏହା ବଶିଷ୍ଠଙ୍କ ବଚନ । ପାଠକ ବଶିଷ୍ଠଙ୍କ ୧୬ ଅଧ୍ୟାୟରେ, ୩୫ ଶ୍ଳୋକରେ ତାହା ଦେଖିବେ ; ଏହା ମହାଭାରତର ଆଦିପର୍ବରେ, ୩୪୧୨ ଶ୍ଳୋକରେ, ଯେଉଁଠାରେ କୃଷ୍ଣଙ୍କ ସଙ୍ଗେ କୌଣସି ସମ୍ପର୍କ ନାହିଁ ସେଠାରେ ବି କିଞ୍ଚିତ ପରିବର୍ତ୍ତିତ ହୋଇ ଉଦ୍ଧୃତ ହୋଇଅଛି, ଯଥା—

> ନ ନର୍ମ୍ମଯୁକ୍ତଂ ବଚନଂ ହିନସ୍ତି
>
> ନ ସ୍ତ୍ରୀଷୁ ରାଜନ୍ ନ ବିବାହକାଳେ ।
>
> ପ୍ରାଣାତ୍ୟୟେ ସର୍ବଧନାପହାରେ
>
> ପଞ୍ଚାନୃତାନ୍ୟାହୁରପାତକାନି ॥

ସୁଇଟି ଭିନ୍ନ ପାଞ୍ଚଟିର କଥା ଏଠାରେ ନାହିଁ, ତଥାପି ବଶିଷ୍ଠଙ୍କର ସେଇ "ପଞ୍ଚାନୃତାନ୍ୟାହୁରପାତକାନି" ଅଛି । ପ୍ରଚଳିତ-ବଚନ ସବୁ ମୁହେଁ ମୁହେଁ ଏପରି ବିକୃତ ହୋଇ ଯାଏ ।

ପ୍ରଥମ ଶ୍ଳୋକଟିର ପୂର୍ବଗାମୀ ଶ୍ଳୋକ ସହିତ ଲେଖିଅଛୁ ;

(କ) ଭବେତ୍ ସତ୍ୟମବକ୍ତବ୍ୟଂ ବକ୍ତବ୍ୟମନୃତଂ ଭବେତ୍ ।
(ଖ) ଯତ୍ରାନୃତଂ ଭବେତ୍ ସତ୍ୟଂ ସତ୍ୟଞ୍ଚାପ୍ୟନୃତଂ ଭବେତ୍ ॥
(ଗ) ପ୍ରାଣାତ୍ୟୟେ ବିବାହେ ଚ ବକ୍ତବ୍ୟମନୃତଂ ଭବେତ୍ ॥
(ଘ) ସର୍ବସ୍ୱସ୍ୟାପହାରେ ଚ ବକ୍ତବ୍ୟମନୃତଂ ଭବେତ୍ ।

ବର୍ତ୍ତମାନ ମହାଭାରତର ସଭାପର୍ବରୁ ଗୋଟିଏ (୧୩-୮୪) ଶ୍ଳୋକ ଉଦ୍ଧୃତ କରୁଅଛି—କୃଷ୍ଣଙ୍କ ସହିତ ସେଠାରେ କୌଣସି ସମ୍ବନ୍ଧ ନାହିଁ ।

(ଚ) ପ୍ରାଣାନ୍ତିକେ ବିବାହେ ଚ ବକ୍ତବ୍ୟମନୃତଂ ଭବେତ୍ ।
(ଛ) ଅନୃତେନ ଭବେତ୍ ସତ୍ୟ ସତ୍ୟେନୈବାନୃତଂ ଭବେତ୍ ॥

ପାଠକ ଦେଖିବେ, (ଗ) ଓ (ଚ) ଆଉ (ଖ) ଓ (ଛ) ଏକା ଶବ୍ଦଗୁଡ଼ିକ ମଧ୍ୟ ପ୍ରାୟ ଏକ । ଅତଏବ ଏହା ମଧ୍ୟ ପ୍ରଚଳିତ ପୁରାତନ ବଚନ ।

ଏହା କୃଷ୍ଣଙ୍କ ମତ ନୁହେଁ । ନିଜର ଅନୁମୋଦିତ ମତ ବୋଲି ସୁଦ୍ଧା କହୁନାହାନ୍ତି । ଶ୍ରେଷ୍ଠାଦିଙ୍କ ନିକଟରୁ ଯାହା ଶୁଣୁଥିଲେ, ତାହାହିଁ କହୁଛନ୍ତି ; ନିଜର ଅନୁମୋଦିତ ହେଉ ବା ନ ହେଉ, କାହିଁକି ସେ ଏହା ଅର୍ଜୁନଙ୍କୁ ଶୁଣାଇବାକୁ ବାଧ୍ୟ, ତାହା କହୁଅଛି । ସୁତରାଂ କୃଷ୍ଣଚରିତ୍ରରେ ଏ ମତରେ ଯାଥାର୍ଥ୍ୟ ଅଯଥାର୍ଥ୍ୟ ବିଚାରର କୌଣସି ପ୍ରୟୋଜନ ହେଉନାହିଁ ।

କିନ୍ତୁ ଅସଲ କଥା ବାକି ଅଛି । ଅସଲ କଥା, କୃଷ୍ଣଙ୍କ ନିଜର ମତ ବି ଏହି ଯେ, ଅବସ୍ଥା— ବିଶେଷରେ ସତ୍ୟ ମିଥ୍ୟା ହୁଏ ଏବଂ ମିଥ୍ୟା ସତ୍ୟ ହୁଏ ; ଏବଂ ସେସବୁ ସ୍ଥାନରେ ମିଥ୍ୟା ପ୍ରୟୋକ୍ତବ୍ୟ । ଏ କଥା ସେ ପରେ କହୁଛନ୍ତି ।

ପ୍ରଥମେ ବିବେଚ୍ୟ, କୌଣସି କାଳେ କଣ ମିଥ୍ୟା ସତ୍ୟ ହୁଏ, ଏବଂ ସତ୍ୟ ମିଥ୍ୟା ହୁଏ ? ଏହାର ସ୍ଥୂଳ ଉତ୍ତର ଏହି ଯେ, ଯାହା ଧର୍ମ୍ମାନୁମୋଦିତ, ତାହା ସତ୍ୟ, ଆଉ ଯାହା ଅଧର୍ମ୍ମର ଅନୁମୋଦିତ, ତାହା ମିଥ୍ୟା । ଧର୍ମ୍ମାନୁମୋଦିତ ମିଥ୍ୟା ନାହିଁ ; ଏବଂ ଅଧର୍ମ୍ମାନୁମୋଦିତ ସତ୍ୟ ନାହିଁ । ତେବେ ସତ୍ୟାସତ୍ୟ ମୀମାଂସା ଧର୍ମ୍ମାଧର୍ମ୍ମ ମୀମାଂସାଉପରେ ନିର୍ଭର କରୁଅଛି ।

ଅତଏବ ଶ୍ରୀକୃଷ୍ଣ ପ୍ରଥମେ ଧର୍ମତତ୍ତ୍ୱ ନିର୍ଣ୍ଣୟ କରୁଛନ୍ତି । କଥାଗୁଡ଼ିକରେ ଗୀତାରେ ଉଦାର ମତର ଗମ୍ଭୀର ଶବ୍ଦ ଶୁଣାଯାଏ । କହୁଛନ୍ତି ।

"ଧର୍ମ ଓ ଅଧର୍ମ ତତ୍ତ୍ୱ ନିର୍ଣ୍ଣୟର ବିଶେଷ ଲକ୍ଷଣ ନିର୍ଦ୍ଦିଷ୍ଟ ଅଛି । କୌଣସି କୌଣସି ସ୍ଥଳରେ ଅନୁମାନ ଦ୍ୱାରା ମଧ୍ୟ ନିତାନ୍ତ ଦୁର୍ବୋଧ ଧର୍ମର ନିର୍ଣ୍ଣୟ କରିବାକୁ ହୁଏ ।"

ଏହା ଅପେକ୍ଷା ଉଦାର ଇଉରୋପରେ ମଧ୍ୟ କିଛି ନାହିଁ । ତାପରେ,

"ଅନେକେ ଶ୍ରୁତିକୁ ଧର୍ମର ପ୍ରମାଣ ବୋଲି ନିର୍ଦ୍ଦେଶ କରନ୍ତି । ସେଥିରେ ମୁଁ ଦୋଷାରୋପ କରୁନାହିଁ; କିନ୍ତୁ ଶ୍ରୁତିରେ ସମସ୍ତ ଧର୍ମତତ୍ତ୍ୱ ନିର୍ଦ୍ଦିଷ୍ଟ ନାହିଁ; ଏଣୁ ଅନେକ ସ୍ଥଳରେ ଅନୁମାନ ଦ୍ୱାରା ଧର୍ମ ନିର୍ଦ୍ଦିଷ୍ଟ କରିବାକୁ ହୁଏ ।"

ଏହି କଥାଟା ନେଇ ଆଜି ବି ସଭ୍ୟ ଜଗତରେ ବଡ଼ ଗୋଳମାଳ । ଯେଉଁମାନେ କୁହନ୍ତି ଯେ, ଦୈବୋକ୍ତି, ବେଦହିଁ ହେଉ, ବାଇବେଲ ହେଉ, କୋରାଣ ହେଉ,—ସେଥିରେ ଯାହା ଅଛି, ତାହା ଧର୍ମ—ତାହାର ବାହାରେ ଧର୍ମ କିଛିହିଁ ନାହିଁ—ସେମାନେ ଆଜି ମଧ୍ୟ ବଡ଼ ବଳବାନ୍ । ତାଙ୍କ ମତରେ ଧର୍ମ ଦୈବୋକ୍ତିନିର୍ଦ୍ଦିଷ୍ଟ, ଅନୁମାନର ବିଷୟ ନୁହେ । ଏ କଥା ମନୁଷ୍ୟଜାତିର ଉନ୍ନତି ପଥରେ ବଡ଼ ଦୁରୁତ୍ତୀର୍ଯ୍ୟ କଣ୍ଟକ । ଆମ ଦେଶ କଥା ଦୂରରେ ଥାଉ, ଇଉରୋପରେ ବି ଆଜି ମଧ୍ୟ ଏହି ମତ ଉନ୍ନତିର ପଥ ରୋଧ କରୁଅଛି । ଆମଦେଶର ଅବନତିର ଏହା ଏଗୋଟି ପ୍ରଧାନ କାରଣ । ଆଜି ବି ଭାରତବର୍ଷର ଧର୍ମଜ୍ଞାନ ବେଦ ଓ ମନୁଯାଜ୍ଞବଲ୍‌କ୍ୟାଦି ସ୍ମୃତିଦ୍ୱାରା

ନାହିଁ—ଅନ୍ୟମାନଙ୍କର ପଥ ନୁହେଁ । ଅତି ଦୂରଦର୍ଶୀ ମନୁଷ୍ୟାଦର୍ଶ ଶ୍ରୀକୃଷ୍ଣ ଲୋକଙ୍କଠାରେ ଏହି ବିଷମ ବ୍ୟାଘାତ, ସେହି ଅତି ପ୍ରାଚୀନ କାଳରେ ମଧ୍ୟ ଦେଖିଥିଲେ । ବର୍ତ୍ତମାନ ହିନ୍ଦୁସମାଜର ଧର୍ମଜ୍ଞାନ ଦେଖି ବିଷର୍ଣ୍ଣ ମନରେ ସେହି ଶ୍ରୀକୃଷ୍ଣଙ୍କର ଶରଣ ନେବାକୁ ଇଚ୍ଛାକରେ ।

କିନ୍ତୁ ଅନୁମାନର ଗୋଟିଏ ମୂଳ ସୂତ୍ର । ଯେପରି ଅଗ୍ନି ଭିନ୍ନ ଧୂମୋତ୍ପତ୍ତି ହୁଏ ନାହିଁ, ଏହି ମୂଳ ଉପରେ ଅନୁମାନ କରିଥାଉଁ ଯେ, ସମ୍ମୁଖସ୍ଥ ଧୂମବାନ ପର୍ବତ ବହ୍ନିମାନ ବି ଅଟେ, ସେହିପରି ଏପରି ଗୋଟାଏ ଲକ୍ଷଣ ସୂତ୍ର ଯେ, ତାହା ଦେଖିଲେ ବୁଝି ପାରିବା ଯେ, ଏହି କର୍ମଟା ଧର୍ମ । ଶ୍ରୀକୃଷ୍ଣ ତାହାର ଲକ୍ଷଣ ନିର୍ଦ୍ଦିଷ୍ଟ କରୁଛନ୍ତି ।

"ଧର୍ମ ପ୍ରାଣିଗଣଙ୍କୁ ଧାରଣ କରେ ବୋଲି ଧର୍ମ ନାମରେ ନିର୍ଦ୍ଦିଷ୍ଟ ହୋଇଅଛି । ଅତଏବ **ଯାଦ୍ୱାରା ପ୍ରାଣିଗଣର ରକ୍ଷା ହୁଏ, ତାହା ଧର୍ମ ।**"

ଏହା ହେଲା କୃଷ୍ଣକୃତ ଧର୍ମର ଲକ୍ଷଣ ନିର୍ଦ୍ଦେଶ । କଥାଟାରେ ବର୍ତ୍ତମାନ Herfert Spencer, Bentham, Mill ଇତି ସମ୍ପ୍ରଦାୟର ଶିଷ୍ୟମାନେ କୌଣସି ପ୍ରକାର ଅମତ କରିବେ ନାହିଁ ଜାଣେ । କିନ୍ତୁ ଅନେକେ କହିବେ, ଏ ଯେ ଘୋରତର ହିତବାଦ —ବଡ଼ Utilitarian ରକମର ଧର୍ମ । ବଡ଼ Utilitarian ର କର୍ମ ଠିକ୍, କିନ୍ତୁ ମୁଁ ଗ୍ରନ୍ଥାନ୍ତରେ ବୁଝାଇଅଛି ଯେ, ଧର୍ମତତ୍ତ୍ୱ ହିତବାଦରୁ ବିଯୁକ୍ତ କରି ଯାଏ ନାହିଁ ;—ଜଗଦୀଶ୍ୱରଙ୍କଠାରେ ସାର୍ବଭୌତିକତ୍ୱ ଏବଂ ସର୍ବମଙ୍ଗଳତା ରୁହି ଏହା ଅନୁମିତ କରିବାକୁ ହୁଏ । ସଙ୍କୀର୍ଣ୍ଣ ଖ୍ରୀଷ୍ଟଧର୍ମ ସଙ୍ଗେ ହିତବାଦର

ବିରୋଧି ହୋଇପାରେ, କିନ୍ତୁ ଯେଉଁ ହିନ୍ଦୁଧର୍ମ କୁହେ ଯେ, ଈଶ୍ୱର ସର୍ବ ଭୂତରେ ଅଛନ୍ତି, ହିତବାଦ ସେଇ ଧର୍ମର ପ୍ରକୃତ ଅଂଶ । ଏହି କୃଷ୍ଣବାକ୍ୟହିଁ ଯଥାର୍ଥ ଧର୍ମ ଲକ୍ଷଣ ।

ପୂର୍ବେ ବୁଝାଇଅଛୁ, ଯାହା ଧର୍ମାନୁମୋଦିତ, ତାହା ସତ୍ୟ; ଯାହା ଧର୍ମାନୁମୋଦିତ ନୁହେଁ,—ତାହାଇ ମିଥ୍ୟା ଅତଏବ ଯାହା ସର୍ବ ଲୋକହିତକର, ତାହା ସତ୍ୟ, ଯାହା ଲୋକର ଅହିତକର, ତାହାଇ ମିଥ୍ୟା । ଏଇ ଅର୍ଥରେ ଯାହା ଲୌକିକ ସତ୍ୟ, ତାହା ଧର୍ମତଃ ମିଥ୍ୟା ହୋଇ ପାରେ ; ଏବଂ ଯାହା ଲୌକିକ ମିଥ୍ୟା, ତାହା ଧର୍ମତଃ ସତ୍ୟ ହୋଇ ପାରେ । ଏପରି ସ୍ଥଳରେ ମିଥ୍ୟା ମଧ୍ୟ ସତ୍ୟସ୍ୱରୂପ ଏବଂ ସତ୍ୟ ମଧ୍ୟ ମିଥ୍ୟା ସ୍ୱରୂପ ହୁଏ ।

ଉଦାହରଣ ସ୍ୱରୂପ କୃଷ୍ଣ କହୁଛନ୍ତି, ଯଦି କେହି କାହାକୁ ବିନାଶ କରିବା ମାନସରେ କାହାରି ନିକଟରୁ ତାହାର ଅନୁସନ୍ଧାନ କରେ, ତାହାହେଲେ **ଜିଜ୍ଞାସିତ ବ୍ୟକ୍ତିର ମୌନାବଲମ୍ବନ କରିବା ଉଚିତ** । ଯଦି ଏକାନ୍ତତଃ କଥା କହିବାକୁ ହୁଏ, ତେବେ ସେ ସ୍ଥଳରେ ମିଥ୍ୟା ବାକ୍ୟ ପ୍ରୟୋଗ କରିବା କର୍ତ୍ତବ୍ୟ । ସେପରି ସ୍ଥଳରେ ମିଥ୍ୟା ସତ୍ୟ-ସ୍ୱରୂପ ହୁଏ ।

ଏଇ ପ୍ରସ୍ତାବ ଉତ୍ଥାପିତ କରିବା ପୂର୍ବରୁ, କୃଷ୍ଣ କୌଶି-କର ଉପାଖ୍ୟାନ ଅର୍ଜୁନଙ୍କୁ ଶୁଣାଇ ଭୂମିକା କରିଥିଲେ । ସେ ଉପାଖ୍ୟାନ ଏଇ ।

"କୌଶିକ ନାମକ ଜଣେ ବହୁଶ୍ରୁତ ତପସ୍ୱି ଶ୍ରେଷ୍ଠ, ବ୍ରାହ୍ମଣ ଗ୍ରାମର ଅନତିଦୂରରେ ନଦୀମାନଙ୍କର ସଙ୍ଗମସ୍ଥାନରେ ବାସ

କରୁଥିଲେ । ସେଇ ବ୍ରାହ୍ମଣ ସର୍ବଦା ସତ୍ୟବାକ୍ୟ ପ୍ରୟୋଗରୂପ ବ୍ରତ ଅବଲମ୍ବନ ପୂର୍ବକ ତତ୍କାଳରେ ସତ୍ୟବାଦୀ ବୋଲି ବିଖ୍ୟାତ ହୋଇ ଥିଲେ । ଏକଦା କେତେଗୁଡ଼ିଏ ଲୋକ ଦସ୍ୟୁ ଭୟରେ ଭୀତ ହୋଇ ବନ ମଧ୍ୟରେ ପ୍ରବେଶ କଲେ; ଦସ୍ୟୁମାନେ ବି କ୍ରୋଧାନ୍ଧରେ ସଯତ୍ନସହକାରେ ସେଇ ବନରେ ସେମାନଙ୍କୁ ଅନ୍ୱେଷଣ କରି ସେଇ ସତ୍ୟବାଦୀ କୌଶିକଙ୍କ ନିକଟରେ ସମୁପସ୍ଥିତ ହୋଇ କହିଲେ, ହେ ଭଗବାନ୍ ! କେତେଗୁଡ଼ିଏ ଲୋକ ଏଇ ଦିଗରେ ଆଗମନ କରିଥିଲେ, ସେମାନେ କେଉଁ ପଥରେ ଗମନ କରିଛନ୍ତି, ଯଦି ଆପଣ ତାହା ଅବଗତ ଥାନ୍ତି, ତେବେ ସତ୍ୟ କରି କହନ୍ତୁ । କୌଶିକ ଦସ୍ୟୁଗଣକର୍ତ୍ତୃକ ଏହିରୂପେ ଜିଜ୍ଞାସିତ ହୋଇ, ସତ୍ୟପାଳାନାର୍ଥ ସେମାନଙ୍କୁ କହିଲେ, କେତେଗୁଡ଼ିଏ ଲୋକ ଏଇ ବୃକ୍ଷ ଲତା ଓ ବୃକ୍ଷପରିବେଷ୍ଟିତ ଅଟବୀମଧ୍ୟରେ ଗମନ କରିଛନ୍ତି । ତେଣୁ ସେଇ କ୍ରୂରକର୍ମା ଦସ୍ୟୁମାନେ ସେମାନଙ୍କର ଅନୁସନ୍ଧାନ ପାଇ ସେମାନଙ୍କୁ ଆକ୍ରମଣ ଓ ବିନାଶ କଲେ । ସୂକ୍ଷ୍ମଧର୍ମାନଭିଜ୍ଞ ସତ୍ୟବାଦୀ କୌଶିକ ମଧ୍ୟ ସେଇ ସତ୍ୟବାକ୍ୟଜନିତ ପାପରେ ଲିପ୍ତ ହୋଇ ଘୋର ନରକରେ ନିପତିତ ହେଲେ । ।”

ଏ ସ୍ଥଳରେ ଏହା ଅଭିପ୍ରେତ ଯେ, କୌଶିକ ଅବଗତ ହୋଇଥିଲେ ଯେ, ଏମାନେ ଦସ୍ୟୁ; ପଳାୟିତ ବ୍ୟକ୍ତିମାନଙ୍କ ଅନିଷ୍ଟ ଏମାନଙ୍କର ଉଦ୍ଦେଶ୍ୟ—ନ ହେଲେ ତାଙ୍କର କୌଣସି ପାପ ନାହିଁ । ଯଦି ତାହା ଅବଗତ ଥିଲେ, ତେବେ ସେ କୃଷ୍ଣଙ୍କ ମତରେ ସତ୍ୟକଥନ ଦ୍ୱାରା ପାପାଚରଣ କରିଥିଲେ । ଏ ବିଷୟରେ ପ୍ରାଚ୍ୟ ଓ ପ୍ରତୀଚ୍ୟରେ ଘୋରତର ମତଭେଦ । ଆମେ ପ୍ରତୀଚ୍ୟ ଶିକ୍ଷକମାନଙ୍କ ନିକଟରୁ ଶିଖିଅଛୁଁ ଯେ, ସତ୍ୟ

ନିତ୍ୟ, କେବେହେଁ ମିଥ୍ୟା ହୁଏ ନାହିଁ, ଏବଂ କୌଣସି ସମୟରେ ମିଥ୍ୟା ପ୍ରଯୋଜ୍ୟ ନୁହେ । ସୁତରାଂ କୃଷ୍ଣଙ୍କ ମତ କ୍ଷିପ୍ତ ସମ୍ପ୍ରଦାୟ ନିକଟରେ ନିନ୍ଦିତ ହୋଇ ପାରେ । ଯେଉଁମାନେ ଏହାର ନିନ୍ଦା କରିବେ ( ମୁଁ ଏହାର ସମର୍ଥନ କରୁନାହିଁ ), ସେମାନଙ୍କୁ ପଚ୍ଚରେ, କୌଶିକଙ୍କର ଏ ଅବସ୍ଥାରେ କଣ କରିବା ଉଚିତ ଥିଲା ? ସହଜ ଉତ୍ତର, ମୌନାବଲମ୍ବନ କରିବା ଉଚିତ ଥିଲା । ସେ କଥା ତ କୃଷ୍ଣ ନିଜେ କହିଛନ୍ତି—ସେ ବିଷୟରେ ମତଭେଦ ନାହିଁ । ଯଦି ଦସ୍ୟୁମାନେ ମୌନ ରହିବାକୁ ନ ଦିଅନ୍ତି ? ପୀଡ଼ନାଦି ଦ୍ୱାରା ଉତ୍ତର ଗ୍ରହଣ କରନ୍ତି ? କେହି କେହି କହିପାରନ୍ତି ଯେ, ପୀଡ଼ା ଓ ମୃତ୍ୟୁ ସ୍ୱୀକାର କରି ସୁଦ୍ଧା କୌଶିକଙ୍କର ମୌନରକ୍ଷା କରିବା ଉଚିତ ଥିଲା । ତାହା ମଧ୍ୟ ଆମେ ସମ୍ପୂର୍ଣ୍ଣ ଅନୁମୋଦନ କରୁ । ତେବେ ଜିଜ୍ଞାସ୍ୟ ଏହି ଯେ ଇଦୃଶ ଧର୍ମର ପୃଥିବୀରେ ସାଧାରଣତଃ ଚଳିବାର ସମ୍ଭାବନା ଅଛି କି ନାହିଁ ? ଏଥିରେ ସାଂଖ୍ୟପ୍ରବଚନକାରଙ୍କର ଗୋଟିଏ ସୂତ୍ର ଆମର ମନେ ପଡ଼ିଲା । ମହର୍ଷି କପିଳ କହିଛନ୍ତି, "ନାଶକ୍ୟୋପଦେଶବିଧିରୁପଦିଷ୍ଟେଽପ୍ୟନୁପଦେଶଃ ।" (୧ମ ଅଧ୍ୟାୟ, ୯ ସୂତ୍ର) ଏରୂପ ଧର୍ମପ୍ରଚାରର ଚେଷ୍ଟା ନିଷ୍ଫଳ ବୋଲି ବୋଧ ହୁଏ । ଯଦି ସଫଳ ହୁଏ, ମାନବଜାତିର ପରମ ସୌଭାଗ୍ୟ ।

କଥାଟା ଏଠାରେ ଠିକ୍ ତାହା ନୁହେ । କଥାଟା ଏହି ଯେ, ଯଦି ଏକାନ୍ତରେ କଥା କହିବାକୁ ହୁଏ, 'ଅବଶ୍ୟଂ କୂଜିତବ୍ୟେ ବା ଶଙ୍କେରନ୍ ବାପ୍ୟକୂଜତଃ ।'

ତାହା ହେଲେ କଣ କରିବ ? ସତ୍ୟ କହି ଜ୍ଞାନତଃ ନରହତ୍ୟାର ସହାୟତା କରିବ ? ଯେ ଏବମ୍ବିଧ ଧର୍ମତତ୍ତ୍ୱ ବୁଝନ୍ତି, ତାଙ୍କର ଧର୍ମବାଦ ଯଥାର୍ଥ ହେଉ, ଅଯଥାର୍ଥ ହେଉ,

ହେଉ, ନିତାନ୍ତ ନୃଶଂସ ନିଶ୍ଚୟ ।

ପ୍ରତିବାଦକାରୀ କହିପାରନ୍ତି ଯେ, କୃଷ୍ଣୋକ୍ତ ଏହି ମତର ଗୋଟିଏ ଫଳ ଏପରି ହୁଏ ଯେ, ହତ୍ୟାକାରୀର ଜୀବନ ରକ୍ଷାର୍ଥ ମିଥ୍ୟାଶପଥ କରିବା ଧର୍ମ, ଯେ ଏରୂପ ଆପତ୍ତି କରିବ, ସେ ଏହି ସତ୍ୟତତ୍ତ୍ୱ କିଛିହିଁ ବୁଝି ନାହାନ୍ତି । ହତ୍ୟାକାରୀର ଦଣ୍ଡ ମନୁଷ୍ୟଜୀବନରକ୍ଷାର୍ଥ ନିତାନ୍ତ ପ୍ରୟୋଜନୀୟ, ନ ହେଲେ ଯେ ଯାହାକୁ ମାରିବ, ମାରି ପଳାଇବ । ଅତଏବ ହତ୍ୟାକାରୀର ଦଣ୍ଡ ଧର୍ମ; ଏବଂ ତାହାର ରକ୍ଷାର୍ଥ ଯେ ମିଥ୍ୟା କୁହେ, ସେ ଅଧର୍ମ କରେ ।

କୃଷ୍ଣୋକ୍ତ ଏହି ସତ୍ୟତତ୍ତ୍ୱ ନିର୍ଦ୍ଦୋଷ ଏବଂ ମନୁଷ୍ୟ ସାଧାରଣଙ୍କର ଅବଲମ୍ବନୀୟ କି ନା, ତାହା ମୁଁ ବର୍ତ୍ତମାନ କହିବାକୁ ପ୍ରସ୍ତୁତ ନୁହେଁ । ତେବେ କୃଷ୍ଣଚରିତ ବୁଝାଇବା ପାଇଁ ତାହା ପରିସ୍ଫୁଟ କରିବାକୁ ମୁଁ ବାଧ୍ୟ, କିନ୍ତୁ ଏହା ମଧ୍ୟ ମୁଁ କହିବାକୁ ବାଧ୍ୟ ଯେ, ପାଶ୍ଚାତ୍ୟମାନେ ଯେଉଁ କାରଣରୁ କହନ୍ତି ଯେ, ସତ୍ୟ ସବୁ ସମୟରେ ସତ୍ୟ, କୌଣସି ଅବସ୍ଥାରେ ପରିହାର୍ଯ୍ୟ ନୁହେଁ, ତାହା ମୂଳରେ ଗୋଟିଏ ଗୁରୁତର କଥା ଅଛି । କଥାଟା ଏହି ଯେ, ଏହା ଯଦି ଧର୍ମ—ସତ୍ୟ ଯେଉଁଠାରେ ମନୁଷ୍ୟର ହିତକାରୀ ସେଇଠାରେ ଧର୍ମ, ଆଉ ଯେଉଁଠାରେ ମନୁଷ୍ୟର ହିତକାରୀ ନୁହେଁ, ସେଠାରେ ଅଧର୍ମ, ଏହା ଯଦି ଧର୍ମ ହୁଏ, ତାହା ହେଲେ ମନୁଷ୍ୟଜୀବନ ଓ ମନୁଷ୍ୟ ସମାଜ ଅତିଶୟ ବିଶୃଙ୍ଖଳ ହୋଇ ପଡ଼େ—ଯେଉଁ ଲୋକହିତ ଭୂମିର ଉଦ୍ଦେଶ୍ୟ, ତାହା ବୁଡ଼ିଯାଏ । ଅବସ୍ଥା ବିଶେଷ ଉପସ୍ଥିତ ହେଲେ, ସତ୍ୟ ଅବଲମ୍ବନୀୟ ବା ମିଥ୍ୟା ଅବଲମ୍ବନୀୟ, ଏକଥାର ମୀମାଂସା

କିଏ କରିବ ? ସେ ମୀମାଂସା କରିବ । ଯେ ସେ ମୀମାଂସା କରିବାକୁ ବସିଲେ, ମୀମାଂସା କେବେହେଁ ଧର୍ମାନୁମୋଦିତ ହୋଇ ପାରେ ନାହିଁ । ଶିକ୍ଷା, ଜ୍ଞାନ, ବୁଦ୍ଧି ଅନେକଙ୍କରଇ ଅତି ସାମାନ୍ୟ କାହାର ହେଲେ ସମ୍ପୂର୍ଣ୍ଣ ନୁହେ । ବସ୍ତୁରଶକ୍ତି ଅଧିକାଂଶଙ୍କର ହିଁ ଆଦୌ ଅଳ୍ପ, ତା ଉପରେ ଇନ୍ଦ୍ରିୟର ବେଗ, ସ୍ନେହ ମମ-ତାର ବେଗ, ଦର୍ପ, ଲୋଭ, ମୋହ ଇତ୍ୟାଦିର ପ୍ରକୋପ । ସତ୍ୟ ନିତ୍ୟପାଳନୀୟ ଏରୂପ ଧର୍ମ ବ୍ୟବସ୍ଥା ନ ଥିଲେ ମନୁଷ୍ୟଜାତି ସତ୍ୟଶୂନ୍ୟ ହେବାର ସମ୍ଭାବନା ।

ପ୍ରାଚୀନ ହିନ୍ଦୁ ଋଷିମାନେ ଯେ ତାହା ବୁଝି ନ ଥିଲେ, ତାହା ନୁହେ । ଭଲ କରି ବୁଝି ସେମାନେ ବିଶେଷ କରି ବିଧାନ କରି ଦେଇଛନ୍ତି । କେଉଁ କେଉଁ ସମୟରେ ମିଥ୍ୟା କୁହା ଯାଇ ପାରେ । 'ପ୍ରାଣାତ୍ୟୟେ' ଇତ୍ୟାଦି ସେହି ବିଧି ଅନେକ ଉଦ୍ଧୃତ କରିଅଛୁଁ । ମନୁ, ଗୌତମ ପ୍ରଭୃତି ଋଷିମାନଙ୍କ ମତ ମଧ୍ୟ ସେହି ପ୍ରକାର । ସେମାନେ ଯେଉଁ କେତୋଟି ବିଶେଷ ବିଧି କହିଛନ୍ତି, ତାହା ଧର୍ମାନୁମତ କି ନୁହେଁ, ତାହାର ବିଚାର ମୋର ପ୍ରୟୋଜନ ନୁହେଁ । କୃଷ୍ଣକଥିତ ସତ୍ୟତତ୍ତ୍ୱ ପରିସ୍ଫୁଟ କରିବା ହିଁ ମୋର ଉଦ୍ଦେଶ୍ୟ । କୃଷ୍ଣ ମଧ୍ୟ ଆଧୁନିକ ଇଉରୋପୀୟମାନଙ୍କ ପରି ବୁଝିଥିଲେ ଯେ, ବିଶେଷ ବିଧି ବ୍ୟତୀତ, ଏହି ସାଧାରଣ ବିଧି କାର୍ଯ୍ୟରେ ପରିଣତ କରିବା, ସାଧାରଣ ଲୋକ ପକ୍ଷରେ ଅତି ଦୁରୂହ । କିନ୍ତୁ ତାଙ୍କ ବିବେଚନାରେ ପ୍ରାଣାତ୍ୟୟେ ପ୍ରଭୃତି କେତୋଟି ବିଶେଷ ଅବସ୍ଥା ନିର୍ଦ୍ଦେଶ କରି ଦେଲେ ଲୋକଙ୍କୁ ଧର୍ମାନୁମତ ସତ୍ୟାଚରଣ ବୁଝାଇ ହୁଏ ନାହିଁ । ସେ ତତ୍ପରିବର୍ତ୍ତେ କି ନିମିତ୍ତ, ଏବଂ କିରୂପ ଅବସ୍ଥାରେ ସାଧାରଣ ବିଧି ଉଲ୍ଲଙ୍ଘନ କରିବା ଉଚିତ, ତାହାହିଁ କହିଛନ୍ତି । ଆମ୍ଭେମାନେ ତାହା ସ୍ପଷ୍ଟୀକୃତ କରୁଅଛୁଁ ।

ଦାନ, ତପ, ଶୌଚ, ଆର୍ଜ୍ଜବ, ସତ୍ୟ ପ୍ରଭୃତି ଅନେକ ଗୁଣଏ ତାଙ୍କୁ ଧର୍ମ ବୋଲି ଯାଏ । ଏହାର ସବୁ ଗୁଡ଼ିକ ସାଧାରଣତଃ ଧର୍ମ, ପୁଣି ସବୁ ଗୁଡିକର ଅବସ୍ଥାବିଶେଷରେ ଅଧର୍ମ । ଅନୁପଯୁକ୍ତ ପ୍ରୟୋଗ ବା ବ୍ୟବହାର ଅଧର୍ମ । ଦାନ ସମ୍ବନ୍ଧରେ ଉଦାହରଣ ପ୍ରୟୋଗ ପୂର୍ବକ କହୁଛନ୍ତି, "ସମର୍ଥ ହେଲେ ମଧ୍ୟ ବୈରୀଙ୍କୁ ଧନ ଦାନ କରିବା କଦାପି କର୍ତ୍ତବ୍ୟ ନୁହେଁ । ପାପାତ୍ମାମାନଙ୍କୁ ଧନ ଦାନ କଲେ, ଅଧର୍ମାଚରଣ ନିବନ୍ଧନ ଦାତାଙ୍କୁ ମଧ୍ୟ ନିତାନ୍ତ ନିପୀଡ଼ିତ ହେବାକୁ ହୁଏ ।" ସତ୍ୟ ସମ୍ବନ୍ଧରେ ମଧ୍ୟ ସେହିରୂପ । ଶ୍ରୀକୃଷ୍ଣ ତାହାର ଯେଉଁ ଦୁଇଟି ଉଦାହରଣ ଦେଇଛନ୍ତି, ତାହାର ଗୋଟିଏ ଉପରେ ଉଦ୍ଧୃତ କରିଅଛୁ, ଆଉଟି ଏହି ; "ଯେଉଁସ୍ଥଳରେ ମିଥ୍ୟା ଶପଥ ଦ୍ୱାରା ଚୋରସଂସର୍ଗରୁ ମୁକ୍ତ ଲାଭ ହୁଏ, ସେ ସ୍ଥଳରେ ମିଥ୍ୟାବାକ୍ୟ ପ୍ରୟୋଗ କରିବା ଶ୍ରେୟଃ । ସେ ମିଥ୍ୟା ନିଶ୍ଚୟ ସତ୍ୟ ସ୍ୱରୂପ ହୁଏ ।"

ଏହା ଛଡ଼ା ପ୍ରଚଳିତ ଧର୍ମଶାସ୍ତ୍ରରୁ ପ୍ରାଣାତ୍ୟୟେ ବିବାହେ ଇତ୍ୟାଦି କଥା ପୁନରୁକ୍ତ ହୋଇଅଛୁ । କୃଷ୍ଣକଥିତ ସତ୍ୟତତ୍ତ୍ୱ ଏହିରୂପ । ଏହାର ସ୍ଥୂଳ ତାତ୍ପର୍ଯ୍ୟ ଏହିପରି ବୁଝାଗଲା ଯେ,

୧ । ଯାହା ଧର୍ମାନୁମୋଦିତ ତାହା ସତ୍ୟ, ଯାହା ଧର୍ମବିରୁଦ୍ଧ, ତାହା ଅସତ୍ୟ ।

୨ । ଯହିଁରେ ଲୋକର ହିତ, ତାହା ଧର୍ମ ।

୩ । ଅତଏବ ଯହିଁରେ ଲୋକର ହିତ, ତାହା ସତ୍ୟ । ଯାହା ତଦ୍‌ବିରୁଦ୍ଧ, ତାହା ଅସତ୍ୟ ।

୪ । ଏହିରୂପ ସତ୍ୟ ସର୍ବଦା ସର୍ବସ୍ଥାନରେ ପ୍ରଯୋକ୍ତବ୍ୟ ।

କୃଷ୍ଣଭକ୍ତ କହି ପାରନ୍ତି ଯେ, ଏହା ଅପେକ୍ଷା ଉତ୍କୃଷ୍ଟ ଧର୍ମ୍ମତତ୍ତ୍ୱ କେଉଁଠାରେ କଥିତ ହୋଇଅଛି, ଏହା ଯଦି ଦେଖାଇ ପାର ତେବେ ଆମେ କୃଷ୍ଣଙ୍କ ମତ ପରିତ୍ୟାଗ କରିବାକୁ ପ୍ରସ୍ତୁତ ଅଛୁଁ । ଯଦି ତାହା ନ ପାର, ତେବେ ଏହାକୁ ଆପଣ ମନୁଷ୍ୟାତୀତ ବାକ୍ୟବୋଲି ସ୍ୱୀକାର କର ।

ଉପସଂହାରରେ ମୋର ବକ୍ତବ୍ୟ ଏହି ଯେ, "ଯଦ୍ଦ୍ୱାରା ଲୋକରକ୍ଷା ବା ଲୋକହିତ ସାଧିତ ହୁଏ, ତାହା ଧର୍ମ୍ମ । ଆମେ ଯଦି ଭକ୍ତିସହକାରେ ଏହି କୃଷ୍ଣୋକ୍ତ ହିନ୍ଦୁଧର୍ମ୍ମର ମୂଳସୂତ୍ରରୂପେ ଗ୍ରହଣ କରିପାରୁ, ତାହାହେଲେ ହିନ୍ଦୁଧର୍ମ୍ମର ଓ ହିନ୍ଦୁଜାତିର ଉନ୍ନତିର ଆଉ ବିଳମ୍ବ ଥାଏନାହିଁ । ତାହା ହେଲେ, ଯେଉଁ ଉପଧର୍ମ୍ମର ଭସ୍ମରାଶିମଧ୍ୟରେ, ପବିତ୍ର ଏବଂ ଜଗତରେ ଅତୁଳ୍ୟ ହିନ୍ଦୁଧର୍ମ୍ମ ପ୍ରୋଥିତ ହୋଇଅଛି, ତାହା ଅନତିକାଳରେ କେଉଁ ଆଡ଼େ ଉଡ଼ିଯିବ । ତାହା ହେଲେ ଶାସ୍ତ୍ରର ଦୋହାଇ ଦେଇ କ୍ରିୟା, ଅନର୍ଥକ ସାମର୍ଥ୍ୟବ୍ୟୟ, ଓ ନିଷ୍ଫଳ କାଳାତିପାତ, ଦେଶରୁ ଦୂରୀଭୂତ ହୋଇ ସତ୍କର୍ମ୍ମ ଓ ସଦନୁଷ୍ଠାନରେ ହିନ୍ଦୁ-ସମାଜ ପ୍ରଫୁଲ୍ଲିତ ହୋଇ ଉଠିବ । ତାହାହେଲେ ଭଣ୍ଡାମି, ଜାତିମତ୍ସର, ପରସ୍ପରର ବିଦ୍ୱେଷ ଓ ଅନିଷ୍ଟଚେଷ୍ଟା ଆଉ ରହିବନାହିଁ । ଆମ୍ଭେମାନେ ମହାତ୍ମା କୃଷ୍ଣକଥିତ ନୀତି ପରିତ୍ୟାଗ କରି, ଶୂଳପାଣି ଓ ରଘୁନନ୍ଦନଙ୍କ ପଦାନତ--ଲୋକହିତ ପରିତ୍ୟାଗ କରି ତିଥିତତ୍ତ୍ୱ ମଳମାସତତ୍ତ୍ୱ ପ୍ରଭୃତି ଅଠେଇଶ ତତ୍ତ୍ୱର କଚର-ମଚରରେ ମନ୍ତ୍ରମୁଗ୍ଧ । ଆମର ଜାତୀୟ ଉନ୍ନତି ହେବ ତ କେଉଁ ଜାତି ଅଧଃପତନରେ ଯିବ ? ଯଦି ବର୍ତ୍ତମାନ ସୁଦ୍ଧା ଆମର ଭାଗ୍ୟୋଦୟ ହୁଏ, ତେବେ ଆମେ ସମସ୍ତ ହିନ୍ଦୁ ଏକତ୍ରିତ ହୋଇ, ନମୋ ଭଗବତେ ବାସୁଦେବାୟ କହି କୃଷ୍ଣ ପାଦ-

ମନ୍ଦିରେ ପ୍ରଣାମ କରି, ତଦୁପଦେଷ୍ଟ ଏଇ ଲୋକହିତାତ୍ମକ ଧର୍ମ ଗ୍ରହଣ କରିବା ! (ବେନ୍ଥାମଙ୍କ କଥା ଇଂଲଣ୍ଡ ଶୁଣିଲା— କୃଷ୍ଣଙ୍କ କଥା ଭାରତବର୍ଷ ଶୁଣିବ ନାହିଁ ?) ତାହା ହେଲେ ନିଶ୍ଚିତ ଆମେ ଜାତୀୟ ଉନ୍ନତି ସାଧିତ କରି ପାରିବା ।

## ସପ୍ତମ ପରିଚ୍ଛେଦ

## କର୍ଣ୍ଣବଧ

ଅର୍ଜ୍ଜୁନ କୃଷ୍ଣଙ୍କ କଥା ବୁଝିଲେ, କିନ୍ତୁ ଅର୍ଜ୍ଜୁନ କ୍ଷତ୍ରିୟ, ପ୍ରତିଜ୍ଞା ରକ୍ଷା କରିବା ନିମିତ୍ତ ବ୍ୟାକୁଳ । ଅତଏବ ଯେପରି ଦୁଇଦିଗ ରକ୍ଷା ହୁଏ, କୃଷ୍ଣଙ୍କୁ ତାହାର ଉପାୟ ଅବଧାରଣ କରିବାକୁ କହିଲେ ।

କୃଷ୍ଣ କହିଲେ, ଅପମାନ ମାନନୀୟ ବ୍ୟକ୍ତିର ମୃତ୍ୟୁସ୍ୱରୂପ । ତୁମେ ଯୁଧିଷ୍ଠିରଙ୍କୁ ଅପମାନସୂଚକ ଗୋଟାଏ କଥା କୁହ, ତାହା ହେଲେ ତାଙ୍କୁ ବଧ କରିବା ତୁଲ୍ୟ ହେବ । ଅର୍ଜ୍ଜୁନ ତେଣୁ ଯୁଧିଷ୍ଠିରଙ୍କୁ ଅପମାନସୂଚକ ବାକ୍ୟରେ ଭର୍ତ୍ସିତ କଲେ । କିନ୍ତୁ କୃଷ୍ଣଙ୍କୁ ପୁଣି ଏକ ବିପଦରେ ପକାଇଲେ । କହିଲେ, ମୁଁ ଜ୍ୟେଷ୍ଠ ଭ୍ରାତାଙ୍କୁ ଅପମାନିତ କରି ଗୁରୁତର ପାପ କରିଅଛି, ଅତଏବ ଆତ୍ମହତ୍ୟା କରିବି । ଏହା କହି ପୁଣି ଅସି ନିଷ୍କୋଷିତ କଲେ । କୃଷ୍ଣ ତାଙ୍କର ମଧ୍ୟ ମୃତ୍ୟୁର ସହଜ ବ୍ୟବସ୍ଥା କରି ଦେଲେ । କହିଲେ, ଆତ୍ମଶ୍ଲାଘା ସଜ୍ଜନର ମୃତ୍ୟୁସ୍ୱରୂପ । କଥାଟା କିଛିମାତ୍ର ଅନ୍ୟାୟ ନୁହେଁ । ଅର୍ଜ୍ଜୁନ ତେଣୁ ଅନେକ ଆତ୍ମଶ୍ଲାଘା କଲେ । ସେତେବେଳେ ସବୁ ଗୋଳମାଳ ମେଣ୍ଟିଗଲା ।

କୃଷ୍ଣ ଅର୍ଜ୍ଜୁନଙ୍କ ସାରଥି, କିନ୍ତୁ ଯେପରି ଅର୍ଜ୍ଜୁନଙ୍କ ଅଶ୍ୱର ଯନ୍ତା, ସେହିପରି ବର୍ତ୍ତମାନ ସ୍ୱୟଂ ଅର୍ଜ୍ଜୁନଙ୍କର ବ

ନିଯୁକ୍ତ । କେତେବେଳେ ବା ଅର୍ଜ୍ଜୁନଙ୍କ ଆଜ୍ଞାରେ କୃଷ୍ଣ ରଥ ଚଳାନ୍ତି । କେତେବେଳେ ବା କୃଷ୍ଣଙ୍କ ଆଜ୍ଞାରେ ଅର୍ଜ୍ଜୁନ ଚାଲନ୍ତି । ବର୍ତ୍ତମାନ କୃଷ୍ଣ ଅର୍ଜ୍ଜୁନଙ୍କୁ କର୍ଣ୍ଣବଧରେ ନିଯୁକ୍ତକଲେ ।

ଏହି କର୍ଣ୍ଣବଧ ମହାଭାରତର ଗୋଟିଏ ପ୍ରଧାନ ଘଟଣା । ବହୁକାଳରୁ ଏହାର ସୂତ୍ରପାତ ହୋଇ ଆସୁଅଛି । କର୍ଣ୍ଣହିଁ ଅର୍ଜ୍ଜୁନଙ୍କ ପ୍ରତିଯୋଦ୍ଧା । ଭୀମାର୍ଜ୍ଜୁନ ନକୁଳ ସହଦେବ ଚାରି-ଜଣଯାକ ଯୁଧିଷ୍ଠିରଙ୍କ ନିମିତ୍ତ ଦିଗ୍‌ବିଜୟ କରିଥିଲେ, କର୍ଣ୍ଣ ଏକାକୀ ଦୁର୍ଯ୍ୟୋଧନଙ୍କ ନିମିତ୍ତ ଦିଗ୍‌ବିଜୟ କରିଥିଲେ । ଅର୍ଜ୍ଜୁନ ଦ୍ରୋଣଙ୍କ ଶିଷ୍ୟ, କର୍ଣ୍ଣ ଦ୍ରୋଣଗୁରୁ ପରଶୁରାମଙ୍କ ଶିଷ୍ୟ । ଅର୍ଜ୍ଜୁନଙ୍କ ଯେପରି ଗାଣ୍ଡିବ ଧନୁ ଥିଲା, କର୍ଣ୍ଣଙ୍କ ତଦପେକ୍ଷା ଉତ୍କୃଷ୍ଟ ବିଜୟ ଧନୁ ଥିଲା । ଅର୍ଜ୍ଜୁନଙ୍କର କୃଷ୍ଣ ସାରଥି, ମହାବୀର ଶଲ୍ୟ କର୍ଣ୍ଣଙ୍କ ସାରଥି, ଉଭୟେ ଅନେକ ଦିବ୍ୟାସ୍ତ୍ରରେ ଶିକ୍ଷିତ । ଉଭୟେ ପରସ୍ପରଙ୍କ ବଧ ନିମିତ୍ତ ବହୁଦିନରୁ ପ୍ରତିଜ୍ଞାତ । ଅର୍ଜ୍ଜୁନ ଭୀଷ୍ମ ଦ୍ରୋଣ ବଧରେ କିଞ୍ଚିତ୍‌ମାତ୍ର ଯତ୍ନଶୀଳ ନ ଥିଲେ, କର୍ଣ୍ଣବଧରେ ତାଙ୍କର ଦୃଢ଼ଯତ୍ନ । କୁନ୍ତୀ ଯେତେବେଳେ କର୍ଣ୍ଣଙ୍କୁ କର୍ଣ୍ଣଙ୍କ ଜନ୍ମବୃତ୍ତାନ୍ତ ଅବଗତ କରାଇ, ତାଙ୍କନିକଟରୁ ଆଉ ପାଞ୍ଚୋଟି ପୁତ୍ରର ପ୍ରାଣଭିକ୍ଷା ମାଗିଲେ, ସେତେବେଳେ କର୍ଣ୍ଣ ଯୁଧିଷ୍ଠିର ଭୀମ ନକୁଳ ସହଦେବଙ୍କ ପ୍ରାଣ ଭିକ୍ଷା ମାତାଙ୍କୁ ଦେଇଥିଲେ, କିନ୍ତୁ କୌଣସି ମତେ ଅର୍ଜ୍ଜୁନଙ୍କ ପ୍ରାଣଭିକ୍ଷା ଦେଲେନାହିଁ । ତାଙ୍କୁ ବଧକରିବେ, ନ ହେଲେ ତାଙ୍କ ହସ୍ତରେ ନିହତ ହେବେ, ଏହା ନିଶ୍ଚିତ ଜଣାଇଲେ । ସେଇ ମହାଯୁଦ୍ଧକୁ ଅଦ୍ୟ କୃଷ୍ଣ ଅର୍ଜ୍ଜୁନଙ୍କୁ ନେଇଗଲେ । ଏଥି ନିମିତ୍ତ କୃଷ୍ଣ ଅର୍ଜ୍ଜୁନଙ୍କୁ ଯୁଧିଷ୍ଠିରଙ୍କ ଶିବିରକୁ ନେଇ ଆସି ଥିଲେ । ଭୀମ ଅର୍ଜ୍ଜୁନଙ୍କୁ ଯୁଧିଷ୍ଠିରଙ୍କ ସନ୍ଧାନରେ ଯିବାକୁ କହିଥିଲେ ସତ୍ୟ, କିନ୍ତୁ ରଣ

କୈାଷ ନ କରି ଅର୍ଜୁନଙ୍କର ଆସିବାକୁ ଇଚ୍ଛା ନ ଥିଲା । କୃଷ୍ଣ ଜିଦ୍ କରି ତାଙ୍କୁ ନେଇ ଆସିଥିଲେ । ଏହାଙ୍କ ତାଙ୍କର ଅଭିପ୍ରେତ ଯେ, କର୍ଣ୍ଣ କ୍ରମାଗତ ଯୁଦ୍ଧ କରି ପରିଶ୍ରାନ୍ତ ହୁଅନ୍ତୁ, ଅର୍ଜୁନ ସେହି ସମୟରେ ବିଶ୍ରାମ ଲାଭ କରି ପୁନଃ ସ୍ଫୂର୍ତ୍ତି ହୁଅନ୍ତୁ । ବର୍ତ୍ତମାନ ଯୁଦ୍ଧକୁ ନେଇଯିବା ସମୟରେ ଅର୍ଜୁନଙ୍କର ଆତ୍ମର ଉତ୍ତେଜନାବୃଦ୍ଧି ନିମିତ୍ତ ଅର୍ଜୁନଙ୍କ ବୀରତ୍ୱର ପ୍ରଶଂସା କଲେ, ଏବଂ ତାଙ୍କର ପୂର୍ବକୃତ ଅତି ଦୁର୍ଦ୍ଧର୍ଷ କାର୍ଯ୍ୟସବୁ ସ୍ମରଣ କରାଇ ଦେଲେ । ଦ୍ରୌପଦୀଙ୍କ ଅପମାନ, ଅଭିମନ୍ୟୁଙ୍କର ଅନ୍ୟାୟ ଯୁଦ୍ଧରେ ହତ୍ୟା ପ୍ରଭୃତି କର୍ଣ୍ଣକୃତ ପାଣ୍ଡବପୀଡ଼ନ ବୃତ୍ତାନ୍ତ ସବୁ ସ୍ମରଣ କରାଇ ଦେଲେ । ଏହି ବକ୍ତୃତା ମଧ୍ୟରୁ କୌଣସି ଅଂଶ ଉଦ୍ଧୃତ କରିବାର ପ୍ରୟୋଜନ ନାହିଁ । କେବଳ ଏତିକି ବକ୍ତବ୍ୟ, କୃଷ୍ଣ କହୁଛନ୍ତି, "ପୂର୍ବେ ବିଷ୍ଣୁ ଯେପରି ଦାନବଗଣଙ୍କୁ ବିନାଶ କରିଥିଲେ," "ପୂର୍ବେ ଦାନବଗଣ ବିଷ୍ଣୁ କର୍ତ୍ତୃକ ନିହତ ହୋଇଲେ" ଇତ୍ୟାଦି ବାକ୍ୟରୁ ବୁଝି ପାରୁ ଯେ, କୃଷ୍ଣ ଏପର୍ଯ୍ୟନ୍ତ ନିଜକୁ ବିଷ୍ଣୁଙ୍କ ଅବତାର ବୋଲି ପରିଚୟ ଦିଅନ୍ତି ନାହିଁ । ଦେବତ୍ୱରେ କୌଣସି ଅଧିକାର ପ୍ରକାଶ କରନ୍ତି ନାହିଁ । ଏହା ପ୍ରଥମ ସ୍ତରର ଗୋଟିଏ ଲକ୍ଷଣ । ଦ୍ୱିତୀୟ ସ୍ତରରେ ଅନ୍ୟ ଭାବ ।

ପରେ କର୍ଣ୍ଣାର୍ଜୁନଙ୍କ ଯୁଦ୍ଧ ଆରମ୍ଭ ହେଲା । ତାହାର ବର୍ଣ୍ଣନାରେ ମୋର ପ୍ରୟୋଜନ ନାହିଁ । କଥିତ ହୋଇଅଛି ଯେ, କର୍ଣ୍ଣଙ୍କ ସର୍ପବାଣରୁ କୃଷ୍ଣ ଅର୍ଜୁନଙ୍କୁ ରକ୍ଷା କରିଥିଲେ । ଅର୍ଜୁନ ତାହାର ନିବାରଣ କରି ପାରି ନାହାନ୍ତି, ଅତଏବ କୃଷ୍ଣ ପଦାଘାତରେ ଅର୍ଜୁନଙ୍କ ରଥ, ଭୂମିରେ କିଞ୍ଚିତ ବସାଇ ଦେଲେ, ଅଶ୍ୱଗଣ ଆଣ୍ଠୁ ମାଡ଼ି ପଡ଼ିଗଲେ । ଅର୍ଜୁନଙ୍କ ମସ୍ତକ ବଞ୍ଚିଗଲା ; କେବଳ କିରୀଟ କଟିଗଲା । ଅର୍ଜୁନ ନିଜେ ମସ୍ତକ ଅବନତ

କଲେ ବି ସେହି ଫଳ ହୁଅନ୍ତା । କଥାଟା ସମାଲୋଚନାର ଯୋଗ୍ୟ ନୁହେ । ତେବେ କୃଷ୍ଣଙ୍କ ସାରଥ୍ୟର ପ୍ରଶଂସା ମହାଭାରତରେ ପୁନଃ ପୁନଃ ଦେଖାଯାଏ ।

ଯୁଦ୍ଧର ଶେଷ ଭାଗରେ କର୍ଣ୍ଣଙ୍କ ରଥଚକ୍ର ମାଟିରେ ବସିଗଲା । କର୍ଣ୍ଣ ତାହା ଉଠାଇବା ପାଇଁ ମାଟିରେ ଓହ୍ଲାଇଲେ । ଯେତେବେଳ ପର୍ଯ୍ୟନ୍ତ ରଥଚକ୍ର ଉଦ୍ଧାର ନ କରନ୍ତି, ସେତେବେଳ ପର୍ଯ୍ୟନ୍ତ ଅର୍ଜ୍ଜୁନଙ୍କ ନିକଟରେ ସେ କ୍ଷମା ପ୍ରାର୍ଥନା କଲେ । ଦେଖା ଯାଉଅଛି ଅର୍ଜ୍ଜୁନ ବି କ୍ଷମା କରିଥିଲେ, କାରଣ, କର୍ଣ୍ଣ ତାହାପରେ ରଥରେ ଉଠି ପୂର୍ବବତ୍ ଯୁଦ୍ଧ କରିବାକୁ ଲାଗିଲେ, କିନ୍ତୁ କର୍ଣ୍ଣଙ୍କ ଦୁର୍ଭାଗ୍ୟ ଯେ, କ୍ଷମା ପ୍ରାର୍ଥନା କାଳରେ ସେ ଅର୍ଜ୍ଜୁନଙ୍କୁ ଏପରି କଥା କହିଥିଲେ ଯେ, ଧର୍ମତଃ ସେ ସେହି ସମୟ ପାଇଁ କର୍ଣ୍ଣଙ୍କୁ କ୍ଷମା କରିବାରେ ବାଧ୍ୟ ; କୃଷ୍ଣ ଅଧର୍ମର ଶାସ୍ତା । ସେ ସେତେବେଳେ କର୍ଣ୍ଣଙ୍କୁ କହିଲେ ।

"ହେ ସୂତପୁତ୍ର ! ତୁମେ ଭାଗ୍ୟକ୍ରମେ ବର୍ତ୍ତମାନ ଧର୍ମ ସ୍ମରଣ କରୁଅଛ । ନୀଚାଶୟମାନେ ଦୁଃଖରେ ନିମଗ୍ନ ହୋଇ ପ୍ରାୟଶଃ ଦୈବକୁ ନିନ୍ଦା କରନ୍ତି; ଆପଣମାନଙ୍କର ଦୁଷ୍କର୍ମ ପ୍ରତି କଛୁରେହେଁ ଦୃଷ୍ଟିପାତ କରନ୍ତି ନାହିଁ । ଦେଖ, ଦୁର୍ଯ୍ୟୋଧନ, ଦୁଃଶାସନ, ଓ ଶକୁନି ତୁମର ମତାନୁସାରେ ଏକବସ୍ତ୍ରା ଦ୍ରୌପଦୀଙ୍କୁ ଯେ ସଭାକୁ ଆନୟନ କରିଥିଲେ, ସେତେବେଳେ ତୁମର ଧର୍ମ କେଉଁଠି ଥିଲା ? ସେତେବେଳେ ଦୁଷ୍ଟ ଶକୁନି ଦ୍ୟୂତଜ୍ଞସନ୍ଧପରତନ୍ତ୍ର ହୋଇ ତୁମର ଅନୁମୋଦନ କ୍ରମେ ଅକ୍ଷକ୍ରୀଡ଼ାରେ ନିତାନ୍ତ ଅନଭିଜ୍ଞ ରାଜା ଯୁଧିଷ୍ଠିରଙ୍କୁ ପରାଜୟ କରିଥିଲା, ସେତେବେଳେ ତୁମର ଧର୍ମ କେଉଁଠି ଥିଲା ? ସେତେବେଳେ ରାଜା ଦୁର୍ଯ୍ୟୋଧନ ତୁମର ମତାନୁଯାୟୀ ଭୀମଙ୍କୁ ବିଷାନ୍ନ ଭୋଜନ କରାଇ

ଥିଲା, ସେତେବେଳେ ତୁମର ଧର୍ମ କେଉଁଠି ଥିଲା ? ଯେତେବେଳେ ତୁମେ ବାରଣାବନ୍ତ ନଗରରେ ଜତୁଗୃହମଧ୍ୟରେ ପ୍ରସୁପ୍ତ ପାଣ୍ଡବମାନଙ୍କୁ ଦଗ୍ଧ କରିବା ନିମିତ୍ତ ଅଗ୍ନି ପ୍ରଦାନ କରାଇଥିଲ, ସେତେବେଳେ ତୁମର ଧର୍ମ କେଉଁଠି ଥିଲା ? ଯେତେବେଳେ ତୁମେ ସଭାମଧ୍ୟରେ ଦୁଃଶାସନର ବଶୀଭୂତା ରଜସ୍ୱଳା ଦ୍ରୌପଦୀଙ୍କୁ "ହେ କୃଷ୍ଣେ ! ପାଣ୍ଡବମାନେ ବିନଷ୍ଟ ହୋଇ ଶାଶ୍ୱତ ନରକକୁ ଗମନ କରିଅଛନ୍ତି, ବର୍ତ୍ତମାନ ତୁମେ ଅନ୍ୟ ପତିଙ୍କୁ ବରଣ କର, ଏହି କଥା କହି ଉପହାସ କରିଥିଲ ଏବଂ ଅନାର୍ଯ୍ୟ ବ୍ୟକ୍ତିମାନେ ତାଙ୍କୁ ନିରପରାଧରେ କ୍ଳେଶ ପ୍ରଦାନ କଲେ ଉପେକ୍ଷା କରିଥିଲ । ସେତେବେଳେ ତୁମର ଧର୍ମ କେଉଁଠି ଥିଲା ? ଯେତେବେଳେ ତୁମେ ରାଜ୍ୟଲୋଭରେ ଶକୁନିକୁ ଆଶ୍ରୟପୂର୍ବକ ପାଣ୍ଡବମାନଙ୍କୁ ଦ୍ୟୁତକ୍ରୀଡ଼ା କରିବା ନିମିତ୍ତ ଆହ୍ୱାନ କରିଥିଲ, ସେତେବେଳେ ତୁମର ଧର୍ମ କେଉଁଠି ଥିଲା ? ଯେତେବେଳେ ତୁମେ ମହାରଥୀଗଣ ସମବେତ ହୋଇ ବାଳକ ଅଭିମନ୍ୟୁକୁ ପରିବେଷ୍ଟନ ପୂର୍ବକ ବିନାଶ କରିଥିଲ, ସେତେବେଳେ ତୁମର ଧର୍ମ କେଉଁଠି ଥିଲା ? ହେ କର୍ଣ୍ଣ ! ଯେତେବେଳେ ତତ୍‌କାଳରେ ଅଧର୍ମାନୁଷ୍ଠାନ କରିଅଛ ସେତେବେଳେ ଆଉ ଏ ସମୟରେ ଧର୍ମ ଧର୍ମ କରି ତାଳୁ ଦେଶଶୁଷ୍କ କଲେ କଣ ହେବ ? ତୁମେ ଯେ ବର୍ତ୍ତମାନ ଧର୍ମପରାୟଣ ହେଲେ ବି ଜୀବନ ସତ୍ତ୍ୱେ ମୁକ୍ତିଲାଭ କରିବାକୁ ସମର୍ଥ ହେବ, ଏହା କଦାପି ମନେ କରନାହିଁ । ପୂର୍ବେ ନିଷଧଦେଶାଧିପତି ନଳ ଯେପରି ପୁଷ୍କର ଦ୍ୱାରା ଦ୍ୟୁତକ୍ରୀଡ଼ାରେ ପରାଜିତ ହୋଇ ପୁନରାଏ ରାଜ୍ୟଲାଭ କରିଥିଲେ, ତଦ୍ରୂପ ଧର୍ମପରାୟଣ ପାଣ୍ଡବଗଣ ମଧ୍ୟ ଭୁଜବଳରେ ଶତ୍ରୁଗଣଙ୍କୁ ବିନାଶ କରି ରାଜ୍ୟଲାଭ କରିବେ । ଧୃତରାଷ୍ଟ୍ରତନୟମାନେ ଅବଶ୍ୟ ଧର୍ମସଂରକ୍ଷିତ ପାଣ୍ଡବମାନଙ୍କ ହସ୍ତରେ ନିହତ ହେବେ ।"

କୃଷ୍ଣଙ୍କ କଥା ଶୁଣି କର୍ଣ୍ଣ ଲଜ୍ଜାରେ ମସ୍ତକ ଅବନତ କଲେ । ତାପରେ ପୁନର୍ବାର ଯୁଦ୍ଧ କରି, ଅର୍ଜ୍ଜୁନବାଣରେ ନିହତ ହେଲେ ।

## ଅଷ୍ଟମ ପରିଚ୍ଛେଦ

## ଦୁର୍ଯ୍ୟୋଧନ ବଧ

କର୍ଣ୍ଣ ମଲାପରେ, ଦୁର୍ଯ୍ୟୋଧନ ଶଲ୍ୟଙ୍କୁ ସେନାପତି କଲେ । ପୂର୍ବଦିନର ଯୁଦ୍ଧରେ ଯୁଧିଷ୍ଠିର କ୍ଷତ୍ରିୟ ହୋଇ କାପୁରୁଷତା-କଳଙ୍କ ସଂଗ୍ରହ କରିଥିଲେ । ଏ କଳଙ୍କ ଅପନୀତ କରିବା ନିତାନ୍ତ ଆବଶ୍ୟକ । ସର୍ବଦର୍ଶୀ କୃଷ୍ଣ ଆଜିକାର ପ୍ରଧାନ ଯୁଦ୍ଧରେ ତାଙ୍କୁ ନିଯୁକ୍ତ କଲେ । ସେ ମଧ୍ୟ ସାହସ କରି ଶଲ୍ୟଙ୍କ ସହିତ ଯୁଦ୍ଧ କରି ତାଙ୍କୁ ବଧ କଲେ ।

ସେହି ଦିନ ସମସ୍ତ କୌରବ ସୈନ୍ୟ ପାଣ୍ଡବଗଣ କର୍ତ୍ତୃକ ନିହତ ହେଲେ । ଦୁଇ ଜଣ ବ୍ରାହ୍ମଣ, କୃପ ଓ ଅଶ୍ୱତ୍ଥାମା, ଯଦୁବଂଶୀୟ କୃତବର୍ମ୍ମା ଏବଂ ସ୍ୱୟଂ ଦୁର୍ଯ୍ୟୋଧନ ଏହି ଚାରିଜଣ ମାତ୍ର ଜୀବିତ ରହିଲେ । ଦୁର୍ଯ୍ୟୋଧନ ପଳାଇ ଯାଇ ଦ୍ୱୈପାୟନ ହ୍ରଦରେ ବୁଡ଼ି ରହିଲେ । ପାଣ୍ଡବମାନେ ଖୋଜି ସେଠାରେ ତାଙ୍କୁ ଧରିଲେ । କିନ୍ତୁ ବିନା ଯୁଦ୍ଧରେ ତାଙ୍କୁ ମାରିଲେ ନାହିଁ ।

ଯୁଧିଷ୍ଠିରଙ୍କର ଚିରକାଳ ସ୍ଥୂଳ ବୁଦ୍ଧି, ସେହି ସ୍ଥୂଳବୁଦ୍ଧି ନିମିତ୍ତ ପାଣ୍ଡବମାନଙ୍କର ଏତେ କଷ୍ଟ, ସେ ଏହି ସମୟରେ ସେହି ଅପୂର୍ବ ବୁଦ୍ଧିର ବିକାଶ କଲେ । ସେ ଦୁର୍ଯ୍ୟୋଧନଙ୍କୁ କହିଲେ, "ତୁମେ ଅଭୀଷ୍ଟ ଆୟୁଧ ଗ୍ରହଣ ପୂର୍ବକ ଆମ୍ଭମାନଙ୍କ ମଧ୍ୟରୁ ଯେ କୌଣସି ବୀର ସହିତ ସମାଗତ ହୋଇ ଯୁଦ୍ଧକର ଆମ୍ଭେମାନେ ସମସ୍ତେ ରଣସ୍ଥଳରେ ଅବସ୍ଥାନପୂର୍ବକ ଯୁଦ୍ଧବ୍ୟାପାର

ନିରୀକ୍ଷଣ କରିବୁ । ମୁଁ କହୁଅଛି ଯେ, ତୁମେ ଆମ ମଧ୍ୟରୁ ଜଣଙ୍କୁ ବିନାଶ କରି ପାରିଲେ ସମୁଦାୟ ରାଜ୍ୟ ତୁମର ହେବ ।" ଦୁର୍ଯ୍ୟୋଧନ କହିଲେ, ମୁଁ ଗଦା ଯୁଦ୍ଧ କରିବି । କୃଷ୍ଣ ଜାଣନ୍ତି ଗଦା ଯୁଦ୍ଧରେ ଭୀମଙ୍କ ଛଡ଼ା କୌଣସି ପାଣ୍ଡବ ଦୁର୍ଯ୍ୟୋଧନଙ୍କ ସମକକ୍ଷ ନୁହନ୍ତି । ଦୁର୍ଯ୍ୟୋଧନ ଅନ୍ୟ କୌଣସି ପାଣ୍ଡବଙ୍କୁ ଯୁଦ୍ଧରେ ଆହ୍ୱାନ କଲେ ପାଣ୍ଡବମାନଙ୍କୁ ପୁନରାଏ ଭିକ୍ଷାବୃତ୍ତି ଅବଲମ୍ବନ କରିବାକୁ ହେବ । କେହି କିଛି କହିଲେ ନାହିଁ, ସମସ୍ତେ ବଳଦୃପ୍ତ; ଯୁଧିଷ୍ଠିରଙ୍କୁ ଭର୍ତ୍ସନାର ଭାର କୃଷ୍ଣ ଗ୍ରହଣ କଲେ । ସେଇ କାର୍ଯ୍ୟ ସେ ବିଶିଷ୍ଟ ପ୍ରକାରେ ନିର୍ବାହ କଲେ ।

ଦୁର୍ଯ୍ୟୋଧନ ବି ଅତିଶୟ ବଳଦୃପ୍ତ, ସେହି ଦର୍ପରେ ଯୁଧିଷ୍ଠିରଙ୍କର ବୁଦ୍ଧିର ଦୋଷ ସଂଶୋଧନ ହେଲା । ଦୁର୍ଯ୍ୟୋଧନ କହିଲେ, ଯାହାର ଇଚ୍ଛା ହୁଏ, ମୋ ସହିତ ଗଦାଯୁଦ୍ଧରେ ପ୍ରବୃତ୍ତ ହୁଅ ସମସ୍ତଙ୍କୁ ବଧ କରିବି । ସେତେବେଳେ ଭୀମ ଗଦା ନେଇ ଯୁଦ୍ଧରେ ଅଗ୍ରସର ହେଲେ ।

ଏଠାରେ ପୁଣି ମହାଭାରତର ସ୍ୱର ବଦଳିଲା । ଅଠରଦିନ ଯୁଦ୍ଧ ହୋଇଅଛି, ଭୀମ ଦୁର୍ଯ୍ୟୋଧନଙ୍କର ମଧ୍ୟ ସର୍ବଦା ଯୁଦ୍ଧ ହୋଇଅଛି, ଗଦା ଯୁଦ୍ଧ ବି ଅନେକ ବାର ହୋଇଅଛି, ଏବଂ ବରାବର ଦୁର୍ଯ୍ୟୋଧନହିଁ ଗଦାଯୁଦ୍ଧରେ ଭୀମଙ୍କ ନିକଟରେ ପରା-ଭବ ପ୍ରାପ୍ତ ହୋଇଅଛନ୍ତି । କିନ୍ତୁ ଆଜ କଥାଉଠିଲା ଯେ, ଭୀମ ଗଦାଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ତୁଲ୍ୟ ନୁହନ୍ତି । ଆଜି ଭୀମ ପରାଭୂତପ୍ରାୟ । ଅସଲ କଥାଟା ଭୀମଙ୍କ ସେହି ଦାରୁଣ ପ୍ରତିଜ୍ଞା । ସଭାପର୍ବରେ ଯେତେବେଳେ ଦ୍ୟୂତକ୍ରୀଡ଼ାପରେ, ଦୁର୍ଯ୍ୟୋ-ଧନ ଦ୍ରୌପଦୀଙ୍କୁ ଜିଣିନେଲା, ଏବଂ ଦୁଃଶାସନ ଏକବସ୍ତ୍ରା ରଜ-

ସୁଦ୍ଧା ଦ୍ରୌପଦୀଙ୍କୁ କେଶାକର୍ଷଣ କରି ସଭାମଧ୍ୟକୁ ଆଣି ବିବସ୍ତ୍ରା କରୁଥିଲା, ସେତେବେଳେ ଭୀମ ପ୍ରତିଜ୍ଞା କରିଥିଲେ ଯେ, ମୁଁ ଦୁଃଶାସନକୁ ବଧ କରି ତାର ଛାତି ଚିରି ରକ୍ତ ପିଇବି । ଭୀମ ମହାଶ୍ମଶାନ ତୁଲ୍ୟ ବିକଟ ରଣସ୍ଥଳରେ ଦୁଃଶାସନକୁ ନିହତ କରି ବକ୍ଷପରି ତାର ତପ୍ତ ଶୋଣିତ ପାନ କରି, ସମସ୍ତଙ୍କୁ ଡାକି କହିଥିଲେ, "ମୁଁ ଅମୃତ ପାନ କଲି ।" ଦୁର୍ଯ୍ୟୋଧନ ସେଇ "ସଭା ମଧ୍ୟରେ ହସି ହସି ଦ୍ରୌପଦୀଙ୍କ ପ୍ରତି ଦୃଷ୍ଟିପାତ କରି ବସନ ଉତ୍ତୋଳନପୂର୍ବକ ସର୍ବଲକ୍ଷଣ ସମ୍ପନ୍ନ ବଜ୍ରତୁଲ୍ୟ ଦୃଢ଼ କଦଳୀଦଣ୍ଡ ଓ କରିଶୁଣ୍ଢ ପରି ସ୍ୱୀୟ ବାମ ଉରୁ ତାଙ୍କୁ ଦେଖାଇଲେ ।" ସେତେବେଳେ ଭୀମ ପ୍ରତିଜ୍ଞା କରିଥିଲେ "ମୁଁ ମହାଯୁଦ୍ଧରେ ଗଦାଘାତରେ ଯେବେ ଉରୁ ଯଦି ଭଗ୍ନ ନ କରେ, ତେବେ ଯେପରି ମୁଁ ନରକକୁ ଯାଏ ।"

ଆଜି ସେଇ ଉରୁ ଗଦାଘାତରେ ଭାଙ୍ଗିବାକୁ ହେବ । କିନ୍ତୁ ଗୋଟାଏ ତାହାର ବିଶେଷ ପ୍ରତିବନ୍ଧକ - ଗଦାଯୁଦ୍ଧର ନିୟମ ଏହି ଯେ, ନାଭିର ଅଧଃ ଦେଶରେ ଗଦାଘାତ କରିବାର ନୁହେ—ତାହାହେଲେ ଅନ୍ୟାୟ ଯୁଦ୍ଧ କରା ହେବ । ନ୍ୟାୟ ଯୁଦ୍ଧରେ ଭୀମ ଦୁର୍ଯ୍ୟୋଧନଙ୍କୁ ମାରି ପାରିଲେ ମଧ୍ୟ, ପ୍ରତିଜ୍ଞା ରକ୍ଷା ହେବ ନାହିଁ ।

ଯେ ଜ୍ୟେଷ୍ଠତାତ ପୁତ୍ରର ହୃଦୟରୁଧିର ପାନ କରି ନୃତ୍ୟ କରିଅଛି, ସେ ରାକ୍ଷସ ନିକଟରେ ମସ୍ତକରେ ଗଦାଘାତ ଓ ଉରୁରେ ଗଦାଘାତରେ ତଫାତ୍ କଣ ? ଯେଉଁ ବୃକୋଦର ଦ୍ରୋଣବଧରେ ମିଥ୍ୟା ପ୍ରବଞ୍ଚନା ବେଳେ ପ୍ରଧାନ ଉଦ୍ୟୋଗୀ ବୋଲି ବର୍ଣ୍ଣିତ ହୋଇଛନ୍ତି, ସେ ଉରୁରେ ଗଦାଘାତ ନିମିତ୍ତ

ଅନ୍ୟର ଉପଦେଶସାପେକ୍ଷ ହୋଇ ନପାରେ । କିନ୍ତୁ ସେପରି କିଛି ହେଲ ନାହିଁ । ଭୀମ ଉରୁଭଙ୍ଗର ପ୍ରତିଜ୍ଞା ଭୁଲିଗଲେ ; କହିଅଛି, ହିଁଶପୂ ସ୍ମରଣ କବି (ଏଠାରେ ତାଙ୍କର ହାତ ଦେଖାଯାଏ) ଚରିତ୍ରର ସୁସଙ୍ଗତି ରକ୍ଷଣରେ ସମ୍ପୂର୍ଣ୍ଣ ଅମନୋଯୋଗୀ । ସେ ଏଠାରେ ଭୀମଙ୍କ ଚରିତ୍ରର କିଛିମାତ୍ର ସୁସଙ୍ଗତି ରଖିଲେ ନାହିଁ, ଅର୍ଜୁନଙ୍କର ମଧ୍ୟ ନୁହେଁ । ଭୀମ ଭୁଲିଗଲେ ଯେ, ଉରୁଭଙ୍ଗ କରିବାକୁ ହେବ ; ଆଉ ଯେଉଁ ପରମଧାର୍ମିକ ଅର୍ଜୁନ, ଦ୍ରୋଣବଧ ସମୟରେ, ତାଙ୍କ ଅସ୍ତ୍ରଗୁରୁ, ଧର୍ମର ଆଚାର୍ଯ୍ୟ, ସଖା ଏବଂ ପରମଶ୍ରଦ୍ଧାର ପାତ୍ର କୃଷ୍ଣଙ୍କ କଥାରେବି ମିଥ୍ୟା କହିବାକୁ ସ୍ୱୀକୃତ ହୋଇନାହାନ୍ତି, ସେ ବର୍ତ୍ତମାନ ସ୍ୱେଚ୍ଛାକ୍ରମେ ଅନ୍ୟାୟଯୁଦ୍ଧରେ ଭୀମଙ୍କୁ ପ୍ରବର୍ତ୍ତିତ କଲେ । କିନ୍ତୁ କଥାଟା କୃଷ୍ଣଙ୍କଠାରୁ ଉତ୍ପନ୍ନ ନ ହେଲେ, କବିଙ୍କ ଉଦ୍ଦେଶ୍ୟ ସଫଳ ହୁଏ ନାହିଁ । ଅତଏବ କଥାଟା ଏହି ପ୍ରକାରେ ଉଠିଲା—

ଅର୍ଜୁନ ଭୀମ-ଦୁର୍ଯ୍ୟୋଧନଙ୍କ ଯୁଦ୍ଧ ଦେଖି କୃଷ୍ଣଙ୍କୁ ପଚାରିଲେ ଯେ, ଏମାନଙ୍କ ମଧ୍ୟରେ ଗଦାଯୁଦ୍ଧରେ ଶ୍ରେଷ୍ଠ କିଏ ? କୃଷ୍ଣ କହିଲେ ଭୀମଙ୍କବଳ ବେଶୀ, କିନ୍ତୁ ଦୁର୍ଯ୍ୟୋଧନଙ୍କ ଗଦାଯୁଦ୍ଧରେ ଯତ୍ନ ଓ ନୈପୁଣ୍ୟ ଅଧିକ । ବିଶେଷତଃ ଯେଉଁମାନେ ପ୍ରାଣ ଭୟରେ ପଳାୟନ କରି ପୁନର୍ବାର ଯୁଦ୍ଧରେ ଶତ୍ରୁର ସମ୍ମୁଖୀନ ହୁଅନ୍ତି, ସେମାନଙ୍କୁ ଜୀବନନିରପେକ୍ଷ ଓ ଏକାଗ୍ରଚିତ୍ତ ବୋଲି ବିବେଚନା କରିବାକୁ ହେବ । ଜୀବନାଶା ନିରପେକ୍ଷ ହୋଇ ସାହସ ସହକାରେ ଯୁଦ୍ଧ କଲେ, ସଂଗ୍ରାମରେ ସେ ବୀରଙ୍କୁ କେହି ପରାଭବ କରି ପାରେ ନାହିଁ । ଅତଏବ ଯଦି ଭୀମ ଅନ୍ୟାୟ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କୁ ସଂହାର ନ କରନ୍ତି, ତେବେ ଦୁର୍ଯ୍ୟୋଧନ ଜୟୀ ହୋଇ ଯୁଧିଷ୍ଠିରଙ୍କ କଥାନୁସାରେ ପୁନର୍ବାର ରାଜ୍ୟଲାଭ କରିବେ ।

କୃଷ୍ଣଙ୍କ ଏପରି କଥା ଶୁଣି ଅର୍ଜୁନ "ସ୍ୱୀୟ ବାମଜାନୁ ଆଘାତ କରି ଭୀମଙ୍କୁ ସଙ୍କେତ କଲେ" । ତାର ପରେ ଭୀମ ଦୁର୍ଯ୍ୟୋଧନଙ୍କ ଉରୁ ଭଙ୍ଗକରି ତାଙ୍କୁ ନିପାତିତ କଲେ । ନ୍ୟାୟ ଯେପରି ଈଶ୍ୱର ପ୍ରେରିତ, ଅନ୍ୟାୟ ମଧ୍ୟ ସେହିପରି ଈଶ୍ୱର ପ୍ରେରିତ । ଏଠାରେ ଏହାହିଁ ଦ୍ୱିତୀୟ ସ୍ତରର କବିଙ୍କ ଉଦ୍ଦେଶ୍ୟ ।

ଯୁଦ୍ଧ ସମୟରେ ଦର୍ଶକ ମଧ୍ୟରେ ବଳରାମ ଉପସ୍ଥିତ ଥିଲେ । ଭୀମ ଓ ଦୁର୍ଯ୍ୟୋଧନ ଉଭୟେ ଗଦାଯୁଦ୍ଧରେ ତାଙ୍କ ଶିଷ୍ୟ । କିନ୍ତୁ ଦୁର୍ଯ୍ୟୋଧନହିଁ ପ୍ରିୟତର । ରେବତୀବଲ୍ଲଭ ସର୍ବଦା ଦୁର୍ଯ୍ୟୋଧନଙ୍କ ପକ୍ଷପାତୀ । ବର୍ତ୍ତମାନ ଦୁର୍ଯ୍ୟୋଧନଙ୍କୁ, ଭୀମ କର୍ତ୍ତୃକ ଅନ୍ୟାୟ ଯୁଦ୍ଧରେ ନିପାତିତ ଦେଖି, ଅତିଶୟ କ୍ରୁଦ୍ଧ ହୋଇ ଲଙ୍ଗଳ ଉଠାଇ ସେ ଭୀମଙ୍କ ପ୍ରତି ଧାବମାନ ହେଲେ । କହିବା ବାହୁଲ୍ୟ ଯେ ବଳରାମଙ୍କ ସ୍କନ୍ଧରେ ଲଙ୍ଗଳ ସର୍ବଦା ଥାଏ । ଏଥି ନିମିତ୍ତ ତାଙ୍କ ନାମ ହଳଧର । ତାଙ୍କର କାହିଁକି ଏ ବିଡ଼ମ୍ବନା, ଯଦି କେହି ଏକଥା ପଚାରନ୍ତି, ତେବେ ତାହାର କିଛି ଉତ୍ତର ଦେଇ ପାରିବି ନାହିଁ । ଯାହା ହେଉ କୃଷ୍ଣ ବଳରାମଙ୍କୁ ଅନୁନୟ ବିନୟ କରି କୌଣସି ପ୍ରକାରେ ଶାନ୍ତ କରିବାକୁ ଚେଷ୍ଟା କଲେ । ବଳରାମ କୃଷ୍ଣଙ୍କ କଥାରେ ସନ୍ତୁଷ୍ଟ ହେଲେ ନାହିଁ । ରାଗ କରି ସେ ସ୍ଥାନ ତ୍ୟାଗ କରି ଚାଲିଗଲେ ।

ତାରପରେ ଗୋଟାଏ ବୀଭତ୍ସ ବ୍ୟାପାର ଉପସ୍ଥିତ ହେଲା । ଭୀମ ନିପତିତ ଦୁର୍ଯ୍ୟୋଧନଙ୍କ ମସ୍ତକରେ ପଦାଘାତ କରୁଥିଲେ । ଯୁଧିଷ୍ଠିର ନିବାରଣ କରିଥିଲେ, କିନ୍ତୁ ଭୀମ ତାହା ଶୁଣି ନାହାନ୍ତି । କୃଷ୍ଣ ତାଙ୍କୁ ଏହି କଦର୍ଯ୍ୟ ଆଚରଣରେ ନିଯୁକ୍ତ ଦେଖି ତାଙ୍କୁ ନିବାରଣ ନ କରିବା ପାଇଁ ଯୁଧିଷ୍ଠିରଙ୍କୁ ତିରସ୍କାର କଲେ । ଏଣେ, ପାଣ୍ଡବ ପକ୍ଷୀୟ ବୀରମାନେ ଦୁର୍ଯ୍ୟୋଧନଙ୍କ ନିପାତ

ଦେଖି ଭୀମଙ୍କ ବହୁତର ପ୍ରଶଂସା ଓ ଦୁର୍ଯ୍ୟୋଧନଙ୍କ ପ୍ରତି କଟୂକ୍ତି କରିବାକୁ ଲାଗିଲେ । କୃଷ୍ଣ ସେଥିରେ ବିରକ୍ତ ହୋଇ କହିଲେ । "ମୃତଜନ୍ତୁ ଶତ୍ରୁ ପ୍ରତି କଟୂବାକ୍ୟ ପ୍ରୟୋଗ କରି କର୍ତ୍ତବ୍ୟ ନୁହେ" କୃଷ୍ଣଙ୍କ ଏସବୁ କଥା କୃଷ୍ଣଙ୍କ ନ୍ୟାୟ ଆଦର୍ଶ ପୁରୁଷଙ୍କ ଉଚିତ । କିନ୍ତୁ ଏହା ପରେ ଯାହା ଗ୍ରନ୍ଥମଧ୍ୟରେ ପାଉଁ, ତାହା ଅତ୍ୟନ୍ତ ଆଶ୍ଚର୍ଯ୍ୟ ବ୍ୟାପାର ।

ପ୍ରଥମ ଆଶ୍ଚର୍ଯ୍ୟବ୍ୟାପାର ଏହି ଯେ, କୃଷ୍ଣ ଅନ୍ୟଙ୍କୁ କହିଲେ, "ମୃତଜନ୍ତୁ ଶତ୍ରୁ ପ୍ରତି କଟୂବାକ୍ୟ ପ୍ରୟୋଗ କରି କର୍ତ୍ତବ୍ୟ ନୁହେ ।" କିନ୍ତୁ ଏହା କହିବାପରେ ନିଜେ ଦୁର୍ଯ୍ୟୋଧନଙ୍କୁ କଟୂକ୍ତି କରିବାକୁ ଲାଗିଲେ ।

ଦୁର୍ଯ୍ୟୋଧନଙ୍କ ଉତ୍ତର ଦ୍ୱିତୀୟ ଆଶ୍ଚର୍ଯ୍ୟ ବ୍ୟାପାର । ଦୁର୍ଯ୍ୟୋଧନ ସେ ପର୍ଯ୍ୟନ୍ତ ମରି ନାହାନ୍ତି । ଭଗ୍ନୋରୁ ହୋଇ ପଡ଼ିଥିଲେ । ବର୍ତ୍ତମାନ କୃଷ୍ଣଙ୍କ କଟୂକ୍ତି ଶୁଣି କୃଷ୍ଣଙ୍କୁ କହିବାକୁ ଲାଗିଲେ, "ହେ କଂସଦାସତନୟ ! ଧନଞ୍ଜୟ ତୁମର ବାକ୍ୟାନୁସାରେ ବୃକୋଦରଙ୍କୁ ମୋର ଉରୁ ଭଗ୍ନ କରିବାକୁ ସଙ୍କେତ କରିବାରୁ ଭୀମସେନ ଅଧର୍ମ ଯୁଦ୍ଧରେ ମତେ ନିପାତିତ କରିଅଛି, ଏଥିରେ ତୁମେ ଲଜ୍ଜିତ ହେଉନାହଁ । ତୁମର ଅନ୍ୟାୟ ଉପାୟ ଦ୍ୱାରାହିଁ ପ୍ରତିଦିନ ଧର୍ମଯୁଦ୍ଧରେ ପ୍ରବୃତ୍ତ ସହସ୍ର ନରପତି ନିହତ ହୋଇଛନ୍ତି । * ତୁମେ ଶିଖଣ୍ଡୀଙ୍କୁ ଅଗ୍ରସର କରାଇ ପିତାମହଙ୍କୁ ନିପାତିତ କରିଅଛ । † ଅଶ୍ୱତ୍ଥାମା ନାମକ ଗଜ ନିହତ ହେଲେ

---

* ଏପରି ବିବେଚନା କରିବାର କାରଣ ମହାଭାରତରେ କେଉଁଠି ନାହିଁ । କୌଣସି ସ୍ତରରେ ମଧ୍ୟ ନାହିଁ ।

† କୃଷ୍ଣ ଏହାର ବିନ୍ଦୁବିସର୍ଗରେ ବି ନଥିଲେ । ମହାଭାରତରେ କୌଣସି ସ୍ଥାନରେ ଏପରି କଥା ନାହିଁ ।

ତୁମେ କୌଶଳରେ ଆଚାର୍ଯ୍ୟଙ୍କୁ ଅସ୍ତ୍ରଶସ୍ତ୍ର ପରିତ୍ୟାଗ କରାଇଥିଲ ଏବଂ ସେହି ଅବସରରେ ଦୁରାତ୍ମା ଧୃଷ୍ଟଦ୍ୟୁମ୍ନ ତୁମ ସମକ୍ଷରେ ଆଚାର୍ଯ୍ୟଙ୍କୁ ନିହତ କରିବାକୁ ଉଦ୍ୟତ ହେଲେ ତାହାର ନିଷେଧ କରିନାହିଁ । * କର୍ଣ୍ଣ ଅର୍ଜ୍ଜୁନଙ୍କ ବିନାଶାର୍ଥ ବହୁଦିନରୁ ଅତି ଯତ୍ନ ସହକାରେ ଯେଉଁ ଶକ୍ତି ରଖିଥିଲେ ତୁମେ କୌଶଳ କ୍ରମେ ସେହି ଶକ୍ତି ଘଟୋତ୍କଚଙ୍କ ଉପରେ ନିକ୍ଷେପ କରାଇ, ବ୍ୟର୍ଥ କରାଇଅଛ । † ସାତ୍ୟକି ତୁମରି ପ୍ରବର୍ତ୍ତନାପରତନ୍ତ୍ର ହୋଇ ଛିନ୍ନହସ୍ତ ପ୍ରାୟୋପବିଷ୍ଟ ଭୂରିଶ୍ରବାଙ୍କୁ ନିହତ କରିଥିଲେ । ‡ ମହାବୀର କର୍ଣ୍ଣ ଅର୍ଜ୍ଜୁନବଧରେ ସମୁଦ୍ୟତ ହେଲେ, ତୁମେ କୌଶଳ କ୍ରମେ ତାଙ୍କର ସର୍ପବାଣ ବ୍ୟର୍ଥ କରିଅଛ । § ଏବଂ ପରିଶେଷରେ ସୂତପୁତ୍ରଙ୍କ ରଥଚକ୍ର ଭୂଗର୍ଭରେ ପ୍ରବିଷ୍ଟ ଓ ସେ ତଦୁଦ୍ଧାର ନିମିତ୍ତ ବ୍ୟସ୍ତସମସ୍ତ ହେଲେ ତୁମେ କୌଶଳକ୍ରମେ ଅର୍ଜ୍ଜୁନଙ୍କ ଦ୍ୱାରା ତାଙ୍କ ବିନାଶ ସାଧନରେ କୃତକାର୍ଯ୍ୟ ହୋଇ-

---

* ଶତ୍ରୁକୁ ବଧ କରିବାକୁ କାହିଁକି ନିଷେଧ କରିବେ ?

† କୃଷ୍ଣ ସେଥି ନିମିତ୍ତ କୌଣସି ଯତ୍ନ ବା କୌଶଳ କରିନାହାନ୍ତି । ମହାଭାରତରେ ଏହା ଅଛି ଯେ, କୌରବମାନଙ୍କ ଅନୁରୋଧାନୁସାରେ କର୍ଣ୍ଣ ଘଟୋତ୍କଚଙ୍କ ପ୍ରତି ଶକ୍ତି ନିକ୍ଷେପ କଲେ ।

‡ ଏକଥାଟା ସମ୍ପୂର୍ଣ୍ଣ ମିଥ୍ୟା । ଏପରି କଥା ମହାଭାରତରେ କେଉଁଠି ନାହିଁ । ସାତ୍ୟକି ଭୂରିଶ୍ରବାଙ୍କୁ ନିହତ କରିଥିଲେ ଠିକ୍ । କୃଷ୍ଣ ବରଂ ଛିନ୍ନବାହୁ ଭୂରିଶ୍ରବାଙ୍କୁ ନିହତ କରିବାକୁ ନିଷେଧ କରିଥିଲେ ।

§ । ସେ କୌଶଳ ନିଜପଦବଳରେ ରଥଚକ୍ର ଭୂପ୍ରୋଥିତ କରିବା । ଏ ଉପାୟ ଅତିନ୍ୟାଯ୍ୟ ଏବଂ ସାରଥିର ଧର୍ମ୍ମ, ରଥୀର ରକ୍ଷା ।

ଅଛ ୧ । ଅତଏବ ତୁମ ତୁଲ୍ୟ ପାପାତ୍ମା, ନିର୍ଦ୍ଦୟ ଓ ନିର୍ଲଜ୍ଜ ଆଉ କିଏ ଅଛି ? ଦେଖ, ତୁମେ ଯଦି ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଓ ମୋ ସହିତ ନ୍ୟାୟ ଯୁଦ୍ଧ କରିଥାନ୍ତ, ତାହାହେଲେ କଦାପି ଜୟଲାଭରେ ସମର୍ଥ ହୁଅନ୍ତ ନାହିଁ । ତୁମର ଅନାର୍ଯ୍ୟ ଉପାୟ ପ୍ରଭାବରେ କେବଳ ଆମେ ସ୍ୱଧର୍ମାନୁଗତ ପାର୍ଥିବମାନଙ୍କ ସହିତ ନିହତ ହେଲୁ ।”

ଏହି ବାକ୍ୟପରମ୍ପରା ସମ୍ବନ୍ଧରେ ମୁଁ ଯେଉଁ କେତୋଟି **ଫୁଟନୋଟ** (ପାଦଟୀକା) ଦେଲି, ପାଠକଙ୍କର ତତ୍ପ୍ରତି ମନଯୋଗ କରିବାକୁ ହେବ । ବାକ୍ୟଗୁଡ଼ିକ ସମ୍ପୂର୍ଣ୍ଣ ମିଥ୍ୟା । ଏପରି ସମ୍ପୂର୍ଣ୍ଣ ମିଥ୍ୟା ତିରସ୍କାର ମହାଭାରତରେ ଆଉ କେଉଁଠି ନାହିଁ । ତେଣୁ କହୁଥିଲି ଯେ, ଦୁର୍ଯ୍ୟୋଧନଙ୍କ ଉତ୍ତର ଆଶ୍ଚର୍ଯ୍ୟ ।

ତୃତୀୟ ଆଶ୍ଚର୍ଯ୍ୟ ବ୍ୟାପାର ଏହି ଯେ, କୃଷ୍ଣ ଏହାର ଉତ୍ତର କଲେ । ପୂର୍ବେ ଦେଖିଅଛୁଁ, ସେ ଗମ୍ଭୀର ପ୍ରକୃତି ଓ କ୍ଷମାଶୀଳ, କାହାରି କୃତ ତିରସ୍କାରର ଉତ୍ତର କରନ୍ତି ନାହିଁ । ସଭାମଧ୍ୟରେ ଶିଶୁପାଳକୃତ ଅସହ୍ୟ ନିନ୍ଦାବାଦ ବିନାବାକ୍ୟବ୍ୟୟରେ ସହ୍ୟ କରିଥିଲେ । ବିଶେଷତଃ, ଦୁର୍ଯ୍ୟୋଧନ ବର୍ତ୍ତମାନ ମୁମୂର୍ଷୁ, ତାଙ୍କ କଥାରେ ଉତ୍ତରର କୌଣସି ପ୍ରୟୋଜନ ନାହିଁ ; ତାଙ୍କୁ କୌଣସି ପ୍ରକାର କଟୂକ୍ତି କରିବା କୃଷ୍ଣ ନିଜେ ନିନ୍ଦନୀୟ ବିବେଚନା କରନ୍ତି । ତଥାପି କୃଷ୍ଣ ଦୁର୍ଯ୍ୟୋଧନକୃତ ତିରସ୍କାରର ଉତ୍ତର କଲେ, ଏବଂ କଟୂକ୍ତି ମଧ୍ୟ କଲେ । ଉତ୍ତରରେ ଦୁର୍ଯ୍ୟୋଧନକୃତ ପାପାଚାର ସବୁ ବିବୃତ କରି ଉପସଂହାରରେ କହିଲେ, “ବିସ୍ତର ଅକାର୍ଯ୍ୟର ଅନୁଷ୍ଠାନ କରିଅଛ । ବର୍ତ୍ତମାନ ତାହାର ଫଳ ଭୋଗ କର ।”

---

୧ । କି କୌଶଳ ? ମହାଭାରତରେ ଏ ସମ୍ବନ୍ଧରେ କୃଷ୍ଣକୃତ କୌଣସି କୌଶଳର କଥା ନାହିଁ । ଯୁଦ୍ଧରେ ଅର୍ଜ୍ଜୁନ କର୍ଣ୍ଣଙ୍କ ନିହତ କରିଥିଲେ, ଏହାଇ ଅଛି ।

ଉତ୍ତରରେ ଦୁର୍ଯ୍ୟୋଧନ କହିଲେ, "ମୁଁ ଅଧ୍ୟୟନ, ବିଧି ପୂର୍ବକ ଦାନ, ସସାଗର ବସୁନ୍ଧରାର ଶାସନ, ବିପକ୍ଷମାନଙ୍କ ମସ୍ତକୋପରି ଅବସ୍ଥାନ, ଅନ୍ୟ ଭୂପାଳଙ୍କ ଦୁର୍ଲ୍ଲଭ ଦେବଭୋଗ୍ୟ ସୁଖସମ୍ଭୋଗ, ଓ ଅତ୍ୟୁତ୍କୃଷ୍ଟ ଐଶ୍ୱର୍ଯ୍ୟ ଲାଭ କରିଅଛି, ପରିଶେଷରେ ଧର୍ମ୍ମପରାୟଣ କ୍ଷତ୍ରିୟମାନଙ୍କର ପ୍ରାର୍ଥନୀୟ ସମରମୃତ୍ୟୁ ପ୍ରାପ୍ତ ହୋଇଅଛି । ଅତଏବ ମୋ ପରି ସୌଭାଗ୍ୟଶାଳୀ ଆଉ କିଏ ହେବ ? ବର୍ତ୍ତମାନ ମୁଁ ଭ୍ରାତୃଗଣ ଓ ବନ୍ଧୁବାନ୍ଧବମାନଙ୍କ ସହିତ ସ୍ୱର୍ଗକୁ ଚଳିଲି, ତୁମ୍ଭେମାନେ ଶୋକାକୁଳିତ ଚିତ୍ତରେ ମୃତକଳ୍ପ ହୋଇ ଏହି ପୃଥିବୀରେ ଅବସ୍ଥାନ କର ।

ଏପରି ଉତ୍ତର ଆଶ୍ଚର୍ଯ୍ୟ ନୁହେ । ଯେ ସର୍ବସ୍ୱପଣ କରି ହାରିଅଛି, ସେ ଯଦି ଦୁର୍ଯ୍ୟୋଧନ ପରି ଦାମ୍ଭିକ ହୁଏ, ତେବେ ସେ ଯେ ଜୟୀ ଶତ୍ରୁକୁ କହିବ । ମୁଁ ଜିତିଅଛି, ତୁମ୍ଭେମାନେ ହାରିଅଛ, ଏହା ଆଶ୍ଚର୍ଯ୍ୟ ନୁହେ । ଦୁର୍ଯ୍ୟୋଧନ ଏପରି କଥା ହୃଦରେ ରଖି ମଧ୍ୟ କହିଥିଲି । ଯୁଦ୍ଧରେ ମଲେ ଯେ ସ୍ୱର୍ଗଲାଭ ହୁଏ , ସବୁ କ୍ଷତ୍ରିୟ ତାହା କହନ୍ତି । ଉତ୍ତର ଆଶ୍ଚର୍ଯ୍ୟ ନୁହେ, କିନ୍ତୁ ଉତ୍ତରର ଫଳ ସର୍ବାପେକ୍ଷା ଆଶ୍ଚର୍ଯ୍ୟ । ଏହି କଥା କହିବା ମାତ୍ରେ "ଆକାଶରୁ ସୁଗନ୍ଧ ପୁଷ୍ପବୃଷ୍ଟି ହେବାକୁ ଲାଗିଲା । ଗନ୍ଧର୍ବ-ଗଣ ସୁମଧୁର ବାଦ୍ୟବାଦନ ଓ ଅପ୍ସରାମାନେ ରାଜା ଦୁର୍ଯ୍ୟୋ-ଧନଙ୍କ ଯଶୋଗାନ କରିବାକୁ ଆରମ୍ଭ କଲେ । ସିଦ୍ଧମାନେ ତାଙ୍କୁ ସାଧୁବାଦ ପ୍ରଦାନରେ ପ୍ରବୃତ୍ତ ହେଲେ । ସୁଗନ୍ଧସମ୍ପନ୍ନ ସୁଖସ୍ପର୍ଶ ସମୀରଣ ମନ୍ଦ ମନ୍ଦ ସଞ୍ଚାରିତ ହେବାକୁ ଲାଗିଲା । ଦିକ୍-ମଣ୍ଡଳ ଓ ନଭୋମଣ୍ଡଳ ସୁନିର୍ମଳ ହେଲା । ସେତେବେଳେ ବାସୁଦେବ ପ୍ରମୁଖ ପାଣ୍ଡବଗଣ ସେହି ଦୁର୍ଯ୍ୟୋଧନଙ୍କ ସମ୍ମାନସୂଚକ ଅଦ୍ଭୁତ ବ୍ୟାପାର ନିରୀକ୍ଷଣ କରି ସାତିଶୟ ଲଜ୍ଜିତ ହେଲେ ଏବଂ

ସେମାନେ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଓ ଭୂରିଶ୍ରବାଙ୍କୁ ଅଧର୍ମଯୁଦ୍ଧରେ ବିନାଶ କରିଅଛନ୍ତି, ଏହି କଥା ଶ୍ରବଣ କରି ଶୋକ ପ୍ରକାଶ କରିବାକୁ ଲାଗିଲେ ।"

ଯେ ମହାଭାରତର ସର୍ବପାପାତ୍ମାର ଅଧମ ପାପାତ୍ମା ବୋଲି ବର୍ଣ୍ଣିତ ହୋଇଛନ୍ତି, ତାଙ୍କର ଏପରି ଅଦ୍ଭୁତ ସମ୍ମାନ ଓ ସାଧୁବାଦ, ଆଉ ଯେଉଁମାନେ ସର୍ବ ଧର୍ମାତ୍ମାର ଶ୍ରେଷ୍ଠ ଧର୍ମାତ୍ମା ବୋଲି ବର୍ଣ୍ଣିତ ହୋଇଛନ୍ତି, ସେମାନଙ୍କର ଏହି ଅଧର୍ମାଚରଣ ନିମିତ୍ତ ଲଜ୍ଜା, ମହାଭାରତରେ ଆଶ୍ଚର୍ଯ୍ୟ । ସିଦ୍ଧଗଣ, ଅପ୍ସରା-ଗଣ ଦେବଗଣ ମିଳି ପ୍ରକଟିତ କରୁଛନ୍ତି, ଦୁରାତ୍ମା ଦୁର୍ଯୋଧନ ଧର୍ମାତ୍ମା, ଆଉ କୃଷ୍ଣ ପାଣ୍ଡବ ମହାପାପିଷ୍ଠ, ଏହା ମହାଭାରତରେ ଆଶ୍ଚର୍ଯ୍ୟ, କାରଣ, ଏହା ସମସ୍ତ ମହାଭାରତର ବିରୋଧୀ । ସିଦ୍ଧଗଣାଦି ଦୂରରେ ଥାଉ, କୌଣସି ମନୁଷ୍ୟ ଦ୍ୱାରା ଏପରି ସାଧୁବାଦ ମହାଭାରତରେ ଆଶ୍ଚର୍ଯ୍ୟ ବୋଲି ବିବେଚ୍ୟ, କାରଣ ମହାଭାରତର ଉଦ୍ଦେଶ୍ୟ ହେଲା ଦୁର୍ଯୋଧନର ଅଧର୍ମ ଓ କୃଷ୍ଣ ପାଣ୍ଡବମାନଙ୍କ ଧର୍ମ କୀର୍ତ୍ତନ । ମଜା ଉପରେ ମଜାର କଥା, ସେମାନେ ଦୁର୍ଯୋଧନ ମୁଖରୁ ଶୁଣିଲେ ଯେ, ସେମାନେ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଓ ଭୂରିଶ୍ରବାଙ୍କୁ ଅଧର୍ମଯୁଦ୍ଧରେ ବଧ କରିଛନ୍ତି ; ତତ୍କ୍ଷଣାତ୍ ଶୋକ ପ୍ରକାଶ କରିବାକୁ ଲାଗିଲେ । ଏ ପର୍ଯ୍ୟନ୍ତ ସେମାନେ କିଛି ଜାଣି ନଥିଲେ, ବର୍ତ୍ତମାନ ପରମ ଶତ୍ରୁର ମୁଖରୁ ଜାଣି, ଭଦ୍ର ଲୋକ ପରି, ଶୋକ ପ୍ରକାଶ କରିବାକୁ ଲାଗିଲେ । ସେମାନେ ଜାଣନ୍ତି ଯେ, ଭୀଷ୍ମ ବା କର୍ଣ୍ଣଙ୍କୁ ସେମାନେ କୌଣସି ପ୍ରକାର ଅଧର୍ମ କରି ମାରି ନାହାନ୍ତି, କିନ୍ତୁ ପରମ ଶତ୍ରୁ ଦୁର୍ଯୋଧନ କହୁଛନ୍ତି, ତୁମେ ଅଧର୍ମ କରି ମାରିଅଛ, ଅତଏବ ତାହାଁରେ ଅବଶ୍ୟ ବିଶ୍ୱାସ କଲେ ; ସଙ୍ଗେ

ସଙ୍ଗେ ଶୋକ ପ୍ରକାଶ କରିବାକୁ ଲାଗିଲେ । ସେମାନେ ଜାଣନ୍ତେ ଯେ, ଭୂରିଶ୍ରବାଙ୍କୁ ସେମାନେ କେହି ବଧ କରି ନାହାନ୍ତି—ସାତ୍ୟକି କରିଥିଲେ. ସାତ୍ୟକିଙ୍କୁ ବରଂ କୃଷ୍ଣ, ଅର୍ଜ୍ଜୁନ ଓ ଭୀମ ନିଷେଧ କରିଥିଲେ, ତଥାପି ଯେତେବେଳେ ପରମ ଶତ୍ରୁ ଦୁର୍ଯ୍ୟୋଧନ କହୁଛନ୍ତି, ତୁମ୍ଭେମାନେ ମାରିଅଛ ଆଉ ତୁମ୍ଭେମାନେ ଅଧର୍ମ୍ମା ଚରଣ କରିଅଛ, ସେତେବେଳେ ନିଶ୍ଚୟ ପାଣ୍ଡବମାନେ ଅବଶ୍ୟ ବିଶ୍ୱାସ କରିବାକୁ ବାଧ୍ୟ ଯେ, ସେମାନେଇ ମାରିଛନ୍ତି, ଏବଂ ସେମାନେଇ ଅଧର୍ମ୍ମ କରିଛନ୍ତି ; ଏଣୁ ସେମାନେ ଭଦ୍ରଲୋକ ପରି କାନ୍ଦିବାକୁ ଆରମ୍ଭ କଲେ । ଏ ସବୁ ଉପରୁ ସମାଲୋଚନା ବିଡ଼ମ୍ବନା ମାତ୍ର । ତେବେ ଏ ଦୁର୍ଭାଗ୍ୟ ଦେଶର ଲୋକଙ୍କ ବିଶ୍ୱାସ ଯେ, ଯାହା କିଛି ପୋଥି ଭିତରେ ଅଛି, ତାହା ଋଷିବାକ୍ୟ, ଅଭ୍ରାନ୍ତ, ଶିରୋଧାର୍ଯ୍ୟ । ଏଣୁ ବିଡ଼ମ୍ବନା ସ୍ୱେଚ୍ଛାପୂର୍ବକ ମତେ ସ୍ୱୀକାର କରିବାକୁ ହୋଇ ଅଛି ।

ଆଶ୍ଚର୍ଯ୍ୟ କଥାଗୁଡ଼ାକ ଏପର୍ଯ୍ୟନ୍ତ ଶେଷ ହୋଇ ନାହିଁ । କୃଷ୍ଣ ତ ସ୍ୱକୃତ ଅଧର୍ମ୍ମାଚରଣ ନିମିତ୍ତ ଲଜ୍ଜିତ ହେଲେ । ପୁଣି ସେହି ସମୟରେ ଅତ୍ୟନ୍ତ ନିର୍ଲ୍ଲଜ୍ଜ ଭାବରେ ପାଣ୍ଡବମାନଙ୍କ ନିକଟରେ ସେହି ପାପାଚରଣ ନିମିତ୍ତ ଆତ୍ମଶ୍ଳାଘା କରିବାକୁ ଲାଗିଲେ । *

---

* ଯଥା, "ଭୀଷ୍ମପ୍ରମୁଖ ମହାରଥଗଣ ଓ ରାଜା ଦୁର୍ଯ୍ୟୋଧନ ଅସାଧାରଣ ସମରବିଶାରଦ ଥିଲେ, ତୁମ୍ଭେମାନେ କଦାପି ସେମାନଙ୍କୁ ଧର୍ମ୍ମଯୁଦ୍ଧରେ ପରାଜୟ କରିବାକୁ ସମର୍ଥ ହୁଅନ୍ତ ନାହିଁ । ମୁଁ କେବଳ ତୁମର ହିତାନୁଷ୍ଠାନପରତନ୍ତ୍ର ହୋଇ ଅନେକ ଉପାୟ ଉଦ୍ଭାବନ ଓ ମାୟାବଳ ପ୍ରକାଶ ପୂର୍ବକ ସେମାନଙ୍କୁ ନିପାତିତ କରିଅଛି । ମୁଁ ଯଦି ଏପରି କୁଟିଳ ବ୍ୟବହାର ନ କରିଥାନ୍ତି

କହିବା ବାହୁଲ୍ୟ ଯେ, ଦୁର୍ଯ୍ୟୋଧନକୃତ ତିରସ୍କାରାଦି ବୃତ୍ତାନ୍ତ ସମସ୍ତହିଁ ଅମୌଳିକ । ଦ୍ରୋଣବଧାଦି ଯେ ଅମୌଳିକ ତାହା ମୁଁ ପୂର୍ବେ ପ୍ରମାଣୀକୃତ କରିଅଛି । ଯାହା ଅମୌଳିକ ତାହାର ପ୍ରସଙ୍ଗ ଯେଉଁ ଅଂଶରେ ଅଛି, ତାହା ମଧ୍ୟ ଅବଶ୍ୟ ଅମୌଳିକ କେବଳ ଏତିକି କହିବା ଆବଶ୍ୟକ ଯେ, ଏଠାରେ ଦ୍ୱିତୀୟ ସ୍ତରର କବିର ମଧ୍ୟ ଲେଖନୀଚିହ୍ନ ଦେଖା ଯାଏ ନାହିଁ । ଏହା ତୃତୀୟ ସ୍ତରର ବୋଲି ବୋଧ କରି ଯାଏ । ଦ୍ୱିତୀୟ ସ୍ତରର କବି କୃଷ୍ଣ ଭକ୍ତ, ଏ ଲେଖକ କୃଷ୍ଣଦ୍ୱେଷକ । ଶୈବାଦି ଅବୈଷ୍ଣବ ବା ବୈଷ୍ଣବଦ୍ୱେଷିଗଣ ମଧ୍ୟ ସ୍ଥାନେ ସ୍ଥାନେ ମହାଭାରତର କଳେବର ବଢାଇଛନ୍ତି, ତାହା ପୂର୍ବେ କହି ଅଛି । ସେମାନେ

---

ତେବେ ତୁମ୍ଭମାନଙ୍କର ଜୟଲାଭ, ରାଜ୍ୟଲାଭ ଓ ଅର୍ଥଲାଭ କଦାପି ହୁଅନ୍ତା ନାହିଁ । ଦେଖ, ଭୀଷ୍ମ ପ୍ରଭୃତି ସେହି ବୀର ମହାତ୍ମା ଭୂମଣ୍ଡଳରେ ଅତିରଥ ବୋଲି ପ୍ରଥିତ ଅଛନ୍ତି । ଲୋକପାଳମାନେ ସମବେତ ହୋଇ ମଧ୍ୟ ସେମାନଙ୍କୁ ଧର୍ମ ଯୁଦ୍ଧରେ ନିହତ କରିବାକୁ ସମର୍ଥ ହୁଅନ୍ତେ ନାହିଁ । ପୁଣି ଦେଖ, ସମରରେ ଅପରିଶ୍ରାନ୍ତ ଗଦାଧାରୀ ଏହି ଦୁର୍ଯ୍ୟୋଧନଙ୍କୁ ଦଣ୍ଡଧାରୀ କୃତାନ୍ତ ମଧ୍ୟ ଧର୍ମଯୁଦ୍ଧରେ ବିନଷ୍ଟ କରି ପାରନ୍ତେ ନାହିଁ; ଅତଏବ ଭୀମ ଯେ ତାଙ୍କୁ ଅସତ୍ ଉପାୟ ଅବଲମ୍ବନପୂର୍ବକ ନିପାତିତ କରିଛନ୍ତି, ସେ କଥା ଆଉ ଆନ୍ଦୋଳନ କରିବାର ଆବଶ୍ୟକ ନାହିଁ । ଏହିରୂପ ପ୍ରସିଦ୍ଧ ଅଛି ଯେ, ଶତ୍ରୁସଂଖ୍ୟା ବୃଦ୍ଧି ହେଲେ ସେମାନଙ୍କୁ କୂଟ ଯୁଦ୍ଧରେ ବିନାଶ କରିବ । ମହାତ୍ମା ସୁରଗଣ କୂଟ ଯୁଦ୍ଧର ଅନୁଷ୍ଠାନ କରିହିଁ ଅସୁରମାନଙ୍କୁ ନିହତ କରିଥିଲେ ; ସେମାନଙ୍କ ଅନୁକରଣ କରିବା ସମସ୍ତଙ୍କର କର୍ତ୍ତବ୍ୟ ।" ଏପରି ନିର୍ଲଜ୍ଜ ଅଧର୍ମ ଆଉ କେଉଁଠାରେ ଶୁଣାଯାଏ ନାହିଁ ।

କେହି ଏଠାରେ ଗ୍ରନ୍ଥକାର, ଏହା ସମ୍ଭବ । ପୁଣି ଏ କାମ କୃଷ୍ଣ ଭକ୍ତର, ଏହାମଧ୍ୟ ଅସମ୍ଭବ ନୁହେ । ନନ୍ଦାଞ୍ଚଳରେ ସ୍ତୁତି କରିବା ଭାରତବର୍ଷୀୟ କବିମାନଙ୍କର ଗୋଟିଏ ବିଦ୍ୟା ମଧ୍ୟରେ । * ଏହା ଛାଡ଼ା ବି ହୋଇ ପାରେ ।

ସେ ଯାହା ହେଉ, ଏହା ପରେ ପୁଣି ଦେଖିବାକୁ ପାଉଁ ଯେ ଦୁର୍ଯ୍ୟୋଧନ ଅଶ୍ୱତ୍ଥାମାଙ୍କ ନିକଟରେ କହୁଛନ୍ତି, "ମୁଁ ଅମିତତେଜା ବାସୁଦେବଙ୍କ ମାହାତ୍ମ୍ୟ ବିଲକ୍ଷଣ ଅବଗତ ଅଛି ; ସେ ମତେ କ୍ଷତ୍ରିୟଧର୍ମରୁ ପରିଭ୍ରଷ୍ଟ କରି ନାହାନ୍ତି । ଅତଏବ ମୋ ନିମିତ୍ତ ଶୋକ କରିବାର ପ୍ରୟୋଜନ କଣ ?"

ଏପରି ବାରମିଶା କାଣ୍ଡର ସମାଲୋଚନାରେ ପ୍ରବୃତ୍ତ ହେବା ବିଡ଼ମ୍ବନା ନୁହେଁ କି ?

---

* ଗୋଟିଏ ଉଦାହରଣ ନ ଦେଲେ, ଅନେକ ପାଠକ ବୁଝି ପାରିବେ ନାହିଁ, ସ୍ମର ଭସ୍ମୀଭୂତ ହେବା ପରେ ବିଳାପ କାଳରେ ରତିଙ୍କ ମୁହଁରେ ଭାରତ ଚନ୍ଦ୍ର କହୁଛନ୍ତି,

"ଏକେର କପାଲେରହେ, ଆରେର କପାଲ ଦହେ
ଆଗୁନେର କପାଲେ ଆଗୁନ ।"

ଏହା ଅଗ୍ନିଙ୍କୁ ଗାଳି ସତ୍ୟ, କିନ୍ତୁ ଟିକିଏ ଭାଷାନ୍ତର କରିଲେଇ ସ୍ତୁତି, ଯଥା — "ହେ ଅଗ୍ନି ! ତୁମେ ଶମ୍ଭୁ ଲଲାଟ ବିହାରୀ ଲୋକଧ୍ୱଂସ କାରୀ, ତୁମର ଶିଖା ଜ୍ୱାଳା ବିଶିଷ୍ଟ ହେଉ ।" ପାଠକ ଭାରତଚନ୍ଦ୍ର ପ୍ରଣୀତ ଅନ୍ନଦାମଙ୍ଗଳରେ ଦକ୍ଷକୃତ ଶିବନିନ୍ଦା ଦେଖିବେ । ଗ୍ରନ୍ଥର କଳେବର ବୃଦ୍ଧି ଭୟରେ ତାହା ଉଦ୍ଧୃତ କରି ପାରିଲି ନାହିଁ ।

# ନବମ ପରିଚ୍ଛେଦ

## ଯୁଦ୍ଧଶେଷ

ଅନ୍ୟାୟ ଯୁଦ୍ଧରେ ଦୁର୍ଯ୍ୟୋଧନ ହତ ହୋଇଛନ୍ତି ବୋଲି ଯୁଧିଷ୍ଠିରଙ୍କର ଭୟ ହେଲା ଯେ, ତପଃପ୍ରଭାବଶାଳିନୀ ଗାନ୍ଧାରୀ ଶୁଣି ପାଣ୍ଡବମାନଙ୍କୁ ଭସ୍ମ କରି ପକାଇବେ । ଏଥି ନିମିତ୍ତ ସେ କୃଷ୍ଣଙ୍କୁ ଅନୁରୋଧ କଲେ ଯେ, ସେ ହସ୍ତିନାକୁ ଯାଇ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ଶାନ୍ତ କରି ଆସନ୍ତୁ ।

କଥାଟା ପ୍ରଥମ ସ୍ତରର ନୁହେ, କାରଣ ଏଠାରେ ଯୁଧିଷ୍ଠିର କୃଷ୍ଣଙ୍କୁ କହୁଛନ୍ତି, "ତୁମେ ଅବ୍ୟୟ, ଏବଂ ଲୋକର ସୃଷ୍ଟି ସଂହାରକର୍ତ୍ତା ।" ଏହାର ଅଳ୍ପ ପୂର୍ବେ ଅର୍ଜୁନଙ୍କ ରଥରୁ କୃଷ୍ଣ ଅବତରଣ କରିବାରୁ ସେ ରଥ ପୋଡ଼ି ଯାଇଥିଲା । ଅର୍ଜୁନଙ୍କ ଜିଜ୍ଞାସା ମତେ କୃଷ୍ଣ କହିଲେ, "ବ୍ରହ୍ମାସ୍ତ୍ରପ୍ରଭାବରେ ପୂର୍ବରୁ ଏହି ରଥରେ ଅଗ୍ନି ସଂଲଗ୍ନ ହୋଇଥିଲା । କେବଳ ମୁଁ ସେଥିରେ ଅଧିଷ୍ଠାନ କରିଥିଲି ବୋଲି ଏ ପର୍ଯ୍ୟନ୍ତ ଦଗ୍ଧ ହୋଇ ନାହିଁ ।" ଅର୍ଥାତ୍ ମୁଁ ଦେବତା ବା ବିଷ୍ଣୁ । ଏହା ଦ୍ୱିତୀୟ ବା ତୃତୀୟ ସ୍ତର ।

କୃଷ୍ଣ ହସ୍ତିନାକୁ ଯାଇ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ କିଛି ବୁଝାଇଲେ । ଉଦ୍ଧୃତ କରିବା ବା ସମାଲୋଚନାର ଯୋଗ୍ୟ କୌଣସି କଥା ନାହିଁ ।

ତାପରେ, ଦୁର୍ଯ୍ୟୋଧନ ଅଶ୍ୱତ୍ଥାମାଙ୍କୁ ସେନାପତିତ୍ୱରେ ବରଣ କଲେ । କିନ୍ତୁ ସେତେବେଳେ ସେନା ମଧ୍ୟରେ ସେହି ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ଓ କୃତବର୍ମ୍ମା । ଏଠାରେ ଶଲ୍ୟପର୍ବ ଶେଷ ।

ତାରପରେ ସୌପ୍ତିକପର୍ବ । ସୌପ୍ତିକ ପର୍ବ ଅତି ଭୀଷଣ ବ୍ୟାପାରରେ ପରିପୂର୍ଣ୍ଣ । ପ୍ରଥମାଂଶରେ ଅଶ୍ୱତ୍ଥାମା ବୃତ୍ତିରେ ପର ନିଶୀଥ କାଳରେ ପାଣ୍ଡବଶିବିରରେ ପ୍ରବିଷ୍ଟ ହୋଇ ନିଦ୍ରାଭିଭୂତ ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡି, ଦ୍ରୌପଦୀଙ୍କ ପଞ୍ଚପୁତ୍ର, ଏବଂ ସମସ୍ତ ପାଞ୍ଚାଳଗଣଙ୍କୁ, ସେନା ଓ ସେନାପତିମାନଙ୍କୁ ବଧ କଲେ । ପଞ୍ଚପାଣ୍ଡବ ଓ କୃଷ୍ଣ ଭିନ୍ନ ପାଣ୍ଡବ ପକ୍ଷରେ ଆଉ କେହି ରହିଲେ ନାହିଁ ।

ବସ୍ତୁତଃ ଏହି କୁରୁକ୍ଷେତ୍ରର ଯୁଦ୍ଧ କୁରୁ ପାଞ୍ଚାଳର ଯୁଦ୍ଧ ପାଞ୍ଚାଳମାନେ ନିର୍ବଂଶ ହେବାପରେ ଯୁଦ୍ଧ ଶେଷ ହେଲା ।

ତାରପରେ, ସୌପ୍ତିକ ପର୍ବରେ ଗୋଟାଏ ଐଷୀକ ପର୍ବାଧ୍ୟାୟ ଅଛି । ଅଶ୍ୱତ୍ଥାମା ଏହି ନୃଶଂସ କାର୍ଯ୍ୟକରି ପାଣ୍ଡବମାନଙ୍କ ଭୟରେ ଯାଇ ବନରେ ଲୁକ୍କାୟିତ ହେଲେ । ପାଣ୍ଡବମାନେ ପରଦିନ ତାଙ୍କ ଅନ୍ୱେଷଣରେ ଧାବିତ ହେଲେ । ଅଶ୍ୱତ୍ଥାମା ଧରା ପଡ଼ି ଆତ୍ମରକ୍ଷାର୍ଥ ଅତି ଭୟଙ୍କର ବ୍ରହ୍ମଶିର ଅସ୍ତ୍ର ପରିତ୍ୟାଗ କଲେ । ଅର୍ଜ୍ଜୁନ ମଧ୍ୟ ତନ୍ନିବାରଣାର୍ଥ ବ୍ରହ୍ମଶିର ଅସ୍ତ୍ରର ପ୍ରତିପ୍ରୟୋଗ କଲେ, ଦୁଇ ଅସ୍ତ୍ରର ତେଜରେ ବ୍ରହ୍ମାଣ୍ଡଧ୍ୱଂସର ସମ୍ଭାବନା ଦେଖି ଋଷିମାନେ ମିଟ ମାଟ କରିଦେଲେ । ଅଶ୍ୱତ୍ଥାମାର ଶିର ସ୍ଥିତ ସହଜମଣି କାଟି ଦ୍ରୌପଦୀଙ୍କୁ ଉପହାର ଦେଲେ । ଏଣେ ବ୍ରହ୍ମଶିର ଅସ୍ତ୍ର ପାଣ୍ଡବବଧୂ ଉତ୍ତରାଙ୍କର ଗର୍ଭ ନଷ୍ଟ କଲା ।

ଏହି ସବୁ ଅନୈସର୍ଗିକ ବ୍ୟାପାର ଆମେ ଛାଡ଼ି ଦେଇ ପାରୁ । ଆମର ସମାଲୋଚନାର ଯୋଗ୍ୟ କୃଷ୍ଣଚରିତ—ଘଟିତ କୌଣସି କଥା ସୌପ୍ତିକ ପର୍ବରେ ନାହିଁ ।

ତାରପରେ ସ୍ତ୍ରୀ ପର୍ବ । ସ୍ତ୍ରୀ ପର୍ବ ଆହୁରି ଭୀଷଣ । ନିହତ ବୀରବର୍ଗଙ୍କ ସ୍ତ୍ରୀ ମାନଙ୍କର ଏଥିରେ ଆର୍ତ୍ତନାଦ । ଏପରି ଭୀଷଣ

ଆଶୀର୍ବାଦ ଆଉ କେବେ ଶୁଣା ଯାଇ ନାହିଁ । କିନ୍ତୁ କୃଷ୍ଣ ସମ୍ବନ୍ଧୀୟ ଦୁଇଟି ମାତ୍ର କଥା ଅଛି । (୧) ଧୃତରାଷ୍ଟ୍ର ଆଲିଙ୍ଗନ ସମୟରେ ଭୀମଙ୍କୁ ଚୂର୍ଣ୍ଣ କରିବେ, କଳ୍ପନା କରିଥିଲେ, କିନ୍ତୁ କୃଷ୍ଣ ତାଙ୍କ ପାଇଁ ଲୌହ ଭୀମ ସଜାଡ଼ି କରି ରଖିଥିଲେ । ଅନ୍ଧ ରାଜା ତାହାକୁ ଚୂର୍ଣ୍ଣ କଲେ । ଅନୈସର୍ଗିକ ବୃତ୍ତାନ୍ତ ଆମର ପରିତ୍ୟାଜ୍ୟ । ଏଣୁ ଏ ସମ୍ବନ୍ଧରେ ଆଉ କିଛି କହିବାର ନାହିଁ । (୨) ଗାନ୍ଧାରୀ କୃଷ୍ଣଙ୍କ ନିକଟରେ ଅନେକ ବିଳାପ କରି, ଶେଷରେ କୃଷ୍ଣଙ୍କୁ ଅଭିସମ୍ପାତ କଲେ । କହିଲେ:—

"ଜନାର୍ଦ୍ଦନ ! ଯେତେବେଳେ କୌରବ ଓ ପାଣ୍ଡବଗଣ ପରସ୍ପରର କ୍ରୋଧାନଳରେ ପରସ୍ପର ଦଗ୍ଧ ହେଉଥିଲେ; ସେତେବେଳେ ତୁମେ କି ନିମିତ୍ତ ସେ ବିଷୟରେ ଉପେକ୍ଷା ପ୍ରଦର୍ଶନ କଲ ? ତୁମର ବହୁସଂଖ୍ୟକ ଭୃତ୍ୟ ଓ ସୈନ୍ୟ ବିଦ୍ୟମାନ ଅଛି । ତୁମେ ଶାସ୍ତ୍ରଜ୍ଞାନ ସମ୍ପନ୍ନ, ବାକ୍ୟ ବିଶାରଦ ଓ ଅସାଧାରଣ ବଳବୀର୍ଯ୍ୟଶାଳୀ, ତଥାପି ତୁମେ ଇଚ୍ଛାପୂର୍ବକ କୌରବମାନଙ୍କ ବିନାଶରେ ଉପେକ୍ଷା ପ୍ରଦର୍ଶନ କରି ଅଛ । ଅତଏବ ତୁମକୁ ଅବଶ୍ୟ ଏହାର ଫଳ ଭୋଗିବାକୁ ହେବ । ମୁଁ ପତି ଶୁଶ୍ରୂଷା ଦ୍ୱାରା ଯାହା କିଛି ତପଃସଞ୍ଚୟ କରିଅଛି, ସେହି ନିତାନ୍ତ ଦୁର୍ଲଭ ତପଃପ୍ରଭାବରେ ତୁମକୁ ଅଭିଶାପ ପ୍ରଦାନ କରୁଅଛି ଯେ, ତୁମେ ଯେପରି କୌରବ ଓ ପାଣ୍ଡବମାନଙ୍କର ଜ୍ଞାତି ବିନାଶରେ ଉପେକ୍ଷା ପ୍ରଦର୍ଶନ କରିଅଛ, ସେହିପରି ତୁମର ନିଜର ଜ୍ଞାତିବର୍ଗ ମଧ୍ୟ ତୁମ କର୍ତ୍ତୃକ ବିନଷ୍ଟ ହେବେ । ଅତଃପର ଷଟ୍‌ତ୍ରିଂଶତ୍ * ବର୍ଷ ସମୁପସ୍ଥିତ ହେଲେ ତୁମେ ଅମାତ୍ୟ, ଜ୍ଞାତି, ଓ

---

* ଷଟ୍‌ତ୍ରିଂଶ କହିଲେ କାହିଁକି ?

ପୁତ୍ର ସ୍ୱାନ ଓ ବନ୍ଧୁବର୍ଗ ହୋଇ ଅତି କୁତ୍ସିତ ଉପାୟ ଦ୍ୱାରା ନିହତ ହେବ । ତୁମର କୁଳରମଣୀଗଣ ମଧ୍ୟ ଭରତ ବଂଶୀୟ ମହିଳା ମାନଙ୍କ ପରି ପୁତ୍ରହୀନ ଓ ବନ୍ଧୁ ବାନ୍ଧବହୀନ ହୋଇ ବିଳାପ ଓ ପରିତାପ କରିବେ ।”

କୃଷ୍ଣ ହସି ଉତ୍ତର କଲେ; “ଦେବି ! ମୋ ଛଡ଼ା ଯଦୁବଂଶୀୟ-ମାନଙ୍କୁ ବିନାଶ କରିବ, ଏପରି କେହି ନାହିଁ । ମୁଁ ଯେ ଯଦୁବଂଶ ଧ୍ୱଂସ କରିବି, ତାହା ଅନେକ ଦିନରୁ ଅବଧାରଣ କରି ରଖିଅଛି । ମୋର ଯାହା ଅବଶ୍ୟ କର୍ତ୍ତବ୍ୟ, ବର୍ତ୍ତମାନ ଆପଣ ତାହା କହିଲେ, ଯାଦବମାନେ ମନୁଷ୍ୟ ବା ଦେବଦାନବ ଗଣର ବି ବଧ୍ୟ ନୁହନ୍ତି । ସୁତରାଂ ସେମାନେ ପରସ୍ପର ବିନଷ୍ଟ ହେବେ ।”

ଏହିରୂପେ ଦ୍ୱୈପାୟନ ସ୍ତ୍ରୀପର୍ବର କବି ମୌଷଳ ପର୍ବର ପୂର୍ବ ସୂଚନା କରି ରଖିଲେ । ମୌଷଳ ପର୍ବ ଯେ ଦ୍ୱୈପାୟନଙ୍କର ତାହାର ବି ପୂର୍ବସୂଚନା ଆମେ ମଧ୍ୟ କରି ରଖିଅଛୁ ।

## ଦଶମ ପରିଚ୍ଛେଦ

## ଋଷି ସଂସ୍ଥାପନ

ବର୍ତ୍ତମାନ ଆମ୍ଭେମାନେ ଅତି ଦୁସ୍ତର କୁରୁକ୍ଷେତ୍ର ଯୁଦ୍ଧ ବିବରଣରୁ ମୁକ୍ତ ହେଲୁ । କୃଷ୍ଣଚରିତ୍ର ପୁନର୍ବାର ସୁନିର୍ମଳ ପ୍ରଭାସିତ ହେବାକୁ ଲାଗିଲା । କିନ୍ତୁ ଶାନ୍ତି ଓ ଅନୁଶାସନ ପର୍ବରେ କୃଷ୍ଣ ଈଶ୍ୱର ବୋଲି ସ୍ପଷ୍ଟତଃ ସ୍ୱୀକୃତ ।

ଯୁଦ୍ଧାନ୍ତର ଶେଷରେ, ଅଗାଧବୁଦ୍ଧି ଯୁଧିଷ୍ଠିର ପୁଣି ଏକ ଅଗାଧ ବୁଦ୍ଧିର ଖେଳ ଖେଳିଲେ ! ସେ ଅର୍ଜ୍ଜୁନଙ୍କୁ କହିଲେ, ଏତେ ଜ୍ଞାତି

ପ୍ରଭୃତି ବଧ କରି ମୋ ମନରେ କୌଣସି ସୁଖ ନାହିଁ—ମୁଁ ବନକୁ ଯିବି, ଭିକ୍ଷା କରି ଖାଇବି । ଅର୍ଜୁନ ବଡ଼ ରାଗ କଲେ, ଯୁଧିଷ୍ଠିରଙ୍କୁ ଅନେକ ବୁଝାଇଲେ । ସେତେବେଳେ ଅର୍ଜୁନ ଓ ଯୁଧିଷ୍ଠିରଙ୍କ ମଧ୍ୟରେ ବଡ଼ ଭାରି ବାଦାନୁବାଦ ଉପସ୍ଥିତ ହେଲା । ଶେଷରେ, ଭୀମ, ନକୁଳ, ସହଦେବ, ଦ୍ରୌପଦୀ ଓ ସ୍ୱୟଂ କୃଷ୍ଣ ଅନେକ ବୁଝା-ଇଲେ । ଦୁର୍ବଳ ଚିତ୍ତ ଯୁଧିଷ୍ଠିର କିଛି ବୁଝନ୍ତି ନାହିଁ । ବ୍ୟାସ ନାରଦ ପ୍ରଭୃତି ବୁଝାଇଲେ । କିଛି ହେଲା ନାହିଁ । ଶେଷରେ କୃଷ୍ଣଙ୍କ କଥାରେ ମହାସମାରୋହର ସହିତ ହସ୍ତିନାରେ ପ୍ରବେଶ କଲେ ।

କୃଷ୍ଣ ତାଙ୍କୁ ରାଜ୍ୟାଭିଷିକ୍ତ କରାଇଲେ । ଯୁଧିଷ୍ଠିର କୃଷ୍ଣଙ୍କ ସ୍ତବ କଲେ । ସେ ସ୍ତବ ଜଗଦୀଶ୍ୱରଙ୍କର । ଯୁଧିଷ୍ଠିର କୃଷ୍ଣଙ୍କ ସ୍ତବ କରି ନମସ୍କାର କଲେ । କୃଷ୍ଣ ବୟଃକନିଷ୍ଠ; ଯୁଧିଷ୍ଠିର ଆଉ କେବେ ତାଙ୍କୁ ସ୍ତବ ବା ନମସ୍କାର କରି ନାହାନ୍ତି ।

ଏଣେ କୌରବଶ୍ରେଷ୍ଠ ଭୀଷ୍ମ ଶରଶଯ୍ୟାରେ ଶୟାନ, ତୀବ୍ର ଯନ୍ତ୍ରଣାରେ କାତର, ଉତ୍ତରାୟଣର ପ୍ରତୀକ୍ଷାରେ ଶରୀର ରକ୍ଷା କରୁଛନ୍ତି । ସେ ଋଷିଗଣପରିବୃତ ହୋଇ, ସର୍ବମୟ, ସର୍ବାଧାର, ପରମ ପୁରୁଷ କୃଷ୍ଣଙ୍କୁ ଧ୍ୟାନ କରିବାକୁ ଲାଗିଲେ । ତାଙ୍କ ସ୍ତୁତିବାକ୍ୟରେ ଚଞ୍ଚଳଚିତ୍ତ ହୋଇ କୃଷ୍ଣ ଯୁଧିଷ୍ଠିରାଦିଙ୍କୁ ସଙ୍ଗେ ନେଇ ଭୀଷ୍ମଙ୍କୁ ଦର୍ଶନ ଦେବାକୁ ଗଲେ । ବାଟରେ ଯାଉ ଯାଉ ଯୁଧିଷ୍ଠିର ଉପଯାଚକ ହୋଇ ପରଶୁରାମଙ୍କ ଉପାଖ୍ୟାନ କୃଷ୍ଣଙ୍କ ନିକଟରୁ ଶ୍ରବଣ କଲେ ।

କୃଷ୍ଣ ଯୁଧିଷ୍ଠିରଙ୍କୁ ଏରୂପ ଅନୁମତି କରିଥିଲେ ଯେ, ଭୀଷ୍ମଙ୍କ ନିକଟରୁ ଜ୍ଞାନଲାଭ କର । ଭୀଷ୍ମ ସର୍ବଧର୍ମବେତ୍ତା; ତାଙ୍କ ମୃତ୍ୟୁ ପରେ ତାଙ୍କ ଜ୍ଞାନ ତାଙ୍କ ସହିତ ଯିବ; ତାଙ୍କ ମୃତ୍ୟୁ ପୂର୍ବେ ସେହି ଜ୍ଞାନ ଜଗତରେ ପ୍ରଚାରିତ ହେଉ, ଏହା ତାଙ୍କର ଇଚ୍ଛା ।

ଏଥି ନିମିତ୍ତ ସେ ଯୁଧିଷ୍ଠିରଙ୍କୁ ତାଙ୍କ ନିକଟରୁ ଜ୍ଞାନଲାଭପାଇଁ ଉପଦେଶ ଦେଇଥିଲେ । ଭୀଷ୍ମଙ୍କୁ ମଧ୍ୟ ଯୁଧିଷ୍ଠିରଙ୍କୁ ଧର୍ମୋପଦେଶ ଦେଇ ଅନୁଗୃହୀତ କରିବାକୁ ଆଦେଶ କଲେ ।

ଭୀଷ୍ମ ସ୍ୱୀକୃତ ହେଲେ ନାହିଁ । କହିଲେ, ଧର୍ମ କର୍ମ ସବୁ ତୁମଠାରୁ । ତୁମେହିଁ ସବୁ ଜାଣ; ତୁମେ ଯୁଧିଷ୍ଠିରଙ୍କୁ ଉପଦେଶ ପ୍ରଦାନ କର । ମୁଁ ନିଜେ ଶରକ୍ଷତ ହୋଇ ମୁମୂର୍ଷୁ, ଓ ଅତ୍ୟନ୍ତ କ୍ଳିଷ୍ଟ, ମୋର ବୁଦ୍ଧିଭ୍ରଂଶ ହେଉଅଛି; ମୁଁ ପାରି ଉଠିବି ନାହିଁ । ସେତେବେଳେ କୃଷ୍ଣ କହିଲେ ମୋର ବରରେ ତୁମର ଶରାଘାତ-ନିବନ୍ଧନ ସମସ୍ତ କ୍ଳେଶ ବିଦୂରିତ ହେବ । ତୁମର ଅନ୍ତଃକରଣ ଜ୍ଞାନାଲୋକରେ ସମୁଜ୍ଜ୍ୱଳ ହେବ, ବୁଦ୍ଧି ଅବ୍ୟତିକ୍ରାନ୍ତ ରହିବ ; ତୁମର ମନ କେବଳ ସତ୍ତ୍ୱଗୁଣାଶ୍ରୟ କରିବ । ତୁମେ ଦିବ୍ୟଚକ୍ଷୁଃ ପ୍ରଭାବରେ ଭୂତଭବିଷ୍ୟତ୍ ସମସ୍ତ ଦେଖିବ ।

କୃଷ୍ଣଙ୍କ କୃପାରେ ଠିକ୍ ସେହିପରି ହେଲା । କିନ୍ତୁ ତଥାପି ଭୀଷ୍ମ ଆପତ୍ତି କରି, କୃଷ୍ଣଙ୍କୁ କହିଲେ, "ତୁମେ ସ୍ୱୟଂ କାହିଁକି ଯୁଧିଷ୍ଠିରଙ୍କୁ ହିତୋପଦେଶ ପ୍ରଦାନ କଲ ନାହିଁ ? କୃଷ୍ଣ ଉତ୍ତରରେ କହିଲେ, ସମସ୍ତ ହିତାହିତ କର୍ମ ମୋଠାରୁ ସମୁତ । ଚନ୍ଦ୍ରଙ୍କର ଶୀତାଂଶୁ ଘୋଷଣା ଯେରୂପ, ମୋର ଯଶୋଲାଭ ସେଇରୂପ । ବର୍ତ୍ତମାନ ମୋର ଇଚ୍ଛା, ଆପଣଙ୍କୁ ସମଧିକ ଯଶସ୍ୱୀ କରେ । ମୋର ସମୁଦାୟ ବୁଦ୍ଧି ସେଥି ନିମିତ୍ତ ଆପଣଙ୍କୁ ଅର୍ପଣ କରିଅଛି । ଇତ୍ୟାଦି ।

ତତ୍ପରେ ଭୀଷ୍ମ ପ୍ରଫୁଲ୍ଲଚିତ୍ତରେ ଯୁଧିଷ୍ଠିରଙ୍କୁ ଧର୍ମତତ୍ତ୍ୱ ଶୁଣାଇବାରେ ପ୍ରବୃତ୍ତ ହେଲେ । ରାଜଧର୍ମ, ଆପଦ୍ଧର୍ମ, ଏବଂ

ମୋକ୍ଷଧର୍ମ ଅନ୍ତ ଅବସ୍ଥାରେ ଶୁଣାଇଲେ । ମୋକ୍ଷଧର୍ମ ପରେ ଶାନ୍ତିପର୍ବ ସମାପ୍ତ ।

ଏହି ଶାନ୍ତିପର୍ବରେ ତିନି ସ୍ତର ଦେଖାଯାଏ । ପ୍ରଥମ ସ୍ତର ଏହାର କଙ୍କାଳ ଓ ତାହାପରେ ଯେ ଯେପରି ଧର୍ମ ବୁଝିଛନ୍ତି, ସେ ତାହା ଶାନ୍ତିପର୍ବଭୁକ୍ତ କରିଛନ୍ତି । ଏହାମଧ୍ୟରେ ଆମର ସମାଲୋଚନାର ଯୋଗ୍ୟ ଗୋଟିଏ ଗୁରୁତର କଥା ଅଛି । କେବଳ ଧାର୍ମିକକୁ ରାଜା କରିଲେ ଧର୍ମରାଜ୍ୟ ସଂସ୍ଥାପିତ ହେଲା ନାହିଁ । ଆଜି ଧାର୍ମିକ ଯୁଧିଷ୍ଠିର ରାଜା ଧର୍ମାତ୍ମା ; କାଲି ତାଙ୍କ ଉତ୍ତରାଧିକାରୀ ପାପାତ୍ମା ହୋଇ ପାରନ୍ତି । ଏଥି ନିମିତ୍ତ ଧର୍ମରାଜ୍ୟ ସଂସ୍ଥାପନ କରି, ତାହାର ରକ୍ଷା ନିମିତ୍ତ ଧର୍ମାନୁମତ ବ୍ୟବସ୍ଥା ବିଧିବଦ୍ଧ କରିବା ମଧ୍ୟ ବୃହତ୍ । ଋଣଜୟ, ରାଜ୍ୟ ସ୍ଥାପନର ପ୍ରଥମ କାର୍ଯ୍ୟ ମାତ୍ର ; ତାହାର ଶାସନ ନିମିତ୍ତ ବିଧିବ୍ୟବସ୍ଥା ( Legislation ) ପ୍ରଧାନ କାର୍ଯ୍ୟ । କୃଷ୍ଣ ସେଇ କାର୍ଯ୍ୟରେ ଭୀଷ୍ମଙ୍କୁ ନିଯୁକ୍ତ କଲେ । ଭୀଷ୍ମଙ୍କୁ ନିଯୁକ୍ତ କରିବାର ବିଶେଷ କାରଣ ଥିଲା ; ଆଦର୍ଶ ମାନଙ୍କ କେବଳ ତାହା ଲକ୍ଷ କରି ପାରନ୍ତି । କୃଷ୍ଣ ସେହି ସବୁ କାରଣ ନିଜେ ଭୀଷ୍ମଙ୍କୁ ବୁଝାଉଛନ୍ତି ।

"ଆପଣ ବୟୋବୃଦ୍ଧ ଏବଂ ଶାସ୍ତ୍ରଜ୍ଞାନ ଏବଂ ଶୁଦ୍ଧାଚାର ସମ୍ପନ୍ନ । ରାଜଧର୍ମ ଏବଂ ଅପରାପର ଧର୍ମ କିଛିହିଁ ଆପଣଙ୍କର ଅବିଦିତ ନାହିଁ । ଜନ୍ମାବଧି ଆପଣଙ୍କର କୌଣସି ଦୋଷ ମଧ୍ୟ ଲକ୍ଷିତ ହୋଇନାହିଁ, ନରପତିଗଣ ଆପଣଙ୍କୁ ସର୍ବ ଧର୍ମ ବେତ୍ତା ବୋଲି କୀର୍ତ୍ତନ କରି ଥାନ୍ତି । ଅତଏବ ପିତା ପରି ଆପଣ ଏଇ ଭୂପାଳଗଣଙ୍କୁ ନୀତି ଉପଦେଶ ପ୍ରଦାନ କରନ୍ତୁ । ଆପଣ ପ୍ରତିନିୟତ ଋଷି ଓ ଦେବଗଣର ଉପାସନା କରିଛନ୍ତି ।

ବର୍ତ୍ତମାନ ଏହି ଭୂପତିମାନେ ଆପଣଙ୍କ ନିକଟରୁ ଧର୍ମବୃତ୍ତାନ୍ତ ଶ୍ରବଣୋତ୍ସୁକ ହୋଇ ଅଛନ୍ତି । ଅତଏବ ଆପଣଙ୍କୁ ଅବଶ୍ୟ ବିଶେଷରୂପେ ସମସ୍ତେ ଧର୍ମକୀର୍ତ୍ତନ କରିବାକୁ ହେବ । ପଣ୍ଡିତ-ମାନଙ୍କ ମତରେ ଧର୍ମୋପଦେଶ ପ୍ରଦାନ କରିବା ବିଦ୍ୱାନ ବ୍ୟକ୍ତି-ରନ୍ଧି କର୍ତ୍ତବ୍ୟ ।”

ତାରପରେ ଅନୁଶାସନ ପର୍ବ । ଏଠାରେ ମଧ୍ୟ ଧର୍ମୋପ-ଦେଶ ; ଯୁଧିଷ୍ଠିର ଶ୍ରୋତା, ଭୀଷ୍ମ ବକ୍ତା । କେତେଗୁଡ଼ାଏ ବାଜେ କଥା ନେଇ, ଏହି ଅନୁଶାସନପର୍ବ ଗ୍ରଥିତ ହୋଇଅଛି । ସମୁଦାୟ ବୋଧହୁଏ ତୃତୀୟ ସ୍ତରର । ତନ୍ମଧ୍ୟରେ ଆମର ପ୍ରୟୋଜନୀୟ ବିଷୟ କିଛି ନାହିଁ ।

ପରିଶେଷରେ ଭୀଷ୍ମ ସ୍ୱର୍ଗାରୋହଣ କଲେ । ଏହା କେବଳ ପ୍ରଥମ ସ୍ତରର ।

## ଏକାଦଶ ପରିଚ୍ଛେଦ

## କାମଗୀତା

ଭୀଷ୍ମଙ୍କ ସ୍ୱର୍ଗାରୋହଣ ପରେ ଯୁଧିଷ୍ଠିର ପୁଣି କାନ୍ଦ ଲଗାଇ ଦେଲେ । ବାହାନା ନେଲେ ବନକୁ ଯିବ । ଅନେକେ ଅନେକ ପ୍ରକାର ବୁଝାଇଲେ । କିନ୍ତୁ କୃଷ୍ଣ ଏଥର ରୋଗର ପ୍ରକୃତ ଔଷଧ ପ୍ରୟୋଗ କଲେ । ସେପରି ରୋଗ ନିର୍ଣ୍ଣୟ କରିବା ଆଉ କାହାରି ସାଧ୍ୟ ନୁହେ । ଯୁଧିଷ୍ଠିରଙ୍କ ପ୍ରକୃତ ରୋଗ ଅହ-ଙ୍କାର । ଇଂରେଜି ବିଦ୍ୟାଳୟରେ ଶିଖାନ୍ତି pride ଶବ୍ଦ ଅହ-ଙ୍କାର ଶବ୍ଦର ପ୍ରତିଶବ୍ଦ । ବସ୍ତୁତଃ ତାହା ନୁହେ । ଅହଂକାର ଓ ମାତ୍ସର୍ଯ୍ୟ ପୃଥକ୍ ବସ୍ତୁ । “ମୁଁ ଏହି ସବୁ କରୁଅଛି,”

"ଏହା ମୋର," "ଏଇ ମୋର ସୁଖ," "ଏହା ମୋର ଦୁଃଖ," ଏହିରୂପ ଜ୍ଞାନ ଅହଂକାର । ଏହା ଯୁଧିଷ୍ଠିରଙ୍କ ଦୁଃଖର କାରଣ । ମୁଁ ପାପ କରିଅଛି—ମୋର ଏହି ଶୋକ ଉପସ୍ଥିତ ; ମତେ ନେଇ ସବୁ, ଅତଏବ ମୁଁ ବନକୁ ଯିବି, ଇତ୍ୟାଦି ଆମ୍ଭମାନଙ୍କ ଯୁଧିଷ୍ଠିରଙ୍କର ଏଇ କଥା କଠୋର ମୂଳରେ ଅଛି । ସେଇ ମୂଳରେ କୁଠାରଘାତ କରି ଯୁଧିଷ୍ଠିରଙ୍କୁ ଉଦ୍ଧାର କରିବା, ଏଇ ଧର୍ମବେତ୍ତୃଶ୍ରେଷ୍ଠଙ୍କ ଉଦ୍ଦେଶ୍ୟ । ଏଣୁ ସେ ପରୁଷ ବାକ୍ୟରେ ଯୁଧିଷ୍ଠିରଙ୍କୁ କହିଲେ । ଆପଣଙ୍କର ଏ ପର୍ଯ୍ୟନ୍ତ ଶତ୍ରୁ ଅବଶିଷ୍ଟ ଅଛି । ଆପଣଙ୍କର ଶରୀରର ଅଭ୍ୟନ୍ତରରେ ଯେଉଁ ଅହଙ୍କାରରୂପ ଦୁର୍ଜ୍ଜୟ ଶତ୍ରୁ ରହିଅଛି ତାହା କଣ ଆପଣ ନିରୀକ୍ଷଣ କରୁ ନାହାନ୍ତି ? ଏହା କହି ଶ୍ରୀକୃଷ୍ଣ, ତତ୍ତ୍ୱଜ୍ଞାନ ଦ୍ୱାରା ଅହଙ୍କାରକୁ ବିନଷ୍ଟ କରିବା ସମ୍ବନ୍ଧରେ ଗୋଟିଏ ରୂପକ ଯୁଧିଷ୍ଠିରଙ୍କୁ ଶୁଣାଇଲେ । ତାରପରେ ସେ ଯୁଧିଷ୍ଠିରଙ୍କୁ ଯେଉଁ ଅତ୍ୟୁତ୍କୃଷ୍ଟ ଜ୍ଞାନୋପଦେଶ ଦେଲେ, ତାହା ସବିସ୍ତାରେ ଉଦ୍ଧୃତ କରୁଅଛି । ଯେଉଁ ନିଷ୍କାମ ଧର୍ମ ଆମେ ଗୀତାରେ ପଢ଼ୁ, ତାହା ଏଠାରେ ବି ଅଛି, ଏଇରୂପ ଅତି ମହତ୍ ଧର୍ମୋପଦେଶଦ୍ୱାରା କୃଷ୍ଣଚରିତ୍ର ବିଶେଷ ସ୍ଫୂର୍ତ୍ତି ପାଏ ।

"ହେ ଧର୍ମରାଜ ! ବ୍ୟାଧି ଦୁଇ ପ୍ରକାର, ଶାରୀରିକ ଓ ମାନସିକ । ସେଇ ଦୁଇ ପ୍ରକାର ବ୍ୟାଧି ପରସ୍ପରର ସାହାଯ୍ୟରେ ପରସ୍ପର ସମ୍ଭୂତ ହୋଇ ଥାନ୍ତି । ଶରୀରରେ ଯେଉଁ ବ୍ୟାଧି ଉପସ୍ଥିତ ହୁଏ, ତାହାକୁ ଶାରୀରିକ ଏବଂ ମନ ମଧ୍ୟରେ ଯେଉଁ ପୀଡ଼ା ଉପସ୍ଥିତ ହୁଏ ତାକୁ ମାନସିକ ବ୍ୟାଧି କୁହାଯାଏ । କଫ ପିତ୍ତ ଓ ବାୟୁ ଏଇ ତିନୋଟି ଶରୀରର ଗୁଣ, ଯେତେବେଳେ ଏଇ ତିନିଗୁଣ ସମଭାବରେ ଅବସ୍ଥାନ କରେ ସେତେବେଳେ

ଶରୀରକୁ ସୁସ୍ଥ, ଏବଂ ଯେତେବେଳେ ସେହି ଗୁଣସମୂହ ମଧ୍ୟରେ ବୈଷମ୍ୟ ଉପସ୍ଥିତ ହୁଏ ସେତେବେଳେ ଶରୀରକୁ ଅସୁସ୍ଥ କୁହାଯାଏ । ପିତ୍ତର ଆଧିକ୍ୟ ହେଲେ କଫର ହ୍ରାସ ଓ କଫର ଆଧିକ୍ୟ ହେଲେ ପିତ୍ତର ହ୍ରାସ ହୋଇଥାଏ । ଶରୀର ପରି ଆତ୍ମାର ମଧ୍ୟ ତିନୋଟି ଗୁଣ ଅଛି । ସେହି ତିନୋଟି ଗୁଣର ନାମ ସତ୍ତ୍ୱ, ରଜ ଓ ତମ । ସେହି ଗୁଣସମୂହ ସମଭାବରେ ଅବସ୍ଥାନ କଲେ ଆତ୍ମାର ସ୍ୱାସ୍ଥ୍ୟଲାଭ ହୁଏ । ସେହି ଗୁଣସମୂହ ମଧ୍ୟରୁ ଗୋଟିକର ଆଧିକ୍ୟ ହେଲେ ଅନ୍ୟର ହ୍ରାସ ହୁଏ । ହର୍ଷ ଉପସ୍ଥିତ ହେଲେ ଶୋକ ଏବଂ ଶୋକ ଉପସ୍ଥିତ ହେଲେ ହର୍ଷ ତିରୋହିତ ହୋଇଯାଏ । ଦୁଃଖ ସମୟରେ କି କେହି ସୁଖାନୁଭବ କରେ ଏବଂ ସୁଖ ସମୟରେ କି କାହାର ଦୁଃଖାନୁଭବ ହୁଏ ? ଯାହା ହେଉ, ବର୍ତ୍ତମାନ ସୁଖ ଦୁଃଖ ଉଭୟକୁ ସ୍ମରଣ କରିବା ଆପଣଙ୍କ କର୍ତ୍ତବ୍ୟ ନୁହେ । ସୁଖ ଦୁଃଖାତୀତ ପରବ୍ରହ୍ମଙ୍କୁ ସ୍ମରଣ କରିବାହିଁ ଆପଣଙ୍କର ଶ୍ରେୟ । × × ×

ପୂର୍ବେ ଭୀଷ୍ମ ଦ୍ରୋଣାଦିଙ୍କ ସହିତ ଆପଣଙ୍କର ଯେ ଘୋରତର ଯୁଦ୍ଧ ଉପସ୍ଥିତ ହୋଇଥିଲା, ବର୍ତ୍ତମାନ ଏକମାତ୍ର ଅହଙ୍କାର ସହିତ ତାହା ଅପେକ୍ଷା ଅଧିକ ଭୀଷଣ ସଂଗ୍ରାମ ସମୁପସ୍ଥିତ ହୋଇଅଛି । ସେଇ ଯୁଦ୍ଧରେ ଅଗ୍ରମୁଖୀନ ହେବା ଆପଣଙ୍କର ଅବଶ୍ୟ କର୍ତ୍ତବ୍ୟ । ଯୋଗ ଓ ତଦୁପଯୋଗୀ କାର୍ଯ୍ୟ ସମୁଦାୟ ଅବଲମ୍ବନ କରିଲେହିଁ ଏ ଯୁଦ୍ଧରେ ଜୟଲାଭ କରିପାରିବେ । ଏହି ଯୁଦ୍ଧରେ ଶରନିକର, ଭୃତ୍ୟ ଓ ବନ୍ଧୁବର୍ଗର କିଛିମାତ୍ର ପ୍ରୟୋଜନ ନାହିଁ; ଏକମାତ୍ର ମନକୁ ସହାୟ କରି ସେଇ ସଂଗ୍ରାମରେ ପ୍ରବୃତ୍ତ ହେବାକୁ ହେବ । ସେହି ଯୁଦ୍ଧରେ ଜୟଲାଭ କରି ନ ପାରିଲେ ଦୁଃଖର ପରିସୀମା ରହିବ ନାହିଁ । ଅତଏବ ଆପଣ ମୋର ଏଇ ଉପଦେଶାନୁସାରେ ଅଚିରାତ୍ ଅହଙ୍କାରକୁ

ଚିତ୍ତଜୟ ପୂର୍ବକ ଶୋକ ପରିତ୍ୟାଗ କରି ସୁସ୍ଥଚିତ୍ତରେ ପୈତୃକ ରାଜ୍ୟ ପ୍ରତିପାଳନ କରନ୍ତୁ ।

"ହେ ଧର୍ମରାଜ କେବଳ ରାଜ୍ୟାଦି ପରିତ୍ୟାଗ କରି ସିଦ୍ଧି ଲାଭ କରିବା କଦାପି ସମ୍ଭବପର ନୁହେ । ଇନ୍ଦ୍ରିୟ ସମୁଦାୟକୁ ପରାଜୟ କରି ପାରିଲେ ମଧ୍ୟ ସିଦ୍ଧିଲବ୍ଧ ହୁଏ କି ନା ସନ୍ଦେହ । ଯେଉଁମାନେ ରାଜ୍ୟାଦି ବିଷୟ ସମୁଦାୟ ପରିତ୍ୟାଗ କରି ମଧ୍ୟ ମନେ ମନେ ବିଷୟଭୋଗର ବାସନା କରନ୍ତି, ସେମାନଙ୍କର ଧର୍ମ ଓ ସୁଖ ତୁମର ଶତ୍ରୁଗଣ ଲାଭ କରନ୍ତୁ । ମମତା ସଂସାର—ପ୍ରାପ୍ତିର ଓ ନିର୍ମମତା ବ୍ରହ୍ମଲାଭର କାରଣ ବୋଲି ନିର୍ଦ୍ଦିଷ୍ଟ ହୋଇଥାଏ । ସେହି ବିରୁଦ୍ଧ ଧର୍ମାବଲମ୍ବୀ ମମତା ଓ ନିର୍ମମତା ଲୋକସମୁଦାୟର ଚିତ୍ତରେ ଅଲକ୍ଷିତଭାବରେ ଅବସ୍ଥାନପୂର୍ବକ ପରସ୍ପର ପରସ୍ପରକୁ ଆକ୍ରମଣ ଓ ପରାଜୟ କରିଥାନ୍ତି । ଯେଉଁବ୍ୟକ୍ତି ଈଶ୍ୱରଙ୍କ ଅବିନଶ୍ୱରତାନିବନ୍ଧନ ଜଗତର ଅସ୍ତିତ୍ୱ ଅବିନଶ୍ୱର ବୋଲି ବିଶ୍ୱାସ କରନ୍ତି, ପ୍ରାଣିଗଣର ଦେହନାଶ କରିଲେ ମଧ୍ୟ ତାଙ୍କୁ ହିଂସାପାପରେ ଲିପ୍ତ ହେବାକୁ ହୁଏ ନାହିଁ, ଯେଉଁ ବ୍ୟକ୍ତି ସ୍ଥାବରଜଙ୍ଗମସଂକୁଳିତ ସମୁଦାୟ ଜଗତର ଆଧିପତ୍ୟ ଲାଭକରି ମଧ୍ୟ ମମତା ପରିତ୍ୟାଗ କରି ପାରନ୍ତି, ତାଙ୍କୁ କେବେହେଁ ସଂସାରପାପରେ ବଦ୍ଧ ହେବାକୁ ହୁଏ ନାହିଁ । ଆଉ ଯେଉଁ ବ୍ୟକ୍ତି ଅରଣ୍ୟରେ ଫଳମୂଳାଦିଦ୍ୱାରା ଜୀବିକାନିର୍ବାହ କରି ସୁଦ୍ଧା ବିଷୟବାସନା ପରିତ୍ୟାଗ କରି ପାରନ୍ତି ନାହିଁ, ତାଙ୍କୁ ନିଶ୍ଚୟ ସଂସାରଜାଲରେ ଜଡ଼ିତ ହେବାକୁ ହୁଏ । ଅତଏବ ଇନ୍ଦ୍ରିୟ ଓ ବିଷୟ ସମୁଦାୟ ମାୟାମୟ ବୋଲି ନିଶ୍ଚୟ କରିବା ତୁମର ଅବଶ୍ୟ କର୍ତ୍ତବ୍ୟ । ଯେଉଁ ବ୍ୟକ୍ତି ଏଇ ସମୁଦାୟ ପ୍ରତି କିଞ୍ଚିନ୍ମାତ୍ର ମମତା ନ କରନ୍ତି; ସେ ନିଶ୍ଚୟ ସଂସାରରୁ ମୁକ୍ତିଲାଭରେ

ସମର୍ଥ ହୁଅନ୍ତି । କାମପରତନ୍ତ୍ର ମୂଢ଼ ବ୍ୟକ୍ତିମାନେ କଦାପି ପ୍ରଶଂସାର ଆସ୍ପଦ ହୋଇ ପାରନ୍ତି ନାହିଁ । କାମନା ମନରୁ ସମୁତ୍ପନ୍ନ ହୁଏ; ତାହା ସମୁଦାୟ ପ୍ରବୃତ୍ତିର ମୂଳ କାରଣ । ଯେଉଁ ସବୁ ମହାତ୍ମା ବହୁଜନ୍ମର ଅଭ୍ୟାସବଶତଃ କାମନାକୁ ଅଧର୍ମରୂପେ ପରିଜ୍ଞାତ ହୋଇ, ଫଳଲାଭର ବାସନା ସହକାରେ ଦାନ, ବେଦାଧ୍ୟୟନ, ତପସ୍ୟା, ବ୍ରତ, ଯଜ୍ଞ, ବିବିଧ ନିୟମ ଧ୍ୟାନମାର୍ଗ ଓ ଯୋଗମାର୍ଗ ଆଶ୍ରୟ ନ କରନ୍ତି, ସେଇ ମାନେହିଁ ଏକକାଳରେ କାମନାକୁ ପରାଜୟ କରିବାକୁ ସମର୍ଥ ହୁଅନ୍ତି । କାମ ନିଗ୍ରହ ଯଥାର୍ଥ ଧର୍ମ ଓ ମୋକ୍ଷର ବୀଜ ସ୍ୱରୂପ ; ସନ୍ଦେହ ନାହିଁ ।

ଅତଃପର ପୁରାବିତ୍ ପଣ୍ଡିତମାନେ ଯେଉଁ କାମଗୀତା କୀର୍ତ୍ତନ କରି ଥାନ୍ତି, ମୁଁ ବର୍ତ୍ତମାନ ତୁମ ନିକଟରେ ତାହା କହୁ-ଅଛି, ଶ୍ରବଣ କର । କାମନା ସ୍ୱୟଂ କହୁଅଛି ଯେ, ନିର୍ମମତା ଓ ଯୋଗାଭ୍ୟାସ ଭିନ୍ନ କେହି ଦେହଲେ ମତେ ପରାଜୟ କରିବାକୁ ସମର୍ଥ ହୁଏ ନାହିଁ । ଯେଉଁ ବ୍ୟକ୍ତି ଜପାଦି କାର୍ଯ୍ୟଦ୍ୱାରା ମତେ ଜୟ କରିବାକୁ ଚେଷ୍ଟା କରେ, ମୁଁ ତାହା ମନରେ ଅଭିମାନ-ରୂପେ ଆବିର୍ଭୂତ ହୋଇ ତାହାର କାର୍ଯ୍ୟ ବିଫଳ କରି ଥାଏ । ଯେଉଁବ୍ୟକ୍ତି ବିବିଧ ଯଜ୍ଞାନୁଷ୍ଠାନ ଦ୍ୱାରା ମତେ ପରାଜିତ କରି-ବାକୁ ଚେଷ୍ଟା କରେ, ମୁଁ ତାହା ମନରେ ଜଙ୍ଗମ ମଧ୍ୟଗତ ଜୀବାତ୍ମା ପରି ବ୍ୟକ୍ତରୂପରେ ଉଦିତ ହୁଏ । ଯେଉଁବ୍ୟକ୍ତି ବେଦବେଦାନ୍ତ ସମାଲୋଚନ ଦ୍ୱାରା ମତେ ଶାସନ କରିବାକୁ ଯତ୍ନବାନ୍ ହୁଏ, ମୁଁ ତାହାର ମନରେ ସ୍ଥାବରାନ୍ତର୍ଗତ ଜୀବାତ୍ମା ପରି ଅବ୍ୟକ୍ତରୂପେ ଅବସ୍ଥାନ କରେ । ଯେଉଁବ୍ୟକ୍ତି ଧୈର୍ଯ୍ୟ ଦ୍ୱାରା ମତେ ଜୟ କରିବାକୁ ଚେଷ୍ଟା କରେ, ମୁଁ କଦାପି ତାର ମନରୁ ଅପନୀତ ହୁଏ ନାହିଁ । ଯେଉଁବ୍ୟକ୍ତି ତପସ୍ୟା ଦ୍ୱାରା ମତେ ପରାଜୟ କରି

ବାକୁ ଯତ୍ନ କରେ ମୁଁ ତାହାର ତପସ୍ୟାରେ ପ୍ରାଦୁର୍ଭୂତ ହୁଏ ଏବଂ ଯେଉଁ ବ୍ୟକ୍ତି ମୋକ୍ଷାର୍ଥୀ ହୋଇ ମତେ ଜୟ କରିବାକୁ ବାସନା କରେ, ମୁଁ ତାକୁ ଲକ୍ଷ କରି ନୃତ୍ୟ ଓ ଉପହାସ କରି ଥାଏ । ପଣ୍ଡିତମାନେ ମତେ ସର୍ବଭୂତରେ ଅବଧ୍ୟ ଓ ସନାତନ ବୋଲି ନିର୍ଦ୍ଦେଶ କରି ଥାନ୍ତି ।

"ହେ ଧର୍ମରାଜ ! ଏଇ ମୁଁ ଆପଣଙ୍କୁ କାମଗୀତା ସବିସ୍ତାର କୀର୍ତ୍ତନ କଲି । ଅତଏବ କାମନାକୁ ପରାଜୟ କରିବା ନିତାନ୍ତ ଦୁଃସାଧ୍ୟ । ଆପଣ ବିଧିପୂର୍ବକ ଅଶ୍ୱମେଧ ଓ ଅନାନ୍ୟ ସୁସମୃଦ୍ଧ ଯଜ୍ଞର ଅନୁଷ୍ଠାନ କରି କାମନାକୁ ଧର୍ମବିଷୟରେ ନୀତ କରନ୍ତୁ, ବାରମ୍ବାର ବନ୍ଧୁବିୟୋଗରେ ଅଭିଭୂତ ହେବା ଆପଣଙ୍କର ନିତାନ୍ତ ଅନୁଚିତ । ଆପଣ ଅନୁତାପ ଦ୍ୱାରା କଦାପି ସେମାନଙ୍କର ପୁନର୍ଦର୍ଶନ ଲାଭରେ ସମର୍ଥ ହେବେ ନାହିଁ, ଅତଏବ ବର୍ତ୍ତମାନ ମହାସମୋରୋହରେ ସୁସମୃଦ୍ଧ ଯଜ୍ଞ ସମୂଦାୟର ଅନୁଷ୍ଠାନ କରନ୍ତୁ । ତାହା ହେଲେ ଇହଲୋକରେ ଅତୁଳ କୀର୍ତ୍ତି ଓ ପରଲୋକରେ ଉତ୍କୃଷ୍ଟ ଗତି ଲାଭ କରିବାକୁ ସମର୍ଥ ହେବେ ।"

## ଦ୍ୱାଦଶ ପରିଚ୍ଛେଦ

## କୃଷ୍ଣ ପ୍ରୟାଣ

ଧର୍ମରାଜ୍ୟ ସଂସ୍ଥାପିତ ହେଲା; ଧର୍ମ ପ୍ରଚରିତ ହୋଇଅଛି । ପାଣ୍ଡବମାନଙ୍କ ସଙ୍ଗେ କୃଷ୍ଣଙ୍କ ନିମିତ୍ତ ଏ ଗ୍ରନ୍ଥର ସମ୍ବନ୍ଧ; ମହାଭାରତରେ ଯେ ନିମିତ୍ତ କୃଷ୍ଣଙ୍କ ଦେଖାପାଉ, ତାହା ଏବୁ ଶେଷହେଲା । ଏହିଠାରେ କୃଷ୍ଣଙ୍କ ମହାଭାରତରୁ ଅନ୍ତର୍ହିତ ହେବା ଉଚିତ । କିନ୍ତୁ ରଚନାକଣ୍ଡୂତିପୀଡ଼ିତମାନେ ଏତେ ସହଜରେ କୃଷ୍ଣଙ୍କୁ

ଛାଡ଼ିବାର ପାଶ ନାହାନ୍ତି । ଏହାପରେ ଅର୍ଜ୍ଜୁନଙ୍କ ମୁଖରେ ସେମାନେ ଗୋଟାଏ ଅପ୍ରାସଙ୍ଗିକ, ଅଭୁତ କଥା ଉଠାଇଲେ । ସେ କହିଲେ, ତୁମେ ଯୁଦ୍ଧସମୟରେ ମତେ ଯେଉଁ ଧର୍ମୋପଦେଶ ଦେଇଥିଲ, ସବୁ ଭୁଲି ଯାଇଛି । ପୁଣି କୁହ । କୃଷ୍ଣ କହିଲେ, କଥା ବଡ଼ମନ୍ଦ ମୋର ଆଉ ସେ ସବୁ କଥା ମନେ ହେବ ନାହିଁ । ମୁଁ ସେତେ-ବେଳେ ଯୋଗଯୁକ୍ତ ହୋଇ ସେ ଉପଦେଶ ଦେଇଥିଲି । ଆଉ ତୁମେ ମଧ୍ୟ ବଡ ନିର୍ବୋଧ ଓ ଶ୍ରଦ୍ଧାଶୂନ୍ୟ; ତୁମକୁ ଆଉ କିଛି କହିବାକୁ ଇଚ୍ଛା କରୁନାହିଁ । ତଥାପି ଗୋଟିଏ ପୁରାତନ ଇତିହାସ ଶୁଣାଉଅଛି ।

କୃଷ୍ଣ ସେହି ଐତିହାସୋକ୍ତ ବ୍ୟକ୍ତିକୁ ଅବଲମ୍ବନ କରି, ଅର୍ଜ୍ଜୁନଙ୍କୁ ପୁଣି କିଛି ତତ୍ତ୍ୱଜ୍ଞାନ ଶୁଣାଇଲେ । ପୂର୍ବେ ଯାହା ଶୁଣାଇ ଥିଲେ, ତାହା ଗୀତା ବୋଲି ପ୍ରସିଦ୍ଧ । ବର୍ତ୍ତମାନ ଯାହା ଶୁଣାଇଲେ, ଗ୍ରନ୍ଥକାର ତାର ନାମ ରଖିଛନ୍ତି "ଅନୁଗୀତା" । ଏହାର ଏକ ଭାଗର ନାମ "ବ୍ରାହ୍ମଣ ଗୀତା" ।

ଭଗବଦ୍‌ଗୀତା, ପ୍ରଜାଗର, ସନତ୍‌ସୁଜାତୀୟ, ମାର୍କଣ୍ଡେୟ ସମସ୍ୟା, ଓ ଏହି ଅନୁଗୀତା ପ୍ରଭୃତି ଅନେକ ଗୁଡ଼ିଏ ଧର୍ମସମ୍ବନ୍ଧୀୟ ଗ୍ରନ୍ଥ ମହାଭାରତ ମଧ୍ୟରେ ସନ୍ନିବିଷ୍ଟ ହୋଇ ବର୍ତ୍ତମାନ ମହା-ଭାରତର ଅଂଶ ବୋଲି ପ୍ରଚଳିତ । ଏହି ସବୁ ଗ୍ରନ୍ଥ ମଧ୍ୟରେ ସର୍ବଶ୍ରେଷ୍ଠ ଗୀତା, କିନ୍ତୁ ଅନ୍ୟ ଗୁଡ଼ିକରେ ମଧ୍ୟ ଅନେକ ସାର-ଗର୍ଭ କଥା ମିଳେ । ଅନୁଗୀତା ମଧ୍ୟ ଉତ୍ତମ ଗ୍ରନ୍ଥ। "ଉଚ୍ଚ ମୋକ୍ଷ ମୂଳକ," ଏହାକୁ ତାଙ୍କର "Sacred Books of the East" ନାମକ ଗ୍ରନ୍ଥାବଳୀ ମଧ୍ୟରେ ସ୍ଥାନ ଦେଇଛନ୍ତି । ଶ୍ରୀଯୁକ୍ତ କାଶିନାଥ ତ୍ର୍ୟମ୍ବକ ତେଲଙ୍ଗ, ବର୍ତ୍ତମାନ ଯେ ବୋମ୍ବାଇ ହାଇକୋର୍ଟର ଜଜ୍, ସେ ଏହା ଇଂରାଜରେ ଅନୁବାଦିତ କରିଛନ୍ତି । କିନ୍ତୁ ଗ୍ରନ୍ଥ ଯେପରି

ହେଉ, ସେଥିରେ ଆମର କିଛି ପ୍ରୟୋଜନ ନାହିଁ । ଗ୍ରନ୍ଥ ଯେପରି ହେଉ, ଏହା କୃଷ୍ଣୋକ୍ତ ନୁହେ । ଗ୍ରନ୍ଥକାର ବା ଅପର କେହି, ଯେରୂପ ଅବତାରଣା କରି, ଏହାକୁ କୃଷ୍ଣଙ୍କ ମୁଖରେ ଉକ୍ତ କରି-ଛନ୍ତି, ସେଥିରୁ ବୁଝାଯାଏ ଯେ, ଏହା କୃଷ୍ଣୋକ୍ତି ନୁହେ; ଜୋଡ଼ିବା ଦାଗ ବଡ ସ୍ପଷ୍ଟ, କଷ୍ଟକରି ମଧ୍ୟ ଜୋଡ଼ ଲଗିନାହିଁ । ଗୀତୋକ୍ତ ଧର୍ମ ସଙ୍ଗେ ଅନୁଗୀତୋକ୍ତ ଧର୍ମର ଏରୂପ କୌଣସି ସାଦୃଶ୍ୟ ନାହିଁ ତା ହେଲେ ଏହାକୁ ଗୀତାର ଉକ୍ତ ବିବେଚନା କରିଯାଏ ନା । ଶ୍ରୀଯୁକ୍ତ କାଶିନାଥ ତ୍ର୍ୟମ୍ବକ, ନିଜକୃତ ଅନୁବାଦର ଯେଉଁ ଧର୍ମ ଉପକ୍ରମଣିକା ଲେଖିଛନ୍ତି, ସେଥିରେ ସନ୍ତୋଷଜନକ ପ୍ରମାଣ ପ୍ରୟୋଗ ଦ୍ୱାରା ଏଇ ସିଦ୍ଧାନ୍ତରେ ଉପସ୍ଥିତ ହୋଇଛନ୍ତି ଯେ, ଅନୁଗୀତା ଗୀତାର ଅନେକ ଶତାବ୍ଦୀପରେ ରଚିତ ହୋଇଥିଲା । ସେ ପ୍ରମାଣର ବିସ୍ତାରିତ ଆଲୋଚନାର ଆମର ପ୍ରୟୋଜନ ନାହିଁ । କୃଷ୍ଣଚରିତର କୌଣସି ଅଂଶ ଅନୁଗୀତା ଉପରେ ନିର୍ଭର କରେନାହିଁ । ତେବେ, ଅନୁଗୀତା ଓ ବ୍ରାହ୍ମଣ ଗୀତା ( ବା ବ୍ରହ୍ମଗୀତା ) ଯେ ପ୍ରକୃତ ପକ୍ଷରେ ପ୍ରକ୍ଷିପ୍ତ, ତାହାର ପ୍ରମାଣାର୍ଥ ଏତିକ କହିଲେ ଯଥେଷ୍ଟ ହେବ ଯେ ପର୍ବସଂଗ୍ରହାଧ୍ୟାୟରେ ଏହାର କିଛିମାତ୍ର ପ୍ରସଙ୍ଗ ନାହିଁ । ଅର୍ଜୁନଙ୍କୁ ଉପଦେଷ୍ଟା କରି, କୃଷ୍ଣ ଅର୍ଜୁନ ଓ ଯୁଧି-ଷ୍ଠିରାଦିଙ୍କ ନିକଟରୁ ବିଦାୟ ଗ୍ରହଣ ପୂର୍ବକ ଦ୍ୱାରକା ଯାତ୍ରା କଲେ । ଏହି ବିଦାୟ ମାନବ ପ୍ରକୃତି ସୁଲଭ ସ୍ନେହାଭିବ୍ୟକ୍ତିରେ ପରିପୂର୍ଣ୍ଣ । କୃଷ୍ଣଙ୍କ ମାନବିକତାର ଆମେ ପୂର୍ବେ ଅନେକ ଉଦାହରଣ ଦେଇଅଛୁ । ଅତଏବ ଏହାର ସବିସ୍ତାର ବର୍ଣ୍ଣନ ନିଷ୍ପ୍ରୟୋଜନ ।

ପଥ ମଧ୍ୟରେ ଉତଙ୍କ ମୁନିଙ୍କ ସହିତ କୃଷ୍ଣଙ୍କ ସାକ୍ଷାତ ବର୍ଣ୍ଣିତ ହୋଇଅଛି । କୃଷ୍ଣ ଯୁଦ୍ଧ ନିବାରଣ କରି ନାହାନ୍ତି ବୋଲି ଉତଙ୍କ ମୁନି ତାଙ୍କୁ ଶାପ ଦେବାକୁ ପ୍ରସ୍ତୁତ । କୃଷ୍ଣ କହିଲେ ଶାପ ଦିଅ-

ନାହିଁ, ତେବେ ତୁମର ଚିତ୍ତ ସୁସ୍ଥ ହେବ, ମୁଁ ସନ୍ଧିସ୍ଥାପନ କରିବାର ଚେଷ୍ଟା କରିଥିଲି, ଆଜ ମୁଁ ଜଗଦୀଶ୍ୱର । ସେତେବେଳେ ଉତ୍ତଙ୍କ ତାଙ୍କୁ ପ୍ରଣାମ କରି ସ୍ତବ କଲେ । କୃଷ୍ଣଙ୍କ ବିଶ୍ୱରୂପ ଦେଖିବାକୁ ଚାହିଲେ; କୃଷ୍ଣ ମଧ୍ୟ ବିଶ୍ୱରୂପ ଦେଖାଇଲେ । ତାହାପରେ ଜୋର କରି ଉତ୍ତଙ୍କଙ୍କୁ ଅଭିଳଷିତ ବରଦାନ କଲେ । ତାର ପରେ ଚଣ୍ଡାଳ ଆସିଲା, କୁକୁର ଆସିଲା, ଚଣ୍ଡାଳ ଉତ୍ତଙ୍କଙ୍କୁ କୁକୁରର ପ୍ରସ୍ରାବ ଖାଇବାକୁ କହିଲା, ଇତ୍ୟାଦି, ଇତ୍ୟାଦି ନାନାରୂପ ବୀଭତ୍ସ ବ୍ୟାପାର ଅଛି । ଏଇ ଉତ୍ତଙ୍କ ସମାଗମ ବୃତ୍ତାନ୍ତ ମହାଭାରତର ପର୍ବସଂଗ୍ରହାଧ୍ୟାୟରେ ନାହିଁ ।

ସୁତରାଂ ଏହା ମହାଭାରତର ଅଂଶ ନୁହେ, ଏଣୁ ଏ ସମ୍ବନ୍ଧରେ ଆମର କିଛି କହିବାର ପ୍ରୟୋଜନ ନାହିଁ । ସ୍ପଷ୍ଟତଃ ଏଠାରେ ତୃତୀୟସ୍ତର ଦେଖାଯାଏ ।

ଦ୍ୱାରକାକୁ ଯାଇ କୃଷ୍ଣ ବନ୍ଧୁ ବାନ୍ଧବଙ୍କ ସଙ୍ଗେ ମିଳିତ ହେଲେ, ବସୁଦେବ ତାଙ୍କ ନିକଟରୁ ଯୁଦ୍ଧବୃତ୍ତାନ୍ତ ଶୁଣିବାକୁ ଇଚ୍ଛା କଲେ । କୃଷ୍ଣ ଯୁଦ୍ଧ ବୃତ୍ତାନ୍ତ ପିତାଙ୍କୁ ଯାହା ଶୁଣାଇଲେ, ତାହା ସଂକ୍ଷିପ୍ତ, ଅତ୍ୟୁକ୍ତିଶୂନ୍ୟ, ଏବଂ କୌଣସି ପ୍ରକାର ଅନୈସର୍ଗିକ ଘଟନାର ପ୍ରସଙ୍ଗଦୋଷରହିତ । ଅଥଚ ସମସ୍ତ ସ୍ଥୂଳ ଘଟଣା ପ୍ରକାଶିତ କଲେ । କେବଳ ଅଭିମନ୍ୟୁବଧ ଗୋପନ କଲେ । କିନ୍ତୁ ସୁଭଦ୍ରା ତାଙ୍କ ସଙ୍ଗେ ଦ୍ୱାରକା ଯାଇଥିଲେ, ସୁଭଦ୍ରା ଅଭିମନ୍ୟୁ-ବଧର ପ୍ରସଙ୍ଗ ସ୍ୱୟଂ ଉତ୍‌ଥାପନ କଲେ । ସେତେବେଳେ କୃଷ୍ଣ ସେ ବୃତ୍ତାନ୍ତ ମଧ୍ୟ ସବିସ୍ତାର କହିଲେ । ଏଣେ ଯୁଧିଷ୍ଠିର, କୃଷ୍ଣଙ୍କ ବିଦାୟକାଳରେ ତାଙ୍କୁ ଅନୁରୋଧ କରିଥିଲେ ଯେ, ଅଶ୍ୱମେଧ ଯଜ୍ଞ କାଳରେ ପୁନର୍ବାର ଆସିବାକୁ ହେବ । ବର୍ତ୍ତମାନ ସେଇ ଯଜ୍ଞର ସମୟ ଉପସ୍ଥିତ । ଅତଏବ ସେ

ଯାଦବଗଣ-ପରିବୃତ ହୋଇ ପୁନର୍ବାର ହସ୍ତିନାକୁ ଗମନ କଲେ ।

କୃଷ୍ଣ ସେଠାକୁ ଆସିଲେ, ଅଭିମନ୍ୟୁ ପତ୍ନୀ ଉତ୍ତରା ଗୋଟିଏ ମୃତ ପୁତ୍ର ପ୍ରସବ କଲେ । କୃଷ୍ଣ ତାକୁ ପୁନର୍ଜ୍ଜୀବିତ କଲେ । କିନ୍ତୁ ଏଥିରୁ ଏପରି ସିଦ୍ଧାନ୍ତ କରା ଯାଏ ନାହିଁ ଯେ, କୃଷ୍ଣ ଐଶୀ ଶକ୍ତିର ପ୍ରୟୋଗ ଦ୍ୱାରା ଏହି କାର୍ଯ୍ୟ ସମ୍ପାଦନ କଲେ । ବର୍ତ୍ତମାନର ଅନେକ ଡ଼ାକ୍ତର ମଧ୍ୟ ମୃତ ସନ୍ତାନ ଭୂମିଷ୍ଠ ହେଲେ ତାଙ୍କୁ ପୁନର୍ଜ୍ଜୀବିତ କରି ପାରନ୍ତି ଓ କରି ଥାନ୍ତି ଏବଂ କିରୂପେ କରିପାରନ୍ତି, ତାହା ଆମେ ଅନେକେହି ଜାଣୁ । ଏହା ଦ୍ୱାରା କେବଳ ଏତିକି ପ୍ରମାଣିତ ହେଉଅଛି ଯେ, ଯାହା ସେ ସମୟର ଲୋକ ଆଉକେହି ଜାଣି ନ ଥିଲେ, କୃଷ୍ଣ ତାହା ଜାଣିଥିଲେ । ସେ ଆଦର୍ଶ ମନୁଷ୍ୟ, ଏଣୁ ସର୍ବପ୍ରକାର ବିଦ୍ୟା ଓ ଜ୍ଞାନ ତାଙ୍କର ଅଧିକୃତ ହୋଇଥିଲା ।

ତାର ପରେ ନିର୍ବିଘ୍ନରେ ଯଜ୍ଞ ସମାପ୍ତ ହେଲା । କୃଷ୍ଣ ମଧ୍ୟ ଦ୍ୱାରକାକୁ ପୁନରାଗମନ କଲେ । ତାର ପରେ ଆଉ ପାଣ୍ଡବ-ମାନଙ୍କ ସହିତ ତାଙ୍କର ସାକ୍ଷାତ ହୋଇ ନାହିଁ ।

—•••—

# ସପ୍ତମ ଖଣ୍ଡ

## ପ୍ରଭାସ

ଯୋଽସୌ ଯୁଗସହସ୍ରାନ୍ତେ ପ୍ରଯାତ୍ୟାର୍ଚ୍ଚିର୍ବିଭାବସୁଃ ।
ସଂଭକ୍ଷୟସ୍ତି ଭୂତାନି ତସ୍ମୈ ଘୋରାତ୍ମନେ ନମଃ ॥
ଶାନ୍ତିପର୍ବ, ୪୭ ଅଧ୍ୟାୟଃ ।

## ପ୍ରଥମ ପରିଚ୍ଛେଦ

## ଯଦୁବଂଶଧ୍ୱଂସ

ତାହାପରେ ଆଶ୍ରମବାସିକ ପର୍ବ । ଏହା ସହିତ କୃଷ୍ଣଙ୍କର କୌଣସି ସମ୍ବନ୍ଧ ନାହିଁ । ତାହାପରେ, ଅତି ଉପାଦେୟ ମୌଷଳ ପର୍ବ । ଏଥିରେ ସମସ୍ତ ଯଦୁବଂଶର ନିଃଶେଷ ଧ୍ୱଂସ ଓ କୃଷ୍ଣ ବଳରାମଙ୍କ ଦେହତ୍ୟାଗ କଥିତ ହୋଇଅଛି । ଯଦୁବଂଶୀୟମାନେ ପରସ୍ପରକୁ ନିହତ କରିଥିଲେ । କୃଷ୍ଣ ନିଜେ ଏହି ମହାଭୟାନକ ବ୍ୟାପାର ନିବାରଣର କୌଣସି ଉପାୟ କରି ନାହାନ୍ତି, ବରଂ ଅନେକ ଯାଦବ ତାଙ୍କ ହସ୍ତରେ ନିଧନ ପ୍ରାପ୍ତ ହୋଇଥିଲେ, ଏହିରୂପ କଥିତ ହୋଇଅଛି ।

ସେ ବୃତ୍ତାନ୍ତ ଏହିପରି ବର୍ଣ୍ଣିତ ହୋଇଅଛି : ଗାନ୍ଧାରୀ

ଅଥିତ ଷଟ୍‌ତ୍ରିଂଶତ୍ ବର୍ଷ ଅତୀତ ହୋଇଅଛି । ଯାଦବମାନେ ଅତ୍ୟନ୍ତ ଦୁର୍ନୀତିପରାୟଣ ହୋଇ ଉଠିଛନ୍ତି । ଏକଦା ବିଶ୍ୱାମିତ୍ର, କଣ୍ୱ ଓ ନାରଦ, ଏହି ଲୋକବିଶ୍ରୁତ ଋଷିତ୍ରୟ ଦ୍ୱାରକାରେ ଉପସ୍ଥିତ ହେଲେ । ଦୁର୍ବିନୀତ ଯାଦବମାନେ କୃଷ୍ଣପୁତ୍ର ଶାମ୍ବଙ୍କୁ ସ୍ତ୍ରୀ ସଜାଇ ଋଷିମାନଙ୍କ ନିକଟକୁ ନେଇ ଯାଇ କହିଲେ, ଏ ଗର୍ଭବତୀ, ଏହାଙ୍କର କଣ ପୁତ୍ର ହେବ ? ପୁରାଣେତିହାସରେ ଋଷି-ମାନେ ଅତି ଭୟାନକ କ୍ରୋଧପରାୟଣ ସ୍ୱରୂପ ବର୍ଣ୍ଣିତ ହୋଇ ଥାନ୍ତି । କଥାରେ କଥାରେ ତାଙ୍କର ଅଭିସମ୍ପାତର ଘଟା ଦେଖିଲେ, ସେମାନଙ୍କୁ ଜିତେନ୍ଦ୍ରିୟ ଈଶ୍ୱର ପରାୟଣ ଋଷି ନ କହି, ଅତି ନୃଶଂସ ନରପିଶାଚ ବୋଲି ଗଣ୍ୟ କରିବାକୁ ହୁଏ । ଆଜିକାଲିକାର ଦିନରେ ଯେ କେହି ଭଦ୍ରଲୋକ ଏପରି ତାମସା ହସି ଉଡ଼ାଇ ଦିଅନ୍ତେ; ଅନ୍ତତଃ ଟିକିଏ ତିରସ୍କାରବାକ୍ୟରେ ଯଥେଷ୍ଟ ହୁଅନ୍ତା । କିନ୍ତୁ ଏଇ ଜିତେନ୍ଦ୍ରିୟ ମହର୍ଷିଗଣ ଏକା-ବେଳେକେ ସମସ୍ତ ଯଦୁବଂଶ ଧ୍ୱଂସପ୍ରାପ୍ତ ହେବ ବୋଲି ଅଭିସମ୍ପାତ କଲେ । କହିଲେ, ଲୌହମୟ ମୂସଳ ପ୍ରସବ କରିବ, ଆଉ ସେଇ ମୂସଳରୁ କୃଷ୍ଣ ବଳରାମ ଭିନ୍ନ ସମସ୍ତ ଯଦୁବଂଶ ଧ୍ୱଂସପ୍ରାପ୍ତ ହେବ । କୃଷ୍ଣ ଏ କଥା ଅବଗତ ହେଲେ । ସେ କହିଲେ ମୁନିମାନେ ଯାହା କହିଛନ୍ତି, ତାହା ଅବଶ୍ୟ ହେବ । ଶାପ ନିବାରଣର କୌଣସି ଉପାୟ କଲେ ନାହିଁ ।

ଅଗତ୍ୟା ଶାମ୍ବ, ପୁରୁଷ ହେଉ ବା ଆଉ ଯାହା ହେଉ, ଗୋଟିଏ ଲୌହର ମୂସଳ ପ୍ରସବ କଲେ । ଯାଦବମାନଙ୍କ ରାଜା (କୃଷ୍ଣ ରାଜା ନୁହନ୍ତି, ଉଗ୍ରସେନ ରାଜା ବା ପ୍ରଧାନ) ସେଇ ମୂସଳ ଚୂର୍ଣ୍ଣ କରିବାକୁ ଆଦେଶ ଦେଲେ । ମୂସଳ ଚୂର୍ଣ୍ଣ ହେଲା—ଚୂର୍ଣ୍ଣ ସବୁ ସମୁଦ୍ରରେ ନିକ୍ଷିପ୍ତ ହେଲା । ଏଣେ ଯାଦବମାନେ ସମସ୍ତ ଧର୍ମ

ଦେହତ୍ୟାଗ କଲେ । ସେତେବେଳେ କୃଷ୍ଣ ସେମାନଙ୍କ "ବିନାଶ ବାସନାରେ" ଯାଦବମାନଙ୍କୁ ପ୍ରଭାସତୀର୍ଥରେ ଯାତ୍ରାକରିବାକୁ କହିଲେ ।

ପ୍ରଭାସଠାରେ ଆସି ଯାଦବମାନେ ସୁରାପାନ କରି ନାନାବିଧ ଉତ୍ସବ କରିବାକୁ ଲାଗିଲେ । ଶେଷରେ ପରସ୍ପର କଳହ ଆରମ୍ଭ କଲେ । କୁରୁକ୍ଷେତ୍ରର ମହାରଥୀ ସାତ୍ୟକି ପ୍ରଥମ ବିବାଦ ଆରମ୍ଭ କଲେ । ସେ କୃତବର୍ମାଙ୍କ ସହିତ ବିବାଦ କଲାରୁ ପ୍ରଦ୍ୟୁମ୍ନ ସାତ୍ୟକିଙ୍କ ପକ୍ଷାବଲମ୍ବନ କଲେ । ସାତ୍ୟକି କୃତବର୍ମାଙ୍କ ଶିରଚ୍ଛେଦ କଲେ । ସେତେବେଳେ କୃତବର୍ମାଙ୍କ ଜ୍ଞାତି ଗୋଷ୍ଠୀ (ଯାଦବମାନେ, ବୃଷ୍ଣି, ଭୋଜ, ଅନ୍ଧକ, କୁକୁର ଇତି ଭିନ୍ନ ଭିନ୍ନ ବଂଶୀୟ ) ସାତ୍ୟକି ଓ ପ୍ରଦ୍ୟୁମ୍ନଙ୍କୁ ନିହତ କଲେ । ତାରପରେ କୃଷ୍ଣ କ୍ରୁଦ୍ଧହୋଇ ଏକମୁଷ୍ଟି ଏରକା ( ଶରଗଛ ) ଗ୍ରହଣ କଲେ । ଏବଂ ତଦ୍ଦ୍ୱାରା ଅନେକ ଯାଦବ ନିପାତିତ କଲେ । ଗ୍ରନ୍ଥାନ୍ତରରେ ଅଛି ଯେ, ଏହି ଶରଗଛ ମୂଷଳ ଚୂର୍ଣ୍ଣ, ଯାହା ରାଜାଜ୍ଞାନୁସାରେ ସମୁଦ୍ରରେ ନିକ୍ଷିପ୍ତ ହୋଇ ଥିଲା, ତହିଁରୁ ଉତ୍ପନ୍ନ ହୋଇଥିଲା ମହାଭାରତରେ ସେ କଥାଟା ପାଇଲି ନାହିଁ, କିନ୍ତୁ ଲେଖା ଅଛି ଯେ, କୃଷ୍ଣ ଏରକା ମୁଷ୍ଟି ଗ୍ରହଣ କରିବାରୁ ତାହା ମୂଷଳ ରୂପେ ପରିଣତ ହେଲା—ଏବଂ ଏହା ମଧ୍ୟ ଅଛି ଯେ, ସେହି ସ୍ଥାନର ସମୁଦାୟ ଏରକାଇ ବ୍ରାହ୍ମଣ ଶାପରେ ମୂଷଳୀଭୂତ ହୋଇଥିଲା । ଯାଦବମାନେ ସେତେବେଳେ ସେହି ସବୁ ଏରକା ଗ୍ରହଣ ପୂର୍ବକ ପରସ୍ପର ନିଧନ କରିବାକୁ ଲାଗିଲେ । ଏହିରୂପେ ସମସ୍ତ ଯାଦବଗଣ ପରସ୍ପରକୁ ନିହତ କଲେ ସେତେବେଳେ ଦାରୁକ ( କୃଷ୍ଣଙ୍କ ସାରଥି ) ଓ ବଭ୍ରୁ (ଯାଦବ) କୃଷ୍ଣଙ୍କୁ କହିଲେ "ଜନାର୍ଦ୍ଦନ ! ଆପଣ ବର୍ତ୍ତମାନ ଅସଂଖ୍ୟ ଲୋକର ପ୍ରାଣ ସଂହାର କଲେ, ଅତଃପର ଚାଲନ୍ତୁ, ଆମ୍ଭେମାନେ

ମହାତ୍ମା ବଳରାମ ଙ୍କ ନିକଟକୁ ଯିବା ।"

କୃଷ୍ଣ ଦାରୁକଙ୍କୁ ହସ୍ତିନାରେ ଅର୍ଜୁନଙ୍କ ନିକଟକୁ ପଠାଇଲେ ଅର୍ଜୁନ ଆସି ଯାଦବମାନଙ୍କ କୁଳକାମିନୀମାନଙ୍କୁ ହସ୍ତିନାକୁ ନେଇ ଯିବେ, ଏହିପରି ଆଜ୍ଞା କଲେ । ବଳରାମଙ୍କୁ ଯୋଗାସନରେ ଆସୀନ ଦେଖିଲେ । ତାଙ୍କ ମୁଖରୁ ଗୋଟିଏ ସହସ୍ର ମସ୍ତକ ସର୍ପ ନିର୍ଗତ ହୋଇ ସାଗର, ନଦୀ, ବରୁଣ, ଏବଂ ବାସୁକି ପ୍ରଭୃତି ଅନ୍ୟ ସର୍ପଗଣ କର୍ତ୍ତୃକ ସ୍ତୁତ ହୋଇ ସମୁଦ୍ର ମଧ୍ୟରେ ପ୍ରବେଶ କଲା । ବଳରାମଙ୍କ ଦେହ ଜୀବନଶୂନ୍ୟ ହେଲା । ସେତେବେଳେ କୃଷ୍ଣ ସ୍ୱୟଂ ମର୍ତ୍ତ୍ୟଲୋକ ତ୍ୟାଗ ବାସନାରେ ମହାଯୋଗ ଅବଲମ୍ବନପୂର୍ବକ ଭୂତଳରେ ଶୟନ କଲେ । ଜରା ନାମକ ବ୍ୟାଧ ମୃଗଭ୍ରମରେ ତାଙ୍କ ପାଦପଦ୍ମ ଶରଦ୍ୱାରା ବିଦ୍ଧ କଲା । ପରେ ନିଜ ଭ୍ରମ ଜାଣି ମାତ୍ର ଶଙ୍କିତମନରେ କୃଷ୍ଣଙ୍କ ଚରଣରେ ନିପତିତ ହେଲା । କୃଷ୍ଣ ତାକୁ ଆଶ୍ୱାସିତ କରି ଆକାଶ ମଣ୍ଡଳ ଉଦ୍ଭାସିତ କରି ସ୍ୱର୍ଗକୁ ଗମନ କଲେ ।

ଏଣେ ଅର୍ଜୁନ ଦ୍ୱାରକାକୁ ଆସି ରାମକୃଷ୍ଣାଦିଙ୍କ ଔର୍ଦ୍ଧ୍ୱଦେହିକ କର୍ମ ସମ୍ପାଦନ କରି ଯାଦବକୁଳ କାମିନୀମାନଙ୍କୁ ନେଇ ହସ୍ତିନା-ଗଲେ । ପଥ ମଧ୍ୟରେ ଦସ୍ୟୁଗଣ ଯଷ୍ଟିହସ୍ତରେ ତାଙ୍କୁ ଆକ୍ରମଣ କଲେ । ଯେ ପୃଥିବୀ ଜୟ କରିଥିଲେ, ଏବଂ ଖାଣ୍ଡବ କର୍ତ୍ତାଙ୍କ ନିହନ୍ତା, ସେ ଲଗୁଡ଼ଧାରୀ ଚଷାମାନଙ୍କୁ ପରାଭୂତ କରି ପାରିଲେ ନାହିଁ । ଗାଣ୍ଡୀବ ଟେକି ପାରିଲେ ନାହିଁ । ରୁକ୍ମିଣୀ, ସତ୍ୟଭାମା, ହୈମବତୀ, ଜାମ୍ବବତୀ ପ୍ରଭୃତି କୃଷ୍ଣଙ୍କ ପ୍ରଧାନା ମହିଷୀଗଣ ଭିନ୍ନ ଅନ୍ୟ ସମସ୍ତଙ୍କୁ ଦସ୍ୟୁମାନେ ହରଣ କରି ନେଇ ଗଲେ ।

ଏଇ ସବୁ କଥା କଣ ମୌଳିକ ? ମୁସଳ ଏଇକାର ଅନୈସର୍ଗିକ ଉପନ୍ୟାସ ଆମେ ପୂର୍ବ ନିୟମାନୁସାରେ ପରିତ୍ୟାଗ କରିବାକୁ ବାଧ୍ୟ । କିନ୍ତୁ ତାହା ତ୍ୟାଗ କଲେ ଯେ, ପ୍ରାକୃତିକ ସ୍ଥୂଳ କଥା କିଛି ବାକି ରହିଯାଏ, ତାହା ତେତେ ଶୀଘ୍ର ତ୍ୟାଗ କରି ଯାଇପାରେ ନାହିଁ । ଯାଦବମାନେ ସୁରାସକ୍ତ ଓ ଦୁର୍ନୀତି ପରିପୂର୍ଣ ହୋଇଥିଲେ; ଏହା ପୂର୍ବେ କଥିତ ହୋଇଅଛି । ସେମାନେ ସମସ୍ତେ ଏକବଂଶୀୟ ନୁହନ୍ତି; ଭିନ୍ନ ଭିନ୍ନ ବଂଶୀୟ, ଏବଂ ଅନେକ ସମୟରେ ପରସ୍ପର ବିରୁଦ୍ଧାଚରଣ । କୁରୁକ୍ଷେତ୍ର ଯୁଦ୍ଧରେ ବାର୍ଷ୍ଣେୟ ସାତ୍ୟକି ଓ କୃଷ୍ଣ ପାଣ୍ଡବ ପକ୍ଷରେ, କିନ୍ତୁ ଅନ୍ଧକ ଓ ଭୋଜ-ବଂଶୀୟ କୃତବର୍ମ୍ମା, ଦୁର୍ଯ୍ୟୋଧନଙ୍କ ପକ୍ଷରେ । ତାର ପରେ, ଯାଦବମାନଙ୍କର କେହି ରାଜା ନ ଥିଲେ, ଉଗ୍ରସେନଙ୍କୁ କେବେ କେବେ ରାଜା କୁହାହୋଇ ଥାଏ, କିନ୍ତୁ ଯାଦବମାନଙ୍କ ମଧ୍ୟରେ କେହି ରାଜା ନଥିଲେ, ଏହା ପ୍ରସିଦ୍ଧ । କୃଷ୍ଣଙ୍କ ଗୁଣାଧିକ୍ୟ ହେତୁ, ସେ ଯାଦବମାନଙ୍କ ନେତା ଥିଲେ, କିନ୍ତୁ ତାଙ୍କ ଅଗ୍ରଜ ବଳରାମଙ୍କ ସଙ୍ଗେ ତାଙ୍କର ମତଭେଦ ଦେଖାଯାଏ, ଏବଂ ଶାନ୍ତିପର୍ବରେ ଦେଖାଯାଏ, ଭୀଷ୍ମ ଗୋଟିଏ କୃଷ୍ଣନାରଦସମ୍ବାଦ କହୁଛନ୍ତି । ସେଥିରେ କୃଷ୍ଣ ନାରଦଙ୍କ ନିକଟରେ ଦୁଃଖ କରୁଛନ୍ତି ଯେ, ସେ ଜ୍ଞାତିବର୍ଗଙ୍କ ମନୋରଞ୍ଜନାର୍ଥ ବହୁତର ଯତ୍ନ କରି ସୁଦ୍ଧା କୃତକାର୍ଯ୍ୟ ହୋଇପାରି ନାହାନ୍ତି । ଏ ସବୁ କଥା ପୂର୍ବେ କହିଅଛି । ଅତଏବ, ଯେତେବେଳେ ଯାଦବମାନେ, ପରସ୍ପର ବିଦ୍ୱେଷବିଶିଷ୍ଟ, ସ୍ୱ ସ୍ୱ ପ୍ରଧାନ, ଅତ୍ୟନ୍ତ ବଳଦୃପ୍ତ,

ଦୁର୍ନୀତି ପରାୟଣ, ଏବଂ ସୁରାପାନନିରତ, * ସେତେବେଳେ ସେମାନେ ଯେ ପରସ୍ପର ବିବାଦ କରି ଯଦୁକୁଳ କ୍ଷୟ କରିବେ ଏବଂ ତନ୍ନିବନ୍ଧନ କୃଷ୍ଣ ବଳରାମଙ୍କ ବି ଯେ ଇଚ୍ଛାଧୀନ ବା ଅନିଚ୍ଛାଧୀନ ଦେହାନ୍ତ ହେବ, ଏହା ଅନୈସର୍ଗିକ ବା ଅସମ୍ଭବ ନୁହେ । ବୋଧ ହୁଏ, ଏପରି ଗୋଟାଏ କମ୍ବଦନ୍ତୀ ପ୍ରଚଳିତ ଥିଲା, ଏବଂ ତାହା ଉପରେ ପୁରାଣକାରମାନେ ଯଦୁବଂଶଧ୍ୱଂସ ସ୍ଥାପିତ କରିଛନ୍ତି । ଅତଏବ ଏ ଅଂଶର ମୌଳିକତାର ପୁଙ୍ଖାନୁପୁଙ୍ଖ ବିଚାରରେ ଆମର କୌଣସି ପ୍ରୟୋଜନ ନାହିଁ । ତେବେ କେବଳ ଗୋଟାଏ ଦୁଇଟା କଥା କହିବା ଆବଶ୍ୟକ । ଲିଖିତ ହୋଇଅଛି ଯେ, ଯଦୁବଂଶଧ୍ୱଂସ ନିବାରଣ ନିମିତ୍ତ କୃଷ୍ଣ କିଛି କରି ନାହାନ୍ତି, ବରଂ ତାହାର ଆନୁକୂଲ୍ୟ କରିଥିଲେ । ଏହା ବି ଯଦି ସତ୍ୟ ହୁଏ, ସେଥିରେ କୃଷ୍ଣଚରିତ୍ରର ଅସଙ୍ଗତି ବା ଅଗୌରବ କିଛି ଦେଖି ନାହିଁ । ଆଦର୍ଶମନୁଷ୍ୟ, ଆଦର୍ଶ ମନୁଷ୍ୟର ଉପଯୁକ୍ତ କାର୍ଯ୍ୟ କରିଥିଲେ । ତାଙ୍କର ଆତ୍ମୀୟ ବା ଅନାତ୍ମୀୟ କେହି ନାହିଁ—ଆଦର୍ଶ ପୁରୁଷର ଧାର୍ମିକହିଁ ଆତ୍ମୀୟ । ଯଦୁବଂଶୀୟମାନେ ଯେତେବେଳେ ଅଧାର୍ମିକ ହୋଇ ଉଠିଥିଲେ, ସେତେବେଳେ ସେମାନଙ୍କୁ ଦଣ୍ଡ ଓ ପ୍ରୟୋଜନୀୟ ସ୍ଥଳରେ ବିନାଶ ସାଧନ ତାଙ୍କର କର୍ତ୍ତବ୍ୟ । ସେ କୌରବାଦି ପ୍ରଭୃତିଙ୍କୁ ଅଧର୍ମାତ୍ମା ବୋଲି ବିନଷ୍ଟ କଲେ, ସେ ଯାଦବମାନଙ୍କୁ ଅଧର୍ମାତ୍ମା ଦେଖି ସେମାନଙ୍କୁ ଯଦି ବିନଷ୍ଟ

---

* ଯାଦବମାନେ ଏପରି ମଦ୍ୟାସକ୍ତ ଥିଲେ ଯେ, କୃଷ୍ଣ ବଳରାମ ଘୋଷଣା କରିଥିଲେ, ଦ୍ୱାରକାରେ ଯେ ସୁରାପ୍ରସ୍ତୁତ କରିବ ତାକୁ ଶୂଳି ଦିଆଯିବ ମୁଁ ପାଶ୍ଚାତ୍ୟ ରାଜପୁରୁଷ ମାନଙ୍କୁ ଏହି ମତର ଅନୁବର୍ତ୍ତୀହେବା ନିମନ୍ତେ କହିବାକୁ ଇଚ୍ଛାକରେ ।

ନ କରନ୍ତି ତେବେ ସେ ଧର୍ମର ବନ୍ଧୁ ନୁହନ୍ତି, ଆତ୍ମୀୟଗଣଙ୍କ ବନ୍ଧୁ, ନିଜର ବନ୍ଧୁ, ଧର୍ମର ପକ୍ଷପାତୀ ନୁହନ୍ତି, ନିଜର ପକ୍ଷପାତୀ, ଈଶ୍ୱରର ପକ୍ଷପାତୀ । ଆଦର୍ଶ ଧର୍ମାତ୍ମା, ତାହା ହୋଇ ପାରନ୍ତି ନାହିଁ—କୃଷ୍ଣ ମଧ୍ୟ ତାହା ହୋଇ ନାହାନ୍ତି ।

କୃଷ୍ଣଙ୍କ ଦେହତ୍ୟାଗର କାରଣଟା କେତେକଟା ଅନିଶ୍ଚିତ ରହିଲା । ଦୁଇ ପ୍ରକାର କାରଣ ନିର୍ଦ୍ଦେଶ କରା ଯାଇ ପାରେ ।

ପ୍ରଥମ, ଟାଲ୍‌ବୟସ-ହ୍ୱଇଲର ସମ୍ପ୍ରଦାୟ କହି ପାରନ୍ତି, କୃଷ୍ଣ, ଜୁଲିୟସ କାଇସରଙ୍କ ପରି, ଦ୍ୱେଷବିଶିଷ୍ଟ ବନ୍ଧୁମାନଙ୍କ କର୍ତ୍ତୃକ ନିହତ ହୋଇଥିଲେ । ଏପରି କଥା କୌଣସି ଗ୍ରନ୍ଥରେ ନାହିଁ ।

ଦ୍ୱିତୀୟ, ସେ ଯୋଗାବଲମ୍ବନ କରି ଦେହତ୍ୟାଗ କରିଥିଲେ । ପାଶ୍ଚାତ୍ୟ-ବୈଜ୍ଞାନିକମାନଙ୍କ ଶିଷ୍ୟମାନେ ଯୋଗା-ବଲମ୍ବନରେ ଦେହତ୍ୟାଗର କଥାଟା ବିଶ୍ୱାସ କରିବେ ନାହିଁ । ମୁଁ ନିଜେ ଅବିଶ୍ୱାସର କାରଣ ଦେଖି ନାହିଁ । ଯେଉଁମାନେ ଯୋଗାଭ୍ୟାସକାଳରେ ନିଶ୍ୱାସ ଅବରୁଦ୍ଧ କରିବାର ଅଭ୍ୟାସ କରି ଅଛନ୍ତି, ସେମାନେ ନିଶ୍ୱାସ ଅବରୁଦ୍ଧ କରି ନିଜର ମୃତ୍ୟୁ ସମ୍ପାଦନ କରି ପାରିବେ ନାହିଁ, ଏପରି କଥା ମୁଁ ସାହାସ କରି କହି ପାରେ ନାହିଁ । ଏପରି ଘଟନା ବିଶ୍ୱସ୍ତ ସୂତ୍ରରେ ମଧ୍ୟ ଶୁଣା ଯାଇଥାଏ । ଅପରେ କହି ପାରନ୍ତି, ଏହା ଆତ୍ମହତ୍ୟା, ସୁତରାଂ ପାପ; ସୁତରାଂ ଆଦର୍ଶ ମନୁଷ୍ୟର ଅନାଚରଣୀୟ, ମୁଁ ଠିକ୍ ତାହା କହି ପାରେ ନାହିଁ । ପ୍ରାଚୀନ ବୟସରେ ଜୀବନର କର୍ଯ୍ୟ ସମସ୍ତ ସମ୍ପନ୍ନ ହେଲାପରେ, ଈଶ୍ୱରରେ ଲୀନ ହେବା ନିମିତ୍ତ, ମନମଧ୍ୟରେ ତନ୍ମୟ ହୋଇ, ଶ୍ୱାସରୋଧକୁ ଆତ୍ମହତ୍ୟା କହିବି, ନା "ଈଶ୍ୱର ପ୍ରାପ୍ତି" କହିବି ? ସେଟା

ବିଗୁରଗ୍ଣଳ । ଆତ୍ମହତ୍ୟା ମହାପାପ ସ୍ୱୀକାର କରେ, ଜୀବନ ଶେଷେ ଯୋଗବଳରେ ପ୍ରାଣତ୍ୟାଗ କି କଣ ତାହା ? କୃଷ୍ଣପୁ, ଜରାବ୍ୟାଧର ଶରଘାତ ।

ଚତୁର୍ଥ, ଏହି ସମୟରେ କୃଷ୍ଣଙ୍କ ବୟସ ଶତବର୍ଷରୁ ଅଧିକ ହୋଇଥିଲା ବୋଲି ବିଷ୍ଣୁପୁରାଣରେ କଥିତ ହୋଇଅଛି । ଏହି ଜରାବ୍ୟାଧ, ଜରାବ୍ୟାଧି ନୁହେଁ ତ ?

ଯେଉଁମାନେ କୃଷ୍ଣଙ୍କୁ ମନୁଷ୍ୟମାତ୍ର ବିବେଚନା କରି ତାଙ୍କର ଈଶ୍ୱରତ୍ୱ ସ୍ୱୀକାର କରନ୍ତି ନାହିଁ, ସେମାନେ ଏହି ଗୁଡ଼ିକ ମତରୁ ଯେ କୌଣସିଟି ଗ୍ରହଣ କରି ପାରନ୍ତି । ମୁଁ କୃଷ୍ଣଙ୍କୁ ଈଶ୍ୱରାବତାର ବୋଲି ସ୍ୱୀକାର କରେ । ଅତଏବ ମୁଁ କହେ, କୃଷ୍ଣଙ୍କ ଇଚ୍ଛା କୃଷ୍ଣଙ୍କ ଦେହତ୍ୟାଗର କାରଣ । ମୋର ଏହା ମଧ୍ୟ ମତ ଯେ, ଜଗତରେ ମନୁଷ୍ୟତ୍ୱର ଆଦର୍ଶ ପ୍ରଚାର ତାଙ୍କର ଇଚ୍ଛା ଏବଂ ସେଇ ଇଚ୍ଛା ପୂରଣ ନିମିତ୍ତ ସେ ମାନୁଷୀ ଶକ୍ତିର ଦ୍ୱାରା ସମସ୍ତ କର୍ମ ନିର୍ବାହ କରୁଥିଲେ, କିନ୍ତୁ ତାହା କହିଲେ ସୁଦ୍ଧା ଈଶ୍ୱରାବତାରଙ୍କର ଜନ୍ମମୃତ୍ୟୁ ତାଙ୍କର ଇଚ୍ଛାଧୀନ ମାତ୍ର କହିବାକୁ ହେବ । ଅତଏବ ମୁଁ କହେ, କୃଷ୍ଣଙ୍କ ଇଚ୍ଛାଇ କୃଷ୍ଣଙ୍କ ଦେହତ୍ୟାଗର ଏକମାତ୍ର କାରଣ ।

ମୌସଳପର୍ବ ମହାଭାରତର ପ୍ରଥମ ସ୍ତରର ଅନ୍ତର୍ଗତ କିନା, ତାହା ମୁଁ ବିଚାର କରି ନାହିଁ । ବିଶେଷ ପ୍ରୟୋଜନ ନାହିଁ ବୋଲି ସମାଲୋଚନା କରି ନାହିଁ । ବିଶେଷ ପ୍ରୟୋଜନ ନାହିଁ କାହିଁକି, ତାହାବି କହୁଅଛି । ସ୍ଥୂଳ ଘଟନାଟା କେତେକଟା ସତ୍ୟ ବୋଲି ବୋଧ ହୁଏ । ତେବେ ତାହା ହେଲେ ମଧ୍ୟ, ଏହା ମହାଭାରତର ପ୍ରଥମ ସ୍ତରର ଅନ୍ତର୍ଗତ ନୁହେଁ ବୋଲି

ବୋଧ ହୁଏ । ଯାହା ପୁରାଣ ଓ ହରିବଂଶରେ ଅଛି, କୃଷ୍ଣ-ଜୀବନ ଘଟିତ ଏମନ୍ତ ଆଉ କୌଣସି ଘଟନା ମହାଭାରତରେ ନାହିଁ । ଏଇଟି କେବଳ ପୁରାଣାଦିରେ ଅଛି, ହରିବଂଶରେ ବି ଅଛି, ମହାଭାରତରେ ମଧ୍ୟ ଅଛି । ପାଣ୍ଡବମାନଙ୍କ ସମ୍ବନ୍ଧରେ ଯାହା କିଛି କୃଷ୍ଣ କରିଥିଲେ, ତାହା ଭିନ୍ନ ଆଉ କୌଣସି କୃଷ୍ଣବୃତ୍ତାନ୍ତ ମହାଭାରତରେ ନାହିଁ ଓ ଥିବାର ସମ୍ଭାବନା ନାହିଁ । ଏଇଟି କେବଳ ସେ ନିୟମ-ବହିର୍ଭୂତ । କୃଷ୍ଣ ଏଠାରେ ଈଶ୍ୱରାବତାର, ପୂର୍ବେ କହିଅଛି ଏହା ଦ୍ୱିତୀୟ ବା ତୃତୀୟ ସ୍ତରର ଚିହ୍ନ । ଏପରି ବିବେଚନା କରିବାର ଅନ୍ୟାନ୍ୟହେତୁ ମଧ୍ୟ ନିର୍ଦ୍ଦେଶ କରି ଯାଇପାରେ, କିନ୍ତୁ ପ୍ରୟୋଜନାଭାବ । ତେବେ, ଏହା କହିବା କର୍ତ୍ତବ୍ୟ ଯେ, ଅନୁକ୍ରମଣିକାଧ୍ୟାୟରେ ମୌସଲପର୍ବର କୌଣସି ପ୍ରସଙ୍ଗ ନାହିଁ । ପରୀକ୍ଷିତଙ୍କ ଜନ୍ମବୃତ୍ତାନ୍ତର ପରବର୍ତ୍ତୀ କୌଣସି କଥା ଅନୁକ୍ରମଣିକାଧ୍ୟାୟରେ ନାହିଁ । ମୋର ବିବେଚନାରେ ପରୀକ୍ଷିତଙ୍କ ଜନ୍ମ ଆଦିମ ମହାଭାରତର ଶେଷ । ତାର ପରବର୍ତ୍ତୀ ଯେଉଁ ସବୁକଥା, ତାହା ଦ୍ୱିତୀୟ ବା ତୃତୀୟ ସ୍ତରର ।

## ଦ୍ୱିତୀୟ ପରିଚ୍ଛେଦ

## ଉପସଂହାର

ସମାଲୋଚକର କାର୍ଯ୍ୟ ପ୍ରୟୋଜନାନୁସାରେ ଦ୍ୱିବିଧ ;— ଏକ ପ୍ରାଚୀନ କୁସଂସ୍କାରର ନିରାସ ; ଅପର ସତ୍ୟର ସଂଗଠନ କୃଷ୍ଣଚରିତ୍ରରେ ପ୍ରଥୋମୋକ୍ତ କାର୍ଯ୍ୟ ପ୍ରଧାନ ; ଏଣୁ ଆମର ସମସ୍ତ ଓ ଚେଷ୍ଟା ସେଇ ଦିଗରେ ବେଶୀ ଯାଇଛି । କୃଷ୍ଣଙ୍କ ଚରିତ୍ରରେ ସତ୍ୟର ନୂତନ ସଂଗଠନ କରିବା ଅତି

ଦୁରୂହ ବ୍ୟାପାର, କାରଣ, ମିଥ୍ୟା ଓ ଅତିପ୍ରାକୃତ ଉପନ୍ୟାସର ଭସ୍ମରେ ଅଗ୍ନି ଏଠାରେ ଏପରି ଆଚ୍ଛାଦିତ ଯେ, ତାହାର ସନ୍ଧାନ ପାଇବା କଷ୍ଟକର । ଯେଉଁ ଉପାଦାନରେ ଗଠି ପ୍ରକୃତ କୃଷ୍ଣଚରିତ୍ର ପୁନଃ ସଂସ୍ଥାପିତ କରିବ, ତାହା ମିଥ୍ୟାର ସାଗରରେ ଡୁବି ଯାଇଛି । ମୋର ଯେତେଦୂର ସାଧ୍ୟ ସେତେ-ଦୂର ମୁଁ ଗଢ଼ିଲି ।

ଉପସଂହାରରେ ଦେଖା କର୍ତ୍ତବ୍ୟ ଯେ, ଯେତେଟିକିଏ ସତ୍ୟ ପୁରାଣେତିହାସରୁ ମିଳେ, ସେଥିକରେ କୃଷ୍ଣଚରିତ୍ର କିରୂପ ପରିପନ୍ନ ହେଲା ।

ଦେଖିଅଛୁଁ, ବାଲ୍ୟରେ କୃଷ୍ଣ ଶାରୀରିକ ବଳରେ ଆଦର୍ଶ ବଳବାନ୍ । ତାଙ୍କର ଅଶିକ୍ଷିତ ବଳପ୍ରଭାବରେ ବୃନ୍ଦାବନ ହିଂସ୍ରଜନ୍ତୁ ପ୍ରଭୃତିରୁ ସୁରକ୍ଷିତ ହୋଇଥିଲା । ତାଙ୍କର ଅଶିକ୍ଷିତ ବଳରେ ମଧ୍ୟ କଂସର ମଲ୍ଲପ୍ରଭୃତି ନିହତ ହୋଇ-ଥିଲେ । ଗୋଚାରଣକାଳରେ ଗୋପାଳମାନଙ୍କ ସଙ୍ଗେ ସର୍ବଦା କ୍ରୀଡ଼ା ଓ ବ୍ୟାୟାମାଦିରେ ସେ ଶାରୀରିକ ବଳର ସ୍ଫୂର୍ତ୍ତି ଜନ୍ମାଇଥିଲେ । ଦେଖିଅଛୁଁ, ଦ୍ରୁତଗମନରେ କାଳଯବନ ମଧ୍ୟ ତାଙ୍କୁ ପାରି ନାହିଁ । କୁରୁକ୍ଷେତ୍ର ଯୁଦ୍ଧରେ ତାଙ୍କର ରଥସଞ୍ଚା-ଳନବିଦ୍ୟାରେ ବିଶେଷ ପ୍ରଶଂସା ଦେଖାଯାଏ ।

ଏହି ବଳ ଶିକ୍ଷିତ ହେବାପରେ, ସେ ସେସମୟର କ୍ଷତ୍ରିୟ ସମାଜରେ ସର୍ବପ୍ରଧାନ ଅସ୍ତ୍ରବିତ୍ ବୋଲି ଗଣ୍ୟ ହୋଇଥିଲେ । କେହି କେବେ ତାଙ୍କୁ ପରାଭୂତ କରିପାରି ନାହିଁ । ସେ କଂସ, ଜରାସନ୍ଧ, ଶିଶୁପାଳ ପ୍ରଭୃତି ସେ ସମୟର ସର୍ବପ୍ରଧାନ ଯୋଦ୍ଧୃ-ଗଣଙ୍କ ସଙ୍ଗେ, ଏବଂ ଅନ୍ୟାନ୍ୟ ବହୁତର ରାଜାମାନଙ୍କ ସଙ୍ଗେ, ଏବଂ କାଶୀ, କଳିଙ୍ଗ, ପୌଣ୍ଡ୍ରକ, ଗାନ୍ଧାର ପ୍ରଭୃତି ରାଜାମାନଙ୍କ ସଙ୍ଗେ

ଯୁଦ୍ଧରେ ନିଯୁକ୍ତ ହୋଇଥିଲେ, ସମସ୍ତଙ୍କୁହିଁ ସେ ପରାଭୂତ କରି-
ଥିଲେ, କେହି କେବେ ତାଙ୍କୁ ପରାଭୂତ କରିପାରି ନାହିଁ । ତାଙ୍କର
ଯୁଦ୍ଧଶିଷ୍ୟମାନେ, ଯଥା—ସାତ୍ୟକି ଓ ଅଭିମନ୍ୟୁ ଯୁଦ୍ଧରେ ପ୍ରାୟ
ଅପରାଜେୟ ହୋଇଥିଲେ । ସ୍ୱୟଂ ଅର୍ଜ୍ଜୁନ ମଧ୍ୟ ତାଙ୍କ ନିକଟରେ
କୌଣସି କୌଣସି ବିଷୟରେ ଯୁଦ୍ଧ ସମ୍ବନ୍ଧରେ ଶିଷ୍ୟତ୍ୱ ସ୍ୱୀକାର
କରିଥିଲେ ।

କେବଳ ଶାରୀରିକ ବଳ ଓ ଶିକ୍ଷା ଉପରେ ଯେଉଁ ରଣପଟୁତା
ନିର୍ଭର କରେ, ପୁରାଣ ଇତିହାସରେ ତାହାରି ପ୍ରଶଂସା ଦେଖାଯାଏ ।
କିନ୍ତୁ ସେରୂପ ରଣପଟୁତା ଜଣେ ସାମାନ୍ୟ ସୈନିକର ମଧ୍ୟ ଥାଇ
ପାରେ । ସେନାପତିତ୍ୱହିଁ ଯୋଦ୍ଧାର ପ୍ରକୃତ ଗୁଣ । ସେନାପତିତ୍ୱରେ
ସେ ସମୟର ଯୋଦ୍ଧୃଗଣ ପଟୁ ନଥିଲେ । ମହାଭାରତରେ ବା
ପୁରାଣରେ କାହାରି ସେ ଗୁଣରେ ପରିଚୟ ବିଶେଷ ମିଳେ
ନାହିଁ ଭୀଷ୍ମଙ୍କର ବା ଅର୍ଜ୍ଜୁନଙ୍କର ମଧ୍ୟ ନୁହେ । କୃଷ୍ଣଙ୍କ
ସେନାପତିତ୍ୱର ବିଶେଷ କିଛି ପରିଚୟ ମିଳେ, ଜରାସନ୍ଧ-
ଯୁଦ୍ଧରେ । ତାଙ୍କ ସେନାପତିତ୍ୱ ଗୁଣରେ କ୍ଷୁଦ୍ର ଯାଦବସେନା
ଜରାସନ୍ଧଙ୍କର ସଂଖ୍ୟାତୀତ ସେନାକୁ ମଥୁରାରୁ ବିମୁଖ କରିଥିଲେ ।

ସେହି ଅଗଣ୍ୟ ସେନାର କ୍ଷୟ, ଯାଦବସେନା ଦ୍ୱାରା
ଅସାଧ୍ୟ ଜାଣି ମଥୁରା ପରିତ୍ୟାଗ, ନୂତନ ନଗରୀର ନିର୍ମ୍ମା-
ଣାର୍ଥ ସାଗରଦ୍ୱୀପ ଦ୍ୱାରକାର ନିର୍ବାଚନ, ଏବଂ ତାହାର ସମ୍ମୁ-
ଖସ୍ଥ ରୈବତକ ପର୍ବତମାଳାରେ ଦୁର୍ଭେଦ୍ୟ ଦୁର୍ଗଶ୍ରେଣୀନିର୍ମ୍ମାଣ
ଯେଉଁ ରଣନୀତିଜ୍ଞତାର ପରିଚୟ, ସେରୂପ ପରିଚୟ ପୁରାଣେ-
ତିହାସରେ କୌଣସି କ୍ଷତ୍ରିୟଙ୍କ ନିକଟରୁ ମିଳେ ନାହିଁ ।
ପୁରାଣକାର ଋଷିମାନଙ୍କର ଏହା ଅବୋଧଗମ୍ୟଅତ୍ତ ଏବ ଏହା
ମଧ୍ୟ ଏକ ଅନ୍ୟତର ପ୍ରମାଣ ଯେ, କୃଷ୍ଣେତିହାସ ସେମାନଙ୍କର
କଳ୍ପନାମାତ୍ରପ୍ରସୂତ ନୁହେ ।

ଶ୍ରୀକୃଷ୍ଣଙ୍କ ଜ୍ଞାନାର୍ଜ୍ଜନୀ ବୃତ୍ତି ସବୁ ମଧ୍ୟ ଚରମସ୍ଫୂର୍ତ୍ତିପ୍ରାପ୍ତ, ତାହାର ବ ଯଥେଷ୍ଟ ପରିଚୟ ମିଳ ଅଛି । ସେ ଅଦ୍ୱିତୀୟ ବେଦଜ୍ଞ, ଏହାହିଁ ଭୀଷ୍ମ ତାଙ୍କର ଅର୍ଘପ୍ରାପ୍ତିର ଅନ୍ୟତର କାରଣ ବୋଲି ନିର୍ଦ୍ଦିଷ୍ଟ କରିଥିଲେ । ଶିଶୁପାଳ ସେ କଥାରେ ଅନ୍ୟ ଉତ୍ତର ଦେଇ ନାହାନ୍ତି, କେବଳ ଏହା କହିଥିଲେ ଯେ, ତେବେ ବେଦବ୍ୟାସ ଥାଉଁ ଥାଉଁ କୃଷ୍ଣଙ୍କ ପୂଜା କାହିଁକି ?

କୃଷ୍ଣଙ୍କ ଜ୍ଞାନାର୍ଜ୍ଜନୀ ବୃତ୍ତି ସବୁ ଯେ ଚରମୋତ୍କର୍ଷ ପ୍ରାପ୍ତ ହୋଇଥିଲା, କୃଷ୍ଣପ୍ରବର୍ତ୍ତିତ ଧର୍ମ୍ମ ଏହାର ଶ୍ରେଷ୍ଠୋଜ୍ଜ୍ୱଳ ପ୍ରମାଣ । ଏହି ଧର୍ମ୍ମ ଯେ କେବଳ ଗୀତାରେ ମିଳେ ଏହା ନୁହେଁ ; ମହାଭାରତର ଅନ୍ୟ ସ୍ଥାନରେ ମଧ୍ୟ ମିଳେ, ଏହା ଦେଖିଅଛୁ । କୃଷ୍ଣକଥିତ ଧର୍ମ୍ମ ଅପେକ୍ଷା ଉନ୍ନତ, ସର୍ବଲୋକହିତକର, ସର୍ବ-ଜନର ଆଚରଣୀୟ ଧର୍ମ୍ମ ଆଉ କେବେ ପୃଥିବୀରେ ପ୍ରବର୍ତ୍ତିତ ହୋଇ ନାହିଁ, ଏହା ଗ୍ରନ୍ଥାନ୍ତରରେ କହିଅଛୁ । ଏ ଧର୍ମ୍ମ ଯେଉଁ ଜ୍ଞାନର ପରିଚୟ ଦିଏ, ତାହା ପ୍ରାୟ ମନୁଷ୍ୟାତୀତ । କୃଷ୍ଣ ମାନୁଷୀ ଶକ୍ତିର ଦ୍ୱାରା ସକଳ କାର୍ଯ୍ୟ ସିଦ୍ଧ କରନ୍ତି, ଏହା ମୁଁ ପୁନଃ ପୁନଃ କହିଅଛୁ ଓ ପ୍ରମାଣୀକୃତ ବ କରିଅଛୁ । କେବଳ ଏହି ଗୀତାରେ ଶ୍ରୀକୃଷ୍ଣ ପ୍ରାୟ ଅନନ୍ତ ଜ୍ଞାନର ଆଶ୍ରୟ ନେଇଛନ୍ତି ।

ସର୍ବଜନୀନ ଧର୍ମ୍ମରୁ ଅବତରଣ କରି ରାଜ ଧର୍ମ୍ମରେ ବା ରାଜନୀତି ସମ୍ବନ୍ଧରେ ମଧ୍ୟ ଦେଖି ଥାଉଁ ଯେ, କୃଷ୍ଣଙ୍କ ଜ୍ଞାନାର୍ଜ୍ଜନୀ ବୃତ୍ତି ସବୁ ଚରମସ୍ଫୂର୍ତ୍ତିପ୍ରାପ୍ତ । ସେ ସର୍ବଶ୍ରେଷ୍ଠ ଏବଂ ସର୍ବ୍ବାନ୍ତ ରାଜନୀତିଜ୍ଞ ବୋଲି ଯୁଧିଷ୍ଠିର ବ୍ୟାସଦେବଙ୍କ ପରାମର୍ଶ ପାଇ ସୁଦ୍ଧା କୃଷ୍ଣଙ୍କ ପରାମର୍ଶ ବ୍ୟତୀତ ରାଜସୂୟ ଯଜ୍ଞରେ ହସ୍ତାର୍ପଣ କଲେ ନାହିଁ । ଅବାଧ୍ୟ ଯାଦବମାନେ ଏବଂ ବାଧ୍ୟ ପାଣ୍ଡବ-

ମାନେ ତାଙ୍କୁ ନ ଡରି କିଛି କରୁ ନ ଥିଲେ । ଜରାସନ୍ଧଙ୍କୁ ନିହତ କରି କାରାରୁଦ୍ଧ ରାଜଗଣଙ୍କୁ ମୁକ୍ତ କରିବା, ଉନ୍ନତ ରାଜନୀତିର ଅତି ଉତ୍କୃଷ୍ଟ ଉଦାହରଣ—ସାମ୍ରାଜ୍ୟ ସ୍ଥାପନର ଅଳ୍ପାୟାସସାଧ୍ୟ ଅଥଚ ପରମ ଧର୍ମ୍ମ୍ୟ ଉପାୟ । ଧର୍ମ୍ମରାଜ୍ୟ ସଂସ୍ଥାପନ ପରେ, ଧର୍ମ୍ମରାଜ୍ୟ ଶାସନ ନିମିତ୍ତ ରାଜଧର୍ମ୍ମ ନିୟୋଗରେ ଭୀଷ୍ମଙ୍କ ଦ୍ୱାରା ରାଜ୍ୟବ୍ୟବସ୍ଥା ସଂସ୍ଥାପନ କରାଇବା, ରାଜନୀତିଜ୍ଞତାର ଦ୍ୱିତୀୟ ଅତି ପ୍ରଶଂସନୀୟ ଉଦାହରଣ । ଆହୁରି ମଧ୍ୟ ଅନେକ ଉଦାହରଣ ପାଠକ ପାଇଛନ୍ତି । କୃଷ୍ଣଙ୍କ ବୁଦ୍ଧି, ଚରମ ସ୍ଫୂର୍ତ୍ତି ପ୍ରାପ୍ତ ହୋଇଥିଲା ବୋଲି, ତାହା ସର୍ବବ୍ୟାପିନୀ ସର୍ବଦର୍ଶିନୀ ସକଳ ପ୍ରକାର ଉପାୟର ଉଦ୍ଭାବନୀ—। ଏହା ଆମ୍ଭେ ପୁନଃ ପୁନଃ ଦେଖିଅଛୁ । ମନୁଷ୍ୟଶରୀର ଧାରଣ କରି ଯେତେ ଦୂର ସର୍ବଜ୍ଞ ହୋଇ ପାରେ, କୃଷ୍ଣ ସେତେସର୍ବଜ୍ଞ । ଅପୂର୍ବ ଅଧ୍ୟାତ୍ମତତ୍ତ୍ୱ ଓ ଧର୍ମ୍ମତତ୍ତ୍ୱ ଯାହା ଉପରେ ଆଜି ମୁଦ୍ଧା ମନୁଷ୍ୟବୁଦ୍ଧି ଆଉ ଯାଇ ନାହିଁ ସେଠାରୁ ଚିକିତ୍ସାବିଦ୍ୟା ଓ ସଙ୍ଗୀତବିଦ୍ୟା ଏପରି କି ଅଶ୍ୱପରିଚର୍ଯ୍ୟା ପର୍ଯ୍ୟନ୍ତ ତାଙ୍କର ଆୟତ୍ତ ଥିଲା । ଉତ୍ତରାଙ୍କ ମୃତ ପୁତ୍ରର ପୁନର୍ଜ୍ଜୀବନ ଗୋଟିକର ଉଦାହରଣ; ବିଖ୍ୟାତ ବଂଶୀବିଦ୍ୟା ଦ୍ୱିତୀୟର ଏବଂ ଜୟଦ୍ରଥବଧ ଦିବସରେ ଅଶ୍ୱର ଶଲ୍ୟୋଦ୍ଧାର ତୃତୀୟର ଉଦାହରଣ ।

କୃଷ୍ଣଙ୍କ କାର୍ଯ୍ୟକାରିଣୀ ବୃତ୍ତି ସବୁ ମଧ୍ୟ ଚରମସ୍ଫୂର୍ତ୍ତିପ୍ରାପ୍ତ ତାଙ୍କର ସାହସ କ୍ଷିପ୍ରକାରିତା ଏବଂ ସର୍ବକର୍ମ ତତ୍ପରତାର ଅନେକ ପରିଚୟ ଦେଇଅଛି । ତାଙ୍କର ସତ୍ୟ ଏବଂ ଧର୍ମ ଯେ ଅବିଚଳିତ ଏହି ଗ୍ରନ୍ଥରେ ତାହାର ପ୍ରମାଣ ପରିପୂର୍ଣ୍ଣ । ସର୍ବଜନ ପ୍ରତି ଦୟା ଓ ପ୍ରୀତିର ଏହି ଇତିହାସରେ ପରିସ୍ଫୁଟ ହୋଇ ଅଛି । ବଳଦୃପ୍ତଗଣଙ୍କ ଅପେକ୍ଷା ବଳବାନ୍ ହୋଇ ମଧ୍ୟ ଲୋକ-

ହିତାର୍ଥ ସେ ଶାନ୍ତି ନିମିତ୍ତ ଦୃଢ଼ଯତ୍ନ ଏବଂ ଦୃଢ଼ ପ୍ରତିଜ୍ଞ । ସେ ସର୍ବଲୋକହିତୈଷୀ, କେବଳ ମନୁଷ୍ୟର ନୁହେଁ—ଗୋବତ୍ସାଦି ତିର୍ଯ୍ୟକ୍ ଯୋନି ପ୍ରତି ମଧ୍ୟ ତାଙ୍କର ଦୟା । ଗିରିଯଜ୍ଞରେ ତାହା ପରିସ୍ଫୁଟ । ଭାଗବତକାର କଥିତ ବାଲ୍ୟ କାଳରେ ବାନରମାନଙ୍କ ନିମିତ୍ତ ନବନୀତଚୌରର ଏବଂ ଫଳବିକ୍ରେତ୍ରୀର କଥା କେତେଦୂର କିମ୍ବଦନ୍ତୀମୂଳକ, କହି ହେଉ ନାହିଁ—କିନ୍ତୁ ଯେ ଗୋବତ୍ସଙ୍କର ଉତ୍ତମ ଭୋଜନ ନିମିତ୍ତ ଇନ୍ଦ୍ରଯଜ୍ଞ ବନ୍ଦ କରାଇଥିଲେ, ଏହାହିଁ ତାଙ୍କର ଚରିତ୍ରାନୁମୋଦିତ । ସେ ଆତ୍ମୀୟ ସ୍ୱଜନ ଜ୍ଞାତି ଗୋଷ୍ଠିର କିରୂପ ହିତୈଷୀ ତାହା ଦେଖିଅଛୁଁ । କିନ୍ତୁ ଏହା ମଧ୍ୟ ଦେଖିଅଛୁଁ ଯେ ଆତ୍ମୀୟ ପାପାଚାରୀ ହେଲେ ସେ ତାହାର ଶତ୍ରୁ । ତାଙ୍କର ଅପରିସୀମ କ୍ଷମାଗୁଣ ଦେଖିଅଛୁଁ ।

ପୁଣି ଏହା ବି ଦେଖି ଅଛୁଁ ଯେ, ସମୟ ଉପସ୍ଥିତ ଦେଖିଲେ ସେ ଅସ୍ଲାନିମ୍ନିତ ହୃଦୟରେ ଅକୁଣ୍ଠିତ ଭାବରେ ଦଣ୍ଡବିଧାନ କରୁଥିଲେ । ସେ ସ୍ୱଜନପ୍ରିୟ କିନ୍ତୁ ଲୋକହିତାର୍ଥେ ସ୍ୱଜନର ବିନାଶରେ ମଧ୍ୟ ସେ କୁଣ୍ଠିତ ହେଉ ନଥିଲେ । କଂସ ମାତୁଳ; ପାଣ୍ଡବମାନେ ଯାହା "ଶିଶୁପାଳ ମଧ୍ୟ ତାହା';—ପିତୃଷ୍ୱସାଙ୍କ ପୁତ୍ର; ଉଭୟଙ୍କୁ ଦଣ୍ଡିତ କଲେ; ତାର ପରେ ଶେଷରେ ସ୍ୱୟଂ ଯାଦବମାନେ ସୁରାପାୟୀ ଓ ଦୁର୍ନୀତି ପରାୟଣ ହେବାରୁ ସେମାନଙ୍କୁ ମଧ୍ୟ ରକ୍ଷା କଲେ ନାହିଁ ।

ଏଇ ସବୁ ଶ୍ରେଷ୍ଠ ବୃତ୍ତି କୃଷ୍ଣଙ୍କଠାରେ ଚରମସ୍ଫୂର୍ତ୍ତିପ୍ରାପ୍ତ ହୋଇଥିଲା ବୋଲି ଚିତ୍ତରଞ୍ଜିନୀ ବୃତ୍ତିର ଅନୁଶୀଳନରେ ଅପରାଙ୍ମୁଖ ନ ଥିଲେ । କାରଣ ସେ ଆଦର୍ଶ ମନୁଷ୍ୟ । ସେ

ନିମିତ୍ତ ବୃନ୍ଦାବନରେ ବ୍ରଜଲୀଳା ପରିଣତ ବୟସରେ ସେହି ଉଦ୍ଦେଶ୍ୟରେ ସମୁଦ୍ର ବିହାର ଯମୁନା ବିହାର, ରୈବତକ ବିହାର । ତାହାର ବିସ୍ତାରିତ ବର୍ଣ୍ଣନା ଆବଶ୍ୟକ ବିବେଚନା କରିନାହିଁ ।

କେବଳ ଗୋଟିଏ କଥା ବର୍ତ୍ତମାନ ବାକି ଅଛି । ଧର୍ମ ତତ୍ତ୍ୱରେ କହିଅଛି ଭକ୍ତି ମନୁଷ୍ୟର ପ୍ରଧାନ ବୃତ୍ତି । କୃଷ୍ଣ ଆଦର୍ଶ ମନୁଷ୍ୟ । ମନୁଷ୍ୟତ୍ୱର ଆଦର୍ଶ ପ୍ରଚ୍ଛର ନିମିତ୍ତ ଅବତୀର୍ଣ୍ଣ ତାଙ୍କର ଭକ୍ତିର ସ୍ଫୂର୍ତ୍ତି ଦେଖିଲୁ କାହିଁ ? କିନ୍ତୁ ଯଦି ସେ ଈଶ୍ୱରାବତାର ହୁଅନ୍ତି ତେବେ ତାଙ୍କର ଏହି ଭକ୍ତିର ପାତ୍ର କିଏ ? ସେ ନିଜେ । * ନଜ ପ୍ରତି ଯେଉଁ ଭକ୍ତି ତାହା କେବଳ ନିଜକୁ ପରମାତ୍ମାଙ୍କଠାରୁ ଅଭିନ୍ନ ହେଲେ ଉପସ୍ଥିତ ହୁଏ । ଏହା ଜ୍ଞାନମାର୍ଗର ଚରମ । ଏହାକୁ ଆତ୍ମରତି କହନ୍ତି; ଛାନ୍ଦୋଗ୍ୟ ଉପନିଷଦ୍‌ରେ ତାହା ଏହିପରି କଥିତ ହୋଇଅଛି

"ସ ଏବଂ ପଶ୍ୟନ୍ନେବଂ ମନ୍ୱାନ ଏବଂ ବିଜାନାନ୍ନାତ୍ମରତିରାତ୍ମକ୍ରୀଡ଼ ଆତ୍ମମିଥୁନ ଆତ୍ମାନନ୍ଦଃ ସ ସ୍ୱରାଡ୍ ଭବତି ।"

"ଯେ ଏହା ଦେଖି ଏହା ଭାବି ଏହା ଜାଣି ଆତ୍ମାରେ ରତ ହୁଏ ଆତ୍ମରେ କ୍ରୀଡ଼ାଶୀଳ ହୁଏ ଆତ୍ମା ଯାହାର ମିଥୁନ (ସହଚର) ଆତ୍ମା ଯାହାର ଆନନ୍ଦ ସେ ସ୍ୱରାଟ ।"

ଏହା ଗୀତାରେ ବ୍ୟାଖ୍ୟାତ ହୋଇଅଛି । କୃଷ୍ଣ ଆତ୍ମାରାମ; ଆତ୍ମା ଜଗନ୍ମୟ; ସେ ସେହି ଜଗତରେ ପ୍ରୀତିବିଶିଷ୍ଟ । ପରମାତ୍ମାଙ୍କର ଆତ୍ମରତି ଆଉ କେଉଁ ପ୍ରକାରର ବୁଝିପାରେ ନାହିଁ । ଅନ୍ୟତଃ ମୁଁ ବୁଝାଇ ପାରୁନାହିଁ ।

* ମହାଭାରତରେ ଯେଉଁସବୁ ଅଂଶରେ ତାଙ୍କୁ ଶିବୋପାସକ ବୋଲି ବର୍ଣ୍ଣିତ ହୋଇଅଛି ତାହା ପ୍ରକ୍ଷିପ୍ତ ଲକ୍ଷଣବିଶିଷ୍ଟ ।

ଉପସଂହାରରେ ବକ୍ତବ୍ୟ, କୃଷ୍ଣ ସର୍ବତ୍ର ସର୍ବସମୟରେ ସର୍ବଗୁଣର ଅଭିବ୍ୟକ୍ତିରେ ଉଜ୍ଜ୍ୱଳ । ସେ ଅପରାଜେୟ, ଅପରାଜିତ, ବିଶୁଦ୍ଧ, ପୁଣ୍ୟମୟ, ପ୍ରୀତିମୟ, ଦୟାମୟ, ଅନୁଷ୍ଠେୟ କର୍ମରେ ଅପରାଙ୍ମୁଖ, ଧର୍ମାତ୍ମା, ବେଦଜ୍ଞ, ନୀତିଜ୍ଞ, ଧର୍ମଜ୍ଞ, ଲୋକହିତୈଷୀ, ନ୍ୟାୟନିଷ୍ଠ କ୍ଷମାଶୀଳ, ନିରପେକ୍ଷ, ଶାସ୍ତା, ନିର୍ମମ ନିରହଂକାର, ଯୋଗଯୁକ୍ତ, ତପସ୍ୱୀ, ସେ ମାନୁଷୀ ଶକ୍ତି ଦ୍ୱାରା କର୍ମ ନିର୍ବାହ କରୁଥିଲେ । କିନ୍ତୁ ତାଙ୍କର ଚରିତ୍ର ଅମାନୁଷ । ଏ ପ୍ରକାର ମାନୁଷୀ ଶକ୍ତି ଦ୍ୱାରା ଅତିମାନୁଷ ଚରିତ୍ରର ବିକାଶରୁ ତାଙ୍କର ମନୁଷ୍ୟତ୍ୱ ବା ଈଶ୍ୱରତ୍ୱ ଅନୁମିତ କରିବା ବିଧେୟ କି ନାହିଁ, ତାହା ପାଠକ ନିଜେ ବୁଦ୍ଧି ବିବେଚନା ଅନୁସାରେ ସ୍ଥିର କରିବେ । ଯେ ମୀମାଂସା କରିବେ ଯେ କୃଷ୍ଣ ମନୁଷ୍ୟମାତ୍ର ଥିଲେ, ସେ ଅନ୍ତତଃ Rhys Davids ଶାକ୍ୟସିଂହଙ୍କ ସମ୍ବନ୍ଧରେ ଯାହା କହିଛନ୍ତି କୃଷ୍ଣଙ୍କୁ ତାହା କହିବେ; "The Wisest and Greatest of the Hindrus." (ଜ୍ଞାନିତମ ଏବଂ ଶ୍ରେଷ୍ଠତମ ହିନ୍ଦୁ) ଆଉ ଯେ ବୁଝିବେ ଯେ ଏହି କୃଷ୍ଣଚରିତ୍ରରେ ଈଶ୍ୱରଙ୍କ ପ୍ରଭାବ ଦେଖିବାକୁ ମିଳେ ସେ ଯୁକ୍ତକରେ ଭକ୍ତିନୀତ ଭାବରେ ଏଇ ଗ୍ରନ୍ଥ ସମାପନକାଳରେ ମୋ ସଙ୍ଗେ ବୋଲନ୍ତୁ—

ନାକାରଣାତ୍ କାରଣାଦ୍ବା କାରଣାକାରଣାନ୍ନ ଚ ।
ଶରୀରଗ୍ରହଣଂ ବାପି ଧର୍ମତ୍ରାଣାୟ ତେ ପରମ୍ ॥

—ସମାପ୍ତ—

ବିଜୟା ପ୍ରେସ, ପୁରୀ ।